ପ୍ରକାଶକ
ଶ୍ରୀ ଅନନ୍ତ ମିଶ୍ର
କଟକ ଷ୍ଟୁଡେଣ୍ଟ୍ସ ଷ୍ଟୋର
ବାଲୁବଜାର, କଟକ—୨

ପ୍ରଥମ ସଂସ୍କରଣ
୧୯୬୭, ମାର୍ଚ୍ଚ, ଦୋଳପୂର୍ଣ୍ଣିମା
ଦ୍ୱିତୀୟ ସଂସ୍କରଣ
ଅଗଷ୍ଟ-୧୫-୧୯୭୮

ମୁଦ୍ରାକର:
ଆଲୋକପ୍ରଭା ପ୍ରିଣ୍ଟର୍ସ
କଟକ

ବନ୍ଧାଇ—
ସାଦା—ଟ



# Kabi Gopabandhu

Sri Chintamani Das

Publisher :
Sri Anant Misra
Cuttack Students Store
Cuttack

Second Edition
15th. August, 1978

Printer :
Alokaprava Printers
Cuttack

Price—
Bound Rs.
Unbound Rs.



[ *This book is printed on paper alloted by Government of India on Concessional rates.* ]

# ପ୍ରଥମ ସଂସ୍କରଣର ଭୂମିକା

ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ସାହିତ୍ୟର ବହୁ ଆଲୋଚନା ଓ ସମାଲୋଚନା ତାଙ୍କର ପରଲୋକଠାରୁ ଏ ପର୍ଯ୍ୟନ୍ତ ନାନା ପତ୍ରପତ୍ରିକାରେ ପ୍ରକାଶିତ ହୋଇ ଆସୁଥିଲେ ସୁଦ୍ଧା ସେହି ସାହିତ୍ୟ ସମ୍ବନ୍ଧରେ କୌଣସି ଉଲ୍ଲେଖଯୋଗ୍ୟ ପୁସ୍ତକ ପ୍ରାୟ ନଥିଲା । ମୁଁ ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା 'ସମାଜ'ରେ ପ୍ରାୟ ପନ୍ଦରବର୍ଷ ହେଲା ପୁଣ୍ୟାତ୍ମାଙ୍କର ସେବା, ସାଧନା ଓ ପ୍ରତିଭା ସମ୍ବନ୍ଧରେ ଆଲୋଚନାମୂଳକ ପ୍ରବନ୍ଧ ଲେଖି ଆସୁଛି; କିନ୍ତୁ 'ଶ୍ରାଦ୍ଧସଂଖ୍ୟା'ରେ ପ୍ରକାଶିତ ସେହି ପ୍ରବନ୍ଧଗୁଡ଼ିକୁ ମୁଁ ଏହି ପୁସ୍ତକରେ ସ୍ଥାନ ଦେଇନାହିଁ । ଏଥିରେ ମୁଁ ଗୋପବନ୍ଧୁଙ୍କ କବିତା ସୃଷ୍ଟିକୁ ବିଭିନ୍ନ ଦିଗରୁ ଆଲୋଚନା କରିବାରେ ପ୍ରୟାସୀ ହୋଇଅଛି । ତାଙ୍କ ଗଦ୍ୟ ସାହିତ୍ୟର ବିଚାର ଏ ପୁସ୍ତକରେ ନାହିଁ । ତାହା ପୃଥକ୍ ଗବେଷଣା ସାପେକ୍ଷ । ଏହି ଆଲୋଚନା-ମୂଳକ ପୁସ୍ତକଟି ପ୍ରଣୟନ କରିବାରେ ମୁଁ ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା 'ସମାଜ' ରେ ପ୍ରକାଶିତ ବିଭିନ୍ନ ଲେଖକମାନଙ୍କ ପ୍ରବନ୍ଧମାନଙ୍କରୁ ବହୁ ଉପାଦାନ ଓ ତଥ୍ୟ ସଂଗ୍ରହ କରିଅଛି । ଏହି ପୁସ୍ତକରେ ମୁଁ ପ୍ରତିପାଦନ କରିବାକୁ ଚେଷ୍ଟା କରିଛି:—ଗୋପବନ୍ଧୁଙ୍କ କର୍ମ ଓ କବିତ୍ୱ ମଧ୍ୟରେ କୌଣସି ବ୍ୟବଧାନ ନଥିଲା, ତାଙ୍କର କର୍ମାଦର୍ଶ ହିଁ ତାଙ୍କ କାବ୍ୟକବିତାରେ ପ୍ରତିଫଳିତ ଏବଂ ସ୍ୱର୍ଗତ ନେହେରୁଙ୍କ ପରି ଗୋପବନ୍ଧୁ ଥିଲେ 'ବିଧାତାରଚିତ ଏକ କାବ୍ୟ' । ତେଣୁ ପୁସ୍ତକର ପ୍ରାରମ୍ଭରେ ମୁଁ ତାଙ୍କର ବିରାଟ ବ୍ୟକ୍ତିତ୍ୱକୁ ବିଭିନ୍ନ ଦିଗରୁ ବିଶ୍ଳେଷଣ କରିବାକୁ ଚେଷ୍ଟା କରିଅଛି । ସ୍ୱର୍ଗତ ପଣ୍ଡିତ ଜବାହରଲାଲ ନେହେରୁ ଓ ସ୍ୱାମୀ ବିବେକାନନ୍ଦଙ୍କ ସହିତ ଗୋପବନ୍ଧୁଙ୍କ ଜୀବନାଦର୍ଶର କେତେକ ସାମଞ୍ଜସ୍ୟ ଉପସ୍ଥାପନ କରିବାକୁ ମୁଁ ଏଥିରେ କ୍ଷୀଣ ଉଦ୍ୟମ କରିଅଛି । ଏଥିସକାଶେ 'ମୁଁ ନେହେରୁଙ୍କ ବ୍ୟକ୍ତିତ୍ୱ' ଓ 'କବି ରାମକୃଷ୍ଣ' ପ୍ରଭୃତି ବଙ୍ଗଭାଷାରେ ପ୍ରଣୀତ କେତେକ ପୁସ୍ତକପ୍ରତି କୃତଜ୍ଞତା ପ୍ରକାଶ ନକରି ରହିପାରୁ ନାହିଁ; କିନ୍ତୁ, ମୋର ଏ ପ୍ରଚେଷ୍ଟା କେତେଦୂର ସାଫଲ୍ୟମଣ୍ଡିତ ହୋଇପାରିଛି, ତାହା ସହୃଦୟ ପାଠକ ସମାଜ ବିଚାର କରିବେ ।

ବ୍ରହ୍ମପୁର<br>ଅଗଷ୍ଟ ପନ୍ଦର<br>୧୯୬୫

ଚିନ୍ତାମଣି ଦାଶ

# ଦ୍ୱିତୀୟ ସଂସ୍କରଣର ଭୂମିକା

'କବି ଗୋପବନ୍ଧୁ ପୁସ୍ତକର ଦ୍ୱିତୀୟ ସଂସ୍କରଣ ଏବେ ପ୍ରକାଶିତ ହେଲା । ସେଥିପାଇଁ ମୁଁ ଦେଶବାସୀଙ୍କଠାରେ ମୋର କୃତଜ୍ଞତା ଜ୍ଞାପନ କରୁଛି । ଏହି ସଂସ୍କରଣରେ ଯେଉଁଠାରେ କିଛି ଭୁଲ ଭ୍ରାନ୍ତି ଥିଲା ତାହା ସଂଶୋଧନ କରିଦେଇଛି ।

ଆଉ କେତେକ ବିଷୟ ଏହି ସଂସ୍କରଣରେ ଉଲ୍ଲେଖ କରିବା ଇଚ୍ଛା ଥିଲେ ସୁଦ୍ଧା, ତାହା ବହିଟିର କଳେବର ଅତ୍ୟନ୍ତ ଦୀର୍ଘ ହୋଇଯିବା ଭୟରେ ସେଥିରୁ କ୍ଷାନ୍ତ ହେଲି । 'ଗୋପବନ୍ଧୁଙ୍କ ଗଦ୍ୟ ବି ପଦ୍ୟଧର୍ମୀ' ଏ ସମ୍ବନ୍ଧରେ ଗୋଟିଏ ପରିଚ୍ଛେଦ ଲେଖିବାର ଅଭିପ୍ରାୟ ଥିଲେ ମଧ୍ୟ ଲିଖନଶୈଳୀ ପରିଚ୍ଛେଦରେ ତାହାର ସୂଚନା ଓ ଆଭାସ ଦିଆଯାଇଥିବାରୁ ଆଉ ସେ ବିଷୟରେ ବିଶେଷ ଭାବରେ ଅଗ୍ରସର ହେଲିନାହିଁ ।

ଗୋପବନ୍ଧୁଙ୍କର ସମ୍ପୂର୍ଣ୍ଣ ଓ ଆଦର୍ଶ ସ୍ଥାନୀୟ ଜୀବନ ଚରିତ ପ୍ରକାଶିତ ହେଲେ ତାଙ୍କ ସମ୍ବନ୍ଧରେ ଆହୁରି କେତେକ ସମାଲୋଚକ ବାହାରିବେ ବୋଲି ମୋର ଆଶା ଓ ବିଶ୍ୱାସ ।

ଶ୍ରୀରାମଚନ୍ଦ୍ରପୁର
୧୦-୯-୭୫

ଚିନ୍ତାମଣି ଦାଶ

## ସୂଚୀ

# ପ୍ରଥମ ପରିଚ୍ଛେଦ

## ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ

ସ୍ୱର୍ଗତ ବିଶ୍ୱବରେଣ୍ୟ ଜନନାୟକ ଜଓ୍ୱାହରଲାଲ ନେହେରୁଙ୍କ ବ୍ୟକ୍ତିତ୍ୱ ବିଶ୍ଳେଷଣ କରିବାକୁ ଯାଇ ଜନୈକ କବି ଓ ମନୀଷୀ ଉଲ୍ଲେଖ କରିଅଛନ୍ତି, "ମନୁଷ୍ୟର ଇତିହାସରେ ଜଣେ ଜଣେ ଲୋକ ଦେଖାଯାନ୍ତି, ଯେଉଁମାନଙ୍କର ପ୍ରଧାନ ପରିଚୟ ତାଙ୍କ କର୍ମରେ ନାହିଁ, ରଚନାରେ ନାହିଁ, ଲୋକ-ନାୟକତ୍ୱରେ ନାହିଁ, କେବଳ ବ୍ୟକ୍ତିତ୍ୱର ଗୌରବରେ ସେମାନେ ଗରୀୟାନ୍ । ବ୍ୟକ୍ତିତ୍ୱର ପରିଚୟ ସେମାନଙ୍କର ପ୍ରଧାନ ପରିଚୟ । ସେମାନେ ଯେପରି ଜଣେ ଜଣେ ବିଧାତାରଚିତ କାବ୍ୟ × × × । ଏକାଳର ଲୋକନାୟକମାନଙ୍କ ମଧ୍ୟରୁ ଗାନ୍ଧି ଓ ନେହେରୁଙ୍କୁ ନେଇ ପରବର୍ତ୍ତିକାଳର ଶିଳ୍ପୀ ଓ ସାହିତ୍ୟିକମାନେ ଯେପରି ମାତି ଉଠିବେ, ଏପରି ଆଉ କାହାକୁ ନେଇ ନୁହଁ । ନେହେରୁଙ୍କୁ ଜାଣିବାକୁ ହେଲେ ତାହାଙ୍କର ବ୍ୟକ୍ତିତ୍ୱକୁ ଜାଣିବାକୁ ହେବ । କାରଣ କାବ୍ୟପରି ନେହେରୁଙ୍କଠାରେ ହିଁ ନେହେରୁଙ୍କର ଶେଷ ।"

ନେହେରୁଙ୍କ କାବ୍ୟଧର୍ମୀ ବ୍ୟକ୍ତିତ୍ୱର ଏ ସୂତ୍ରରୁ ବିଶ୍ଳେଷଣ ଗୋପବନ୍ଧୁଙ୍କ ପ୍ରତି ସମ୍ପୂର୍ଣ୍ଣ ପ୍ରଯୋଜ୍ୟ ନୁହେଁକି ? ବାସ୍ତବରେ ଗୋପବନ୍ଧୁଙ୍କ ଜୀବନ ବିଧାତାରଚିତ ଗୋଟିଏ ସୁମନୋଜ୍ଞ ସୁଲଳିତ କାବ୍ୟ । ଏ କାବ୍ୟରେ ସକଳରସର ବିଚିତ୍ର ସମନ୍ୱୟ । ଏ କାବ୍ୟର ଅନୁଶୀଳନ ପାଠକପ୍ରାଣରେ ସଞ୍ଚାରକରେ ବ୍ରହ୍ମାନନ୍ଦ ସହୋଦର ପରମ ଆହ୍ଲାଦ । ଜଓ୍ୱାହରଲାଲ ନେହେରୁଙ୍କ ପରି ଦେଶର ସମସ୍ତ ଧ୍ୟାନ ଧାରଣା, ଆଶା ଆକାଙ୍‌କ୍ଷା, କବିର ସ୍ୱପ୍ନ, ବୀରର ବୀର୍ଯ୍ୟ, ଋଷିର ତତ୍ତ୍ୱଚିନ୍ତା, ଯୋଗୀର ସାଧନା, ତ୍ୟାଗ ଓ ଆତ୍ମୋତ୍ସର୍ଗ ସଂଗୃହୀତ ଓ ଏକୀଭୂତ ହୋଇ ଗୋଟିଏ ବ୍ୟକ୍ତିତ୍ୱ ଶିଖାରୂପେ ଉତ୍କଳରେ ପ୍ରଜ୍ୱଳିତ ହୋଇଉଠିଥିଲା; ଗୋପବନ୍ଧୁ ସେହି ବ୍ୟକ୍ତିତ୍ୱର ହୀରକଦ୍ୟୁତି । କର୍ମୀ ଗୋପବନ୍ଧୁଙ୍କ ଊର୍ଦ୍ଧ୍ୱରେ ବ୍ୟକ୍ତି ଗୋପବନ୍ଧୁ, ଆଉ ବ୍ୟକ୍ତି

ଗୋପବନ୍ଧୁଙ୍କ ଅନେକ ଊର୍ଦ୍ଧ୍ୱରେ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ । ତାଜମହଲ ଦର୍ଶନରେ ମୋଗଲସମ୍ରାଟ୍ ଶାହାଜାହାନଙ୍କ ବ୍ୟକ୍ତିତ୍ୱକୁ ଲକ୍ଷ୍ୟ କରି ବିଶ୍ୱକବି ରବୀନ୍ଦ୍ରନାଥ ଲେଖିଥିଲେ—

"ତୋମାର କୀର୍ତ୍ତିର ଚେୟେ ତୁମି ଯେ ମହତ୍
ତାଇ ତବ ଜୀବନେର ରଥ
ପଶ୍ଚାତେ ଫେଲିୟା ଯାୟ କୀର୍ତ୍ତିରେ ତୋମାର
ବାରମ୍ବାର ।
ତାଇ
ଚିହ୍ନ ତବ ପଡ଼େ ଆଛେ, ତୁମି ହେଥା ନାହିଁ ।"

ଗୋପବନ୍ଧୁଙ୍କର ଜୀବନର ରଥ ଏବେ ମଧ୍ୟ ସାରା ଉତ୍କଳରାଜ୍ୟରେ ଜୟ-ଯାତ୍ରା କରିଚାଲିଛି । ସେ ରଥଚକ୍ରର ବିରାମ ନାହିଁ । ବିଧାତାସୃଷ୍ଟ ସେହି ଅମିୟରସନିସ୍ୟନ୍ଦୀ 'କାବ୍ୟ' ଏବେ ସୁଦ୍ଧା କେତେ କବି, ରାଜନୀତିଜ୍ଞ, ଦାର୍ଶନିକ ଓ ଜନସେବକଙ୍କ ପ୍ରାଣକୁ ଆବେଗ-ଉଦ୍‌ବେଳ କରି ସେମାନଙ୍କ ଲେଖନୀରୁ ଅପୂର୍ବ କାବ୍ୟ ସୃଷ୍ଟିକରୁଛି, ତାହାର କଳନା ନାହିଁ । ଗୋପବନ୍ଧୁଙ୍କପରି ଏପରି ବିପୁଳ ଗୌରବର ଅଧିକାରୀ ଆମ ଉତ୍କଳରେ ଆଉ କେଉଁ କବି କିମ୍ବା ଜନ-ନାୟକ ହୋଇ ପାରିଛି ? ଆଉ କାହା ପାଇଁ ଦରଦୀ କବି ବ୍ୟକ୍ତିତ୍ୱର କାବ୍ୟ ଉପରେ ନୂତନ କାବ୍ୟ ରଚନାକରି ଏପରି ଅପରୂପ ଭଙ୍ଗୀରେ ଲେଖିପାରିଛି ?

'ଲୁହରେ ଲୁହ ମିଶାଇ କେହି
ପ୍ରଳୟ ଗୀତ ଜାଳିଛି ଆଉ
ଶିଳାରେ ଶିଳା ବଜାଇ ବିନା
କଳଇ କିଏ ମଣିଷ ଘାଉ
କିଏ ସେ କହ ତାହାରି ସମ
ସେନେହ-ଶରେ କରିଛି ରଣ
ମରମ ଜାଣି ନରମ ସୁରେ
ଶମାଇ ଶତ ଦୁଃଖ ଦାଉ
ତାହାରି ଲୁହ ତାହାରି ହସେ
ଖସିନି କରେ ଶାସନ ରଜ୍ଜୁ ?
ଏ ଜାତି ବଡ଼ଦେଉଳ ସେ ଯେ……?'

ଗୋପବନ୍ଧୁ ଯେପରି ତାଙ୍କର ତାରୁଣ୍ୟରେ ଓଡ଼ିଶାର ପ୍ରାୟ ସମସ୍ତ ପ୍ରାଚୀନ କବିମାନଙ୍କ ପ୍ରତି ତାଙ୍କ ହୃଦୟର ଗମ୍ଭୀର ଶ୍ରଦ୍ଧାଞ୍ଜଳି ନିବେଦନ କରିଅଛନ୍ତି, ତାଙ୍କର ଦେହାବସାନର ସେହି ଦୁଃସହ ମୁହୂର୍ତ୍ତିଠାରୁ ଆଜି ପର୍ଯ୍ୟନ୍ତ ଯେତେ ଅଗଣିତ କବିତା ତାଙ୍କର ବ୍ୟକ୍ତିତ୍ୱର ସୌରଭକୁ ଚତୁର୍ଦ୍ଦିଗରେ ବିଚ୍ଛୁରିତ କରିବା ନିମନ୍ତେ ଏବଂ ତାଙ୍କର ମଧୁମୟ ସ୍ମୃତିକୁ ଚିରକାଳ ନିମନ୍ତେ ଜୀବନ୍ତ ଓ ଜାଗ୍ରତକରି ରଖିବା ଉଦ୍ଦେଶ୍ୟରେ ରଚିତ ହେଲଣି ଓ ହେଉଛି, ତାକୁ ସବୁ ସଙ୍କଳନକଲେ ତାହା ଗୋଟିଏ ମହାକାବ୍ୟ ହେବ ।

ତେଣୁ ପୂର୍ବୋକ୍ତ ମନୀଷୀ ନେହେରୁଙ୍କ ସମ୍ବନ୍ଧରେ ଯାହା ଲେଖିଛନ୍ତି, ତାଙ୍କୁ ନେଇ ପରବର୍ତ୍ତୀ କବି ଓ ସାହିତ୍ୟିକମାନେ ଯେପରି ମାତି ଉଠିବେ, ସେପରି ଅନ୍ୟ କୌଣସି ଲୋକନାୟକକୁ ନେଇ ନୁହଁ; ତାହା ଗୋପବନ୍ଧୁଙ୍କ ପ୍ରତି ପ୍ରୟୋଗ କଲେ କିଏ କହିବ ଏ ଲେଖକ ଅବାସ୍ତବ ଓ ଅତିରଞ୍ଜନ ଦୋଷରେ ଦୁଷ୍ଟ ? ଓଳିକୁ ତାଳ କରୁଛୁ ଏବଂ କିଏ ଅସ୍ୱୀକାର କରିବ, ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ କାବ୍ୟୋପମ ନୁହେଁ ?

ରବୀନ୍ଦ୍ରନାଥ ଠାକୁରଙ୍କ ଶାନ୍ତି-ନିକେତନ ପରି ଗୋପବନ୍ଧୁଙ୍କ ବନବିଦ୍ୟାଳୟ ଥିଲା ଗୋଟିଏ ଲାବଣ୍ୟଭରା କାବ୍ୟ-କୁସୁମ । ଯେଉଁ ରସଜ୍ଞ ଓ ଗୁଣଗ୍ରାହୀ ବ୍ୟକ୍ତିତ୍ୱ-ବିଚାରକମାନେ, ସ୍ତୂପୀକୃତ କର୍ମର ଜଞ୍ଜାଳକୁ ଭେଦ କରି କର୍ମୀର ବ୍ୟକ୍ତିତ୍ୱର ରହସ୍ୟ ସନ୍ଧାନ କରିବାରେ ବ୍ରତୀ ହୁଅନ୍ତି, ଯେଉଁମାନେ ଐତିହାସିକ ନୁହନ୍ତି, ରସଜ୍ଞ ସାହିତ୍ୟିକ, ସେଇମାନେ ହିଁ ମହାପୁରୁଷମାନଙ୍କ ବ୍ୟକ୍ତିତ୍ୱର ସମ୍ମୋହିନୀ ଶକ୍ତି ନିଜେ ଉପଲବ୍ଧି କରିଥାନ୍ତି ଏବଂ ଅନ୍ୟମାନଙ୍କୁ କରାଇଥାନ୍ତି । ସତ୍ୟବାଦୀ ବନବିଦ୍ୟାଳୟକୁ ସେତେବେଳେ ଯେଉଁମାନେ ପରିଦର୍ଶନ କରିବାକୁ ଆସୁଥିଲେ, ସେମାନେ କେବଳ ବିଦ୍ୟାଳୟର ବାହ୍ୟ ପରିବେଷ୍ଟନୀ ଦେଖି ନ ଥିଲେ, ଗୋପବନ୍ଧୁ ଓ ତାଙ୍କର ସହକର୍ମୀମାନଙ୍କର କର୍ମ-ପ୍ରବାହ ଲକ୍ଷ୍ୟକରି କେବଳ ମୁଗ୍ଧ-ହୃଦୟରେ ଫେରୁ ନଥିଲେ, ସେମାନେ ଏଠାରେ ଦେଖୁଥିଲେ ଗୋପବନ୍ଧୁଙ୍କର ମାନସପ୍ରବଣତା, ଭବ-ଭାବନା, ଧ୍ୟାନକଳ୍ପନା ଏବଂ ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱର ଦ୍ୟୋତନା ।

୧୯୧୭ ମସିହା ନଭେମ୍ବର ୨୮ ତାରିଖରେ ପୁରୀ-ଜିଲାର ଇଉରୋପୀୟ ମାଜିଷ୍ଟ୍ରେଟ ଡିକ୍‌ସନ ସାହେବ (F. P. Dixon) ସତ୍ୟବାଦୀ ବିଦ୍ୟାଳୟ ପରିଦର୍ଶନକରି ମନ୍ତବ୍ୟ ଦେଇଥିଲେ, "This is the very place for Sermon in Stones" । ଏହି Sermon କିମ୍ବା ଉପଦେଶ ସମ୍ବନ୍ଧରେ ଥରେ ମହାତ୍ମାଗାନ୍ଧି ଲେଖିଥିଲେ, "The Spirit of the Sermon on the

Mount competes almost on equal terms with the Bhagbat-gita for the domination of my heart. It is that sermon which has endeared Jesus to me" ଅର୍ଥାତ୍ ଏହି ଉପଦେଶର ବାଣୀ ଭଗବତ୍-ଗୀତାର ବାଣୀ । ଏହି ବାଣୀଯୋଗୁଁ ଯୀଶୁ ଖ୍ରୀଷ୍ଟ ତାଙ୍କର ଏତେ ପ୍ରିୟ । ଏହି ବାଣୀମାନଙ୍କ ମଧ୍ୟରୁ ଦୁଇଟି ଉଲ୍ଲେଖଯୋଗ୍ୟ କାବ୍ୟୋପମ ଚିତ୍ତାକର୍ଷକ ବାଣୀ ହେଉଛି—1. Blessed are the merciful for they shall obtain mercy. 2. Blessed are the pure in heart for they shall see God । ଦୟା, କରୁଣା କମ୍ପା ଅନୁକମ୍ପା ହିଁ ମନୁଷ୍ୟର ଶ୍ରେଷ୍ଠ ସମ୍ପଦ —ଏହାହିଁ ମନୁଷ୍ୟର ଐଶ୍ୱରିକ ଚିନ୍ମୟ ବିଭୂତି ଏବଂ ସୁନିର୍ମଳ, ନିଷ୍କପଟ ସ୍ୱଚ୍ଛ ହୃଦୟ ହିଁ ମାନବିକତାର ପରମ ଐଶ୍ୱର୍ଯ୍ୟ । କବି ହୃଦୟର ଯାହା ପରମ ସମ୍ବଳ, ତାହାହିଁ ଉଇଲସନ୍ ସାହେବ ଗୋପବନ୍ଧୁ ସୃଷ୍ଟ ସତ୍ୟବାଦୀ ବିଦ୍ୟାଳୟରେ ଦେଖିଥିଲେ । ସେହିପରି ଆଉ ଜଣେ ପ୍ରାତଃସ୍ମରଣୀୟ ବୈଦେଶିକ ହୃଦୟବାନ୍ ଜନ-ସେବକ ଦୀନବନ୍ଧୁ ଆଣ୍ଡ୍ରୁଜ (C.F. Andrews) ନିଜେ ପ୍ରତ୍ୟକ୍ଷ ଅନୁଭବ କରିଥିବା ଗୋପବନ୍ଧୁଙ୍କ ଜୀବନରେ ଗୋଟିଏ ମର୍ମସ୍ପର୍ଶୀ ଘଟଣାକୁ ଲକ୍ଷ୍ୟକରି ତାଙ୍କର ପରଲୋକ ଖବର ପାଇ ଲେଖିଥିଲେ, "His pity for the villagers was a beautiful thing to witness × × × His whole spiritual strength quite evidently and plainly proceeded from his supreme devotion to God"—ଗୋପବନ୍ଧୁଙ୍କର କରୁଣା କମ୍ପା ସମବେଦନା ଗୋଟିଏ ଅତି ପରମ ରମଣୀୟ ପଦାର୍ଥ । ଏହି ବ୍ୟକ୍ତିତ୍ୱର ବିସ୍ମୟ ସହିତ ଗୋପବନ୍ଧୁଙ୍କଠାରେ ଯେଉଁ ଅନ୍ୟ ବିଭୂତିଟି ଆଣ୍ଡ୍ରୁଜ ସାହେବ ଲକ୍ଷ୍ୟ କରିଥିଲେ, ତାହା ହେଉଛି ତାଙ୍କର ନିଗୂଢ଼ ଆଧ୍ୟାତ୍ମିକ ଚେତନା, ଈଶ୍ୱରବିଶ୍ୱାସ-ବଳିଷ୍ଠ ଓ ଅବିଚଳ ଭାଗବତୀ ପ୍ରୀତି । କର୍ମର ଇତିହାସ ରଚନା କରିବା ପକ୍ଷରେ ଚର୍ମଚକ୍ଷୁ ଲୋଡ଼ା; କିନ୍ତୁ ବ୍ୟକ୍ତିତ୍ୱର ବିକାଶର ବିଗ୍ରହ ବିଶ୍ଲେଷଣ କରିବାକୁ ହେଲେ ଲୋଡ଼ା ଅନ୍ତର୍ଭେଦୀ ମର୍ମଚକ୍ଷୁ—କବିକଳ୍ପୋଚିତ ଦିବ୍ୟଦୃଷ୍ଟି । 'କର୍ମ ପ୍ରତ୍ୟକ୍ଷ' କିନ୍ତୁ 'ବ୍ୟକ୍ତିତ୍ୱ ଅପ୍ରତ୍ୟକ୍ଷ' । ତାହା କର୍ମର ଅନ୍ତରାଳରେ 'ଅର୍ଦ୍ଧପ୍ରଚ୍ଛନ୍ନ' । ଅବଶ୍ୟ କର୍ମ ବ୍ୟକ୍ତିତ୍ୱ-ବୃକ୍ଷର ଫଳ'; ତଥାପି କର୍ମଠାରୁ ବ୍ୟକ୍ତିତ୍ୱ ଆହୁରି ଚିତ୍ତାକର୍ଷକ, ଆହୁରି ବ୍ୟାପକ ଓ ସୁଦୂରପ୍ରସାରୀ ।

୧୩୨୦ ସାଲ ଜ୍ୟେଷ୍ଠ ସଂଖ୍ୟା ବଙ୍ଗଳା 'ନବ୍ୟ ଭାରତ' ପତ୍ରିକାରେ ଜଣେ ବଙ୍ଗୀୟ ପରିଦର୍ଶକ ଲେଖିଥିଲେ, 'ସତ୍ୟବାଦୀ ସ୍କୁଲ୍ ଏକ ଆଶ୍ଚର୍ଯ୍ୟ ସୃଷ୍ଟି । ଗୋପବନ୍ଧୁଙ୍କ ଚେଷ୍ଟାରେ ଏହି ସତ୍ୟବାଦୀ ସ୍କୁଲ ସଂସ୍ଥାପିତ ହୋଇଅଛି । ଗୋପବନ୍ଧୁ, ନୀଳକଣ୍ଠ ଯେପରି ପୁନାର ଗୋଖଲେ, ପାରଞ୍ଜପେ ଏବଂ ବଙ୍ଗର ବିଦ୍ୟାସାଗର

× × × । ଗୋପବନ୍ଧୁ, ନୀଳକଣ୍ଠ ଓ ଅନ୍ୟାନ୍ୟ ଶିକ୍ଷକଗଣ ଯେପରି ଅଗ୍ନିର ସ୍ଫୁଲିଙ୍ଗ' । ଏମାନେ କ'ଣ ଗୋପବନ୍ଧୁ କିମ୍ବା ତାଙ୍କର ସହକର୍ମୀମାନଙ୍କର ବାହ୍ୟ କାର୍ଯ୍ୟକଳାପର ହିସାବ କିତାବ ନେଇ ଏ ମନ୍ତବ୍ୟ ପ୍ରକାଶ କରିଥିଲେ ? ଏ ମନ୍ତବ୍ୟରେ କ'ଣ ଅତିରଞ୍ଜନ କିମ୍ବା ଭାବପ୍ରବଣତାର କମନୀୟ ବିଳାସ ଥିଲା ? ତାହା ନୁହଁ, ଅତି ଅଳ୍ପ ସମୟ ସେମାନେ ଗୋପବନ୍ଧୁଙ୍କ ସାନ୍ନିଧ୍ୟରେ ଆସି ତାଙ୍କର ସୁବିପୁଳ ଓ ସୁକାନ୍ତ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇ ସେମାନଙ୍କର ଭାବାବେଗକୁ ପ୍ରକାଶ ନ କରି ରହିପାରି ନ ଥିଲେ । କବି ହିଁ ଜାଣେ କବିପ୍ରାଣର ବ୍ୟଥା—କବି ମନ ହିଁ ବୁଝେ କବି ମନର ମାଧୁରୀ । ସହୃଦୟ ରସିକ କିମ୍ବା ସମାଲୋଚକ ଖଣ୍ଡିଏ ମନୋନ୍ମାଦକ ଓ ଉନ୍ନତ ଚିନ୍ତାଗର୍ଭକ କାବ୍ୟ ପାଠକଲାପରେ ଯେପରି ଆନନ୍ଦରେ ତନ୍ମୟ ହୋଇ ତାକୁ ଜୀବନର ଅକ୍ଷୟ ସମ୍ପଦରୂପେ ସାଇତି ରଖେ, ତାକୁ ବାରମ୍ବାର ପଢ଼ି ନିରନ୍ତର ଅମୃତରସଧାରରେ ହୃଦୟକୁ ବିଗଳିତ କରେ, ସେହିପରି ଉକ୍ତ ବଙ୍ଗୀୟ ପରିଦର୍ଶକ ସେହି ମନ୍ତବ୍ୟରେ ପ୍ରାଣର ଆବେଗ ଓ ଆକୁଳତାରେ ଲେଖିଥିଲେ, "ସାକ୍ଷିଗୋପାଳ, ସତ୍ୟବାଦୀ, ତୁମ୍ଭର କଥା କୌଣସିମତେ ମୁଁ ଭୁଲିପାରୁ ନାହିଁ । ତୁମେ ବର୍ତ୍ତମାନ ଆମ୍ଭମାନଙ୍କର ନିଭୃତ ଚିନ୍ତା, ଦିବସର ଉଦ୍ୟମ, ଶୋକର ସାନ୍ତ୍ୱନା ହୋଇଅଛ । ତୁମ କଥା କ'ଣ ଉତ୍କଳ ଭୁଲିଯିବ ? ତୁମର ଦୃଷ୍ଟାନ୍ତ କି ବଙ୍ଗରେ ଅନୁପ୍ରାଣନ ଆନୟନ କରିବ ନାହିଁ ?"

ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱ ଯେପରି କାବ୍ୟସୌରଭମୟ, ନୂ ପ୍ରବୃନ୍ଦାବନର ଅନୁପମ ପ୍ରାକୃତିକ ପରିବେଶ ମଧ୍ୟରେ ଆତ୍ମପ୍ରକାଶ କରିଥିବା ତାଙ୍କ ବନବିଦ୍ୟାଳୟ ସେହିପରି ଏକ ଚିତ୍ତାକର୍ଷକ କାବ୍ୟ ଏବଂ ତାକୁ ଦେଖି ଯେଉଁମାନେ ମନ୍ତ୍ରମୁଗ୍ଧ ହୋଇ ପ୍ରଶଂସାପୂର୍ଣ୍ଣ ମନ୍ତବ୍ୟ ଦେଇଛନ୍ତି, ସେମାନେ ମଧ୍ୟ ଗଦ୍ୟରେ ସୃଷ୍ଟି କରିଛନ୍ତି ଅଭିନବ କାବ୍ୟବୈଭବ ।

ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ସ୍ୱରୂପ ଓ ଉପାଦାନ କ'ଣ ? କେଉଁ କେଉଁ ଉପାଦାନରେ ଏ ବ୍ୟକ୍ତିତ୍ୱ ଗଠିତ ? ବ୍ୟକ୍ତିତ୍ୱ ଓ ଚରିତ୍ର ମଧ୍ୟରେ ପାର୍ଥକ୍ୟର ସୀମା-ରେଖା କେଉଁଠାରେ ? ଏହି ପ୍ରଶ୍ନଶୀଳ ଓ ତତ୍ତ୍ୱଜିଜ୍ଞାସୁ ଯୁଗରେ ଏ ପ୍ରଶ୍ନମାନଙ୍କର ଯଥାଯଥ ଉତ୍ତରଦେବାକୁ ଲେଖକ ବାଧ୍ୟ ।

ପ୍ରଥମେ ସତ୍ୟବାଦୀ ବିଦ୍ୟାଳୟର ଛାତ୍ରୋତ୍ତାମାନେ ବ୍ୟକ୍ତିତ୍ୱକୁ କେଉଁ ଦୃଷ୍ଟିରେ ଦେଖୁଥିଲେ, ସେହି ଦୃଷ୍ଟିଭଙ୍ଗୀ ବର୍ତ୍ତମାନ ବିଚାରକୁ ଅଣାଯାଉ । ଥରେ ସେହି ବିଦ୍ୟାଳୟର କ୍ଲବ-ସମ୍ମିଳନରେ "ଚରିତ୍ରଂ ହି ପରଂ ବଳଂ" ଏ ସମ୍ବନ୍ଧରେ ଉଚ୍ଚଶ୍ରେଣୀର ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେବାକୁ ଯାଇ ଜଣେ ଶିକ୍ଷକ କହିଥିଲେ, "ମାନବଜୀବନ ଏତିକ ମାତ୍ର ଅତୀତ ଓ ବର୍ତ୍ତମାନରେ ସୀମାବଦ୍ଧ ନୁହେଁ । ଏହି

ଅତୀତ ଫଳରେ ଓ ଭବିଷ୍ୟତ କଳ୍ପନା ସଙ୍ଗେ ତୁମ୍ଭର ପରିବାର ଅଛି, ସମାଜ ଅଛି, ଧର୍ମ ଅଛି । ତୁମ୍ଭେ ନିଜ କଥା ଭାବିଲାବେଳେ କେବଳ ନିଜ କଥା ଭାବନାହିଁ । ଏ ସମସ୍ତଙ୍କ କଥା ଭାବ । ସମସ୍ତଙ୍କ ପ୍ରତି ତୁମ୍ଭର କର୍ତ୍ତବ୍ୟ ଅଛି ବୋଲି ମନେକର । ଯୋଦ୍ୱାରା ପରିବାରର ଗୌରବ ହେବ, ଜାତିର ମହତ୍ତ୍ୱ ବଢ଼ିବ, ସମାଜର ମଙ୍ଗଳ ହେବ ଦ୍ରଭିତ କଳ୍ପନା ପଦେ ପଦେ ତୁମ୍ଭ ଜୀବନକୁ ପ୍ରଣୀତକରି ରଖିଛି । ତୁମ୍ଭର ଆତ୍ମା ଏ ସବୁଥିରେ ବ୍ୟାପ୍ତ, ପ୍ରାଣ ସର୍ବଦା ଆତ୍ମପ୍ରସାରରେ ଉନ୍ମୁକ୍ତ । ଏହି ବିସ୍ତୀର୍ଣ୍ଣ ଆତ୍ମା ହିଁ ତୁମ୍ଭର ବ୍ୟକ୍ତିତ୍ୱ । ଏଥିରେ ହିଁ ତୁମ୍ଭର ଚରିତ୍ର ପ୍ରତିଭାତ ହୁଏ ।”

ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱ ଏହି ଆତ୍ମପ୍ରସାରର ମହନୀୟ ବ୍ୟକ୍ତିତ୍ୱ । ଜନକଲ୍ୟାଣ ସକାଶେ ଆତ୍ମବିସ୍ମୃତି ଓ ସ୍ୱାର୍ଥ ବିସର୍ଜନର ଏ ବ୍ୟକ୍ତିତ୍ୱ ଗୋପବନ୍ଧୁଙ୍କର ପ୍ରତ୍ୟେକ କର୍ମ, ବାକ୍ୟ ଓ ଚିନ୍ତାରେ ସୁସ୍ପଷ୍ଟ ପ୍ରତିଫଳିତ । ଏଠାରେ ଆଧୁନିକ ମନସ୍ତତ୍ତ୍ୱବିଦ୍‌ମାନଙ୍କର ବ୍ୟକ୍ତିତ୍ୱ ଓ ଚରିତ୍ର ମଧ୍ୟରେ କୌଣସି ସୀମା-ନିର୍ଦ୍ଦେଶର ଅବକାଶ ନାହିଁ ; ମନସ୍ତତ୍ତ୍ୱବିଦ୍‌ମାନେ କହନ୍ତି—

It is the total quality of an individual's behaviour. Personality traits tell us how the individual behaves. They show us his characteristic style of action.

ସମାଜ ଓ ତା'ର ପରିବେଷ୍ଟନୀ ପ୍ରତି ମନୁଷ୍ୟର ଯେଉଁ ପ୍ରତିକ୍ରିୟା ତା'ର କାର୍ଯ୍ୟକଳାପରେ ଆଭାସିତ ହୁଏ, ତାହା ହିଁ ତା'ର ବ୍ୟକ୍ତିତ୍ୱର ସ୍ୱାକ୍ଷର । ଏ ବ୍ୟକ୍ତିତ୍ୱ ମନୁଷ୍ୟର ବିଶିଷ୍ଟ ଓ ସ୍ୱତନ୍ତ୍ର ସ୍ୱଭାବ । ଅନ୍ୟମାନଙ୍କଠାରୁ ସେ ତା'ର ଏହି ସ୍ୱକୀୟ ବ୍ୟକ୍ତିତ୍ୱଯୋଗୁ ସମ୍ପୂର୍ଣ୍ଣ ପୃଥକ୍ । ଏହି ବ୍ୟକ୍ତିତ୍ୱ ମଧ୍ୟରେ ଅନ୍ତର୍ଭୁକ୍ତ ତା'ର ଶାରୀରିକ ଗଠନ, ତା'ର ବଦନମଣ୍ଡଳର ସୁଷମା, ତା'ର ଚକ୍ଷୁର ମର୍ମଭେଦୀ ଦୀପ୍ତି, ତା'ର ବୁଦ୍ଧି, ବିଚକ୍ଷଣତା, ମେଧା, ସ୍ମରଣଶକ୍ତି, ତା'ର ଭାବାବେଗ, ତା'ର ଭାବ-ଭାବନା ଏବଂ ତା'ର ନୀତିବୋଧ ଓ ଚରିତ୍ର-ସମ୍ପଦ । ଚରିତ୍ରକୁ ଏଠାରେ ମନସ୍ତତ୍ତ୍ୱବିଦ୍‌ମାନେ ବ୍ୟକ୍ତିତ୍ୱ ସହିତ ସମନ୍ୱିତ ଓ ଏକାକାର ନ କରି ତାକୁ ବ୍ୟକ୍ତିତ୍ୱର ଗୋଟିଏ ଅଙ୍ଗ-ରୂପେ ଧରିନେଇଛନ୍ତି । ସେମାନଙ୍କ ମତରେ ବ୍ୟକ୍ତିତ୍ୱ ଭଲ ହୋଇପାରେ କିମ୍ବା ମନ୍ଦ ହୋଇପାରେ । ଏହାର ବିଚାର ଜନସାଧାରଣଙ୍କ ଉପରେ । ସେମାନେ ଯଦି ଗୋଟିଏ ବ୍ୟକ୍ତିର ସଦ୍‌ଗୁଣରାଜି ଏବଂ ସତ୍‌କାର୍ଯ୍ୟ କଳାପରେ ଆକୃଷ୍ଟ ହୁଅନ୍ତି, ତେବେ କୁହାଯିବ ସେହି ଲୋକର ବ୍ୟକ୍ତିତ୍ୱ ଚମତ୍କାର, କିନ୍ତୁ ସେ ଯଦି ଅନ୍ୟମାନଙ୍କର ଶ୍ରଦ୍ଧା, ପ୍ରୀତି ଓ ମମତା ଆକର୍ଷଣ କରି ନ ପାରିଲା, ତେବେ ବୁଝିବାକୁ ହେବ, ସେ ଲୋକ ବ୍ୟକ୍ତିତ୍ୱହୀନ; ଅର୍ଥାତ୍ ଏମାନଙ୍କ ମତାନୁଯାୟୀ ବ୍ୟକ୍ତିତ୍ୱ ଭଲ ହୋଇପାରେ କିମ୍ବା ମନ୍ଦ ହୋଇପାରେ; କିନ୍ତୁ ଚରିତ୍ରର ସ୍ୱରୂପ ବିଚାରରେ ଭଲ ମନ୍ଦର ପ୍ରଶ୍ନ ନାହିଁ । ଏହା

ସହିତ ନୀତିବୋଧ ଘନିଷ୍ଠଭାବରେ ଜଡ଼ିତ । ବ୍ୟକ୍ତିତ୍ୱହୀନ ବ୍ୟକ୍ତି ମଧ୍ୟ ଚରିତ୍ରବାନ୍ ହୋଇପାରେ; କିନ୍ତୁ ମତବାଦକୁ ଖଣ୍ଡନ କରି ଜନୈକ ମନୋବିଜ୍ଞାନୀ Hertman କହନ୍ତି—

"A superior personality is also a superior character, and the term personality contains all that character connotes"—

ସତ୍ୟବାଦୀ ବିଦ୍ୟାଳୟର ଜନୈକ ଶିକ୍ଷକ ବ୍ୟକ୍ତିତ୍ୱର ଯେଉଁ ସଂଜ୍ଞା ଦେଇଛନ୍ତି, 'ଏହି ବିସ୍ତୀର୍ଣ୍ଣ ଆତ୍ମା ହିଁ ତୁମ୍ଭର ବ୍ୟକ୍ତିତ୍ୱ । ଏଥିରେ ହିଁ ତୁମର ଚରିତ୍ର ପ୍ରତିଭାତ ହୁଏ' ତାହା ସହିତ ଉପର୍ଯ୍ୟୁକ୍ତ ମନୋବିଜ୍ଞାନୀଙ୍କ ମତର ସମ୍ପୂର୍ଣ୍ଣ ସାମଞ୍ଜସ୍ୟ । ଉଚ୍ଚକୋଟିର ବ୍ୟକ୍ତିତ୍ୱ ହିଁ ଉଚ୍ଚକୋଟିର ଚରିତ୍ରବତ୍ତା । Allport (ଆଲପୋର୍ଟ) ନାମକ ଜଣେ ମନୀଷୀ ବ୍ୟକ୍ତିତ୍ୱ ଓ ଚରିତ୍ର ମଧ୍ୟରେ ଥିବା ପାର୍ଥକ୍ୟର ସୀମାରେଖା ନିର୍ଣ୍ଣୟ କରିବାକୁ ଯାଇ କହନ୍ତି, "ବ୍ୟକ୍ତିତ୍ୱର ଯେତେବେଳେ ନୈତିକ ମୂଲ୍ୟ ନିର୍ଣ୍ଣୟ କରାହୁଏ, ସେତେବେଳେ ତା ହୁଏ ଚରିତ୍ର, ଆଉ ଚରିତ୍ରରୁ ସେହି ମୂଲ୍ୟାୟନ ଅଂଶଟିକୁ ବାଦ୍ ଦେଲେ ଆମ୍ଭେମାନେ ପାଉ ବ୍ୟକ୍ତିତ୍ୱ । ତାଙ୍କର କହିବାର ଉଦ୍ଦେଶ୍ୟ, ଚରିତ୍ରକୁ ବାଦ୍ ଦେଇ ବ୍ୟକ୍ତିତ୍ୱର ଉଦ୍ଭବ ହୋଇପାରେ । ଯେଉଁ ବ୍ୟକ୍ତିତ୍ୱ ଚରିତ୍ର-ବିବର୍ଜିତ ସେ ଏକ ପ୍ରକାର ବ୍ୟକ୍ତିତ୍ୱ ହୋଇପାରେ; କିନ୍ତୁ ଯେଉଁ ବ୍ୟକ୍ତିତ୍ୱର ପ୍ରେରଣା ଓ ପ୍ରଚେଷ୍ଟାରେ ବାପୁଜୀ, ଗୋପବନ୍ଧୁ ଓ ଜଓ୍ୱାହରଲାଲ ପ୍ରଭୃତି ଜନ-ନାୟକମାନେ ଦେଶ ଓ ଜାତି ସକାଶେ ଅକଥନୀୟ କ୍ଲେଶ ବରଣ କରିଯାଇଅଛନ୍ତି, ସେ ବ୍ୟକ୍ତିତ୍ୱ କ'ଣ ଚରିତ୍ର-ବିରହିତ ବ୍ୟକ୍ତିତ୍ୱ ? ମହାପୁରୁଷମାନଙ୍କର ବ୍ୟକ୍ତିତ୍ୱ ଓ ଚରିତ୍ରର ଅଭିନ୍ନତା ହିଁ ସେମାନଙ୍କର ବୈଶିଷ୍ଟ୍ୟର ପରିଚାୟକ । ଏହି ଚରିତ୍ରବାନ୍ ଓ ବ୍ୟକ୍ତିତ୍ୱସମ୍ପନ୍ନ ମହାପୁରୁଷମାନେ କେବଳ ପଣ୍ଡିତ ଜଓ୍ୱାହରଲାଲଙ୍କ ପରି ନିର୍ଭୀକ ଭାବରେ କହିପାରନ୍ତି—

'I prefer the open sea, with all its storms and tempests.'

"ମୁଁ ଆଳସ୍ୟ, ଆରାମ କିମ୍ବା ବିଳାସବ୍ୟସନରେ ଜୀବନ ଅତିବାହିତ କରିବାକୁ ଚାହେଁ ନାହିଁ । ମୁଁ ଚାହେଁ ବାଧା, ବିଘ୍ନ, ମୁଁ ଚାହେଁ ଝଡ଼ଝଞ୍ଜା-ବିକ୍ଷୁବ୍ଧ ତରଙ୍ଗାୟିତ ଫେନିଳ ମହାସାଗର ।" ଏ ବ୍ୟକ୍ତିତ୍ୱ କି ଚରିତ୍ର କିମ୍ବା ନୀତିବୋଧ-ବିବର୍ଜିତ ? ଠିକ୍ ସେହିପରି ଥରେ ଗୋପବନ୍ଧୁ ଝଡ଼ଝଞ୍ଜା କିମ୍ବା ଜୀବର ଜୀବନ-ମମତାକୁ ଭ୍ରୁକ୍ଷେପ ନ କରି କହିଥିଲେ, 'ଏ ତ ପ୍ରକୃତି ମାତା । ଯାହା ମିଳିଲା ତାକୁଇ ପିଇ କର୍ତ୍ତବ୍ୟ

କରିବାକୁ ହେବ, ତେଣିକି ଭଗବାନ୍ ଯାହା କରିବେ ।' ଏ ଘଟନା ହେଉଛି ୧୯୦୭ ମସିହାର କଥା । ଗୋପବନ୍ଧୁ ସେତେବେଳେ ନୀଳଗିରିରୁ ଫେରି କଟକରେ ଓକିଲାତି କରିବେ ବୋଲି ଆସି ପହଞ୍ଚିଥାନ୍ତି । ଅଗଷ୍ଟ ମାସ । ବ୍ରାହ୍ମଣୀ ନଦୀରେ ଭୟାନକ ବନ୍ୟା । କେନ୍ଦ୍ରାପଡ଼ା ସବ୍‌ଡିଭିଜନ ଇନ୍ଦୁପୁରଠାରେ ପ୍ରଳୟ କାଣ୍ଡ । ଘାଇ ଭାଙ୍ଗି-ଯାଇଛି । ଚାରିଆଡ଼େ ହାହାକାର । ସେତେବେଳେ ତ ଓଡ଼ିଶାରେ ଏତେ ଲୋକ ଥିଲେ—ରାଜା, ଓକିଲ, ମୁକ୍ତାର, ଅଧ୍ୟାପକ, ରାଜା ମହାରାଜା ଓ ଧନାଢ୍ୟ ବ୍ୟକ୍ତି । ସେମାନେ ସେତେବେଳେ ସୁଖ ନିଦ୍ରାରେ ଜଡ଼ିତ, କେବଳ ଅର୍ଥ ଓ ପ୍ରତିପତ୍ତିର ଭବିଷ୍ୟତ ମୋହରେ ବିଭ୍ରାନ୍ତ, ଏହି ହାହାକାରରେ ଲବମାତ୍ର କରୁଣାର ଉଦ୍ରେକ ସେମାନଙ୍କ ଠାରେ ସମ୍ଭବ ହେଲାନାହିଁ, ସେତିକିବେଳେ ଏହି ଗୋପବନ୍ଧୁ ବନ୍ୟା-ପ୍ରପୀଡ଼ିତ ଅଞ୍ଚଳର ଲୋକମାନଙ୍କ ଦୁଃଖ-ଦୁର୍ଦ୍ଦଶାରେ ବ୍ୟଥିତ ଓ ବିଚଳିତ ହୋଇ ଯାହାଠାରୁ ଯାହାଠାରୁ ଚୂଡ଼ା ଗୁଡ଼ିଲ ସଂଗ୍ରହ କରି ନୀଳକଣ୍ଠ ଦାସ ପ୍ରଭୃତି କେତେକ ସ୍ୱେଚ୍ଛାସେବକଙ୍କୁ ସାଙ୍ଗରେ ଧରି ଇନ୍ଦୁପୁରରେ ଯାଇ ପହଞ୍ଚିଲେ । ସେଠାରେ ଯାଇ ଦେଖିଲେ ଗାଁର ସତ୍ତା ନାହିଁ । ଲୋକଙ୍କୁ ଉଦ୍ଧାର କରିବାକୁ ଡଙ୍ଗାରେ ଗାଁରୁ ଗାଁକୁ ଗଲାବେଳେ ପାଣିରେ ବହୁତ ଶବ ଭାସି ଯାଉଛି । ଯାଉ ଯାଉ ଡଙ୍ଗାରୁ ପିଇବା ପାଣି ସରିଗଲା । ନୀଳକଣ୍ଠ କହିଲେ—'ଏ ପାଣିରେ ତ ମଡ଼ା ଭାସୁଛି, ଏ ପାଣି ପିଇବା କିପରି ? ହଇଜା ହୋଇପାରେ' । ସେତିକିବେଳେ ଗୋପବନ୍ଧୁ ସେହି ଦୂଷିତ ପାଣିରୁ ମୁନ୍ଦାଏ ପିଇ କହିଥିଲେ, 'ଏ ତ ପ୍ରକୃତି-ମାତା'···ତା'ପରେ ସମସ୍ତେ ସେହି ପାଣି ଆନନ୍ଦରେ ପିଇଥିଲେ । ଗୋପବନ୍ଧୁଙ୍କର ଏ ବ୍ୟକ୍ତିତ୍ୱ କ'ଣ ମାତ୍ରାବୋଧ-ବିବର୍ଜିତ ? ଚରିତ୍ରର ଦୃଢ଼ତା ନ ଥିଲେ, ଗଭୀର ଆତ୍ମପ୍ରତ୍ୟୟ କିମ୍ବା ଆତ୍ମତ୍ୟାଗର ଅନନ୍ୟ ଶକ୍ତି ନ ଥିଲେ, ଗୋପବନ୍ଧୁ ଏପରି କହିପାରିଥାନ୍ତେ କି ? ଦୂଷିତ ଜଳ ପାନକରି ଜୀବନକୁ ବିପଦାପନ୍ନ କରିପାରିଥାନ୍ତେ କି ? ଗାନ୍ଧିଙ୍କ ଚରିତ୍ର ଏବଂ ବ୍ୟକ୍ତିତ୍ୱର ଭିତ୍ତି ଯେପରି ଥିଲା "ଅବିଚଳ ଭଗବତ୍-ନିଷ୍ଠା", ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱରେ ମଧ୍ୟ ସେହି ଅଟଳ ଭଗବତ୍-ନିଷ୍ଠା ବିଦ୍ୟମାନ । ଗୋପବନ୍ଧୁ ରାଜନୈତିକ ଆନ୍ଦୋଳନରେ ଯୋଗ ନ ଦେଇଥିଲେ ମଧ୍ୟ ତାଙ୍କର ବ୍ୟକ୍ତିତ୍ୱ କ୍ଷୁଣ୍ଣ ହେବାର କୌଣସି ଆଶଙ୍କା ନ ଥିଲା ।

ବ୍ୟକ୍ତିତ୍ୱର ଆଲୋଚନା କିମ୍ବା ମୂଲ୍ୟାୟନ ଏତିକିରେ ଶେଷ ହେଉନାହିଁ । ଚରିତ୍ରବାନ୍ ହେଲେ ଯେ ବ୍ୟକ୍ତିତ୍ୱବାନ୍ ହେବ, ଏପରି କିଛି କଥା ନାହିଁ । ଗୋପବନ୍ଧୁଙ୍କ ସମସାମୟିକ ଓଡ଼ିଶାରେ ହୁଏତ ବହୁତ ଚରିତ୍ରବାନ୍ ଲୋକ ଥିବେ, କିନ୍ତୁ ଏପରି ବ୍ୟକ୍ତିତ୍ୱବାନ୍ ମହାପୁରୁଷ କେତେଜଣ ଥିଲେ ? ଜଣେ ସମାଲୋଚକଙ୍କ ମତରେ, 'କଠିନ ଚରିତ୍ର, କଠିନ ପଥର-ଖଣ୍ଡପରି, ବ୍ୟକ୍ତିତ୍ୱ ହୀରକ ପ୍ରସ୍ତରର ଦୀପ୍ତି । ଦୁଇଟିଯାକ ଭାସ୍ୱ ଛନ୍ନିଷ;

କିନ୍ତୁ ହୀରକଖଣ୍ଡ ତାର ଓଜନ ସକାଶେ ଆମର ଆଦରଣୀୟ ନୁହଁ, ତାହାର ଦୀପ୍ତି ସକାଶେ ସେ ଆଦରଣୀୟ ।" ଏହି ହୀରକପ୍ରଭ ବ୍ୟକ୍ତିତ୍ୱର ଜ୍ୱଳନ୍ତ ଆଭାରେ ପଣ୍ଡିତ ଜଓ୍ୱାହରଲାଲଙ୍କପରି ସମଗ୍ର ଉତ୍କଳରେ ଗୋପବନ୍ଧୁ ଜ୍ୟୋତିଷ୍ମାନ ଥିଲେ । ପୁଣି ଏହି ବ୍ୟକ୍ତିତ୍ୱର ସ୍ୱରୂପକୁ ଆହୁରି ଉଜ୍ଜ୍ୱଳଭାବରେ ପ୍ରକଟିତ କରିବା ନିମନ୍ତେ ପଣ୍ଡିତ ନେହେରୁଙ୍କ ବ୍ୟକ୍ତିତ୍ୱର ବିଶ୍ଳେଷଣ କରିବାକୁ ଯାଇ ସମାଲୋଚକ ଲେଖିଅଛନ୍ତି, "ଚରିତ୍ରକୁ ବୁଝିବାକୁ ସମୟ ଓ ଶକ୍ତି ଲୋଡ଼ା ; କିନ୍ତୁ ବ୍ୟକ୍ତିତ୍ୱ ସ୍ୱତୋଦ୍ଭୂତ । ହାତରେ ନ ଧରିଲେ ପଥରର ଓଜନ ଜଣା ହେବନାହିଁ; କିନ୍ତୁ ହୀରକକୁ ହାତରେ ଧରିବାର ଆବଶ୍ୟକତା ନାହିଁ । ଏହାର ଦୀପ୍ତି ଦୂରରୁ ପ୍ରତ୍ୟକ୍ଷ । ଏହାର ଦ୍ୟୁତିରେ ଝଟଝଟ ଭାସ୍ୱର । ଏ ଚୁମ୍ବକ ପଥରପରି ଦୂରରୁ ଟାଣେ ।" ଦୃଷ୍ଟାନ୍ତଛଳରେ ସେ କହିଛନ୍ତି, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ସୁମହାନ୍ ଚରିତ୍ରବାନ୍ ପୁରୁଷ ଥିଲେ, ତାଙ୍କର ଶକ୍ତି କଳନା କରିବାକୁ ଦେଶବାସୀଙ୍କୁ ବହୁ ସମୟ ଲାଗିଥିଲା; କିନ୍ତୁ ଅପରିଚିତ ବିବେକାନନ୍ଦଙ୍କୁ ଦେଖିବା ମାତ୍ରେ ଆମେରିକାର ଲୋକେ ତାଙ୍କର ଶକ୍ତି କଷି ନେଇପାରିଥିଲେ । ଏହାର କାରଣ ତାଙ୍କର ବ୍ୟକ୍ତିତ୍ୱର ପ୍ରତ୍ୟକ୍ଷ ଜ୍ୟୋତି । କାହାବଳରେ ନେହେରୁ କେବଳ ଭାରତ ରାଷ୍ଟ୍ର ନୁହଁ, ଆମେରିକା ଓ ରୁଷିଆ-ପ୍ରଭୃତି ବିଷ୍ଟମାନଙ୍କୁ ପ୍ରଭାବିତ କରିଥିଲେ ? ଏହାର କାରଣ ମଧ୍ୟ ହୀରକପ୍ରଭ ସେହି ମଧୁରମୋହନ ବ୍ୟକ୍ତିତ୍ୱ ? ନେହେରୁଙ୍କ ମୁଖ-ନିଃସୃତବାଣୀ ଶୁଣିବା ନିମନ୍ତେ ଗୋଟିଏ ଗୋଟିଏ ସଭାରେ ଲକ୍ଷ ଲକ୍ଷ ଲୋକଙ୍କର ବ୍ୟସ୍ତବ୍ୟାକୁଳ ସମାବେଶ ହେଉଥିଲା କାହିଁକି ? ଏହା ତାଙ୍କର ଚରିତ୍ରର ଦାର୍ଢ୍ୟ ଯୋଗୁ ନୁହଁ—ତାଙ୍କର ଐନ୍ଦ୍ରଜାଲିକ ବ୍ୟକ୍ତିତ୍ୱଯୋଗୁ ।

ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱ, ଦୁର୍ଭାଗ୍ୟବଶତଃ ଉତ୍କଳଖଣ୍ଡ ମଧ୍ୟରେ ସୀମାବଦ୍ଧ ହୋଇ ସେତେ ସୁଦୂରପ୍ରସାରୀ ହୋଇପାରି ନ ଥିଲେ ମଧ୍ୟ ବିବେକାନନ୍ଦ ଓ ଜଓ୍ୱାହରଲାଲଙ୍କଠାରେ ବ୍ୟକ୍ତିତ୍ୱର ଯେଉଁ ଦ୍ୟୁତିପୂର୍ଣ୍ଣ ହୀରକଖଣ୍ଡ ଥିଲା, ସେହି ବ୍ୟକ୍ତିତ୍ୱରେ ସେ ଜ୍ୟୋତିଷ୍ମାନ୍ ଥିଲେ । ଅସହଯୋଗ ଆନ୍ଦୋଳନରେ ଝାସ ଦେଇ ଗୋପବନ୍ଧୁ ଯେତେବେଳେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ଉତ୍କଳର ପୁରପଲ୍ଲୀରେ ପ୍ରଚାର କରିବାକୁ ଯାଇ ଅନ୍ତର-ନିଃସୃତ ଏହି ଉଦାତ୍ତ ବାଣୀରେ ଦେଶବାସୀଙ୍କୁ ଦୀକ୍ଷିତ କରିବାକୁ ବସିଥିଲେ—

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ
ସ୍ୱାଧୀନତା ପଥେ ଅଛି ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।

ସ୍ୱାଧୀନତା ପଥେ ଚଳେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ।''

ସେତେବେଳେ ତାଙ୍କୁ ସାହାଯ୍ୟ କରିବାକୁ ଓଡ଼ିଶାରେ କେତେ ଜଣ ବ୍ୟକ୍ତି ଥିଲେ ? ତାଙ୍କୁ ସମର୍ଥନ କରିବାକୁ କେଉଁ ସୁଦୃଢ଼ ରାଜନୈତିକ ଦଳ ଥିଲା ? କିନ୍ତୁ ସେଦିନ କାହାବଳରେ ସେ ଓଡ଼ିଶାର ଅଗଣିତ ଲୋକଙ୍କୁ ଏହି ମୁକ୍ତି-ସଂଗ୍ରାମୀକୁ ଆହ୍ୱାନ କରି ଯଶସ୍ୱୀ ହୋଇପାରିଥିଲେ ? ଏ କେବଳ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ସମ୍ମୋହିନୀ ଶକ୍ତି ଛଡ଼ା ଆଉ କିଛି ନୁହଁ । ଗୋଟିଏ ଦିନର ଘଟନା ଏ ସମ୍ପର୍କରେ ଦୃଷ୍ଟାନ୍ତ ସ୍ୱରୂପ ଉଲ୍ଲେଖ କରାଯାଇପାରେ ।

୧୯୨୧ ମସିହାର ଫେବୃଆରୀ ମାସ । କାଠଯୋଡ଼ି ନଦୀର ହନୁମାନ ଘାଟରେ ନଦୀର ବାଲିଶଯ୍ୟାରେ ପ୍ରତିଦିନ ସନ୍ଧ୍ୟାବେଳେ ସଭା ହେଉଥାଏ । ଗୋପବନ୍ଧୁ ପ୍ରତିଦିନ ଅସହଯୋଗ ଆନ୍ଦୋଳନର ମର୍ମ ସମବେତ ଜନତାକୁ ପ୍ରାଞ୍ଜଳଭାବରେ ବୁଝାଇ ଦେଉଥାନ୍ତି । ବହୁ ଛାତ୍ର ମଧ୍ୟ ଗୋପବନ୍ଧୁଙ୍କ ବକ୍ତୃତା ଶୁଣିବାକୁ ନଦୀଶଯ୍ୟାରେ ଜମା ହେଉଥାନ୍ତି । ଗୋଟିଏ ସଭାରେ ସେ ସମୟର ଛାତ୍ରନେତା ସ୍ୱର୍ଗତ ଯଦୁମଣି ମଙ୍ଗରାଜ ଯୋଗଦେଇଥିଲେ । ସେତେବେଳେ ସେ ରେଭେନ୍ସା କଲେଜର ବି. ଏସ୍‌ସି. ଛାତ୍ର । ସେଦିନ ସଭାରେ ଭାରତକୁ ଇଂରେଜମାନେ କିପରି ଶୋଷଣ କରୁଛନ୍ତି, ତାହାର ଉଦାହରଣ ଦେଇ ଗୋପବନ୍ଧୁ କହିଲେ, ''ଇଂରେଜ ଶାସକମାନେ ଆମ ଦେଶରେ ଅତି ସରୁ ସୂକ୍ଷ୍ମ ଲୁଗା ବୁଣିବାପରେ ଦକ୍ଷ ତନ୍ତୀମାନଙ୍କ ଆଙ୍ଗୁଠି କାଟି ଦେଇଛନ୍ତି । ଭାରତରେ ବସ୍ତ୍ରଶିଳ୍ପର ଧ୍ୱଂସ ସାଧନ କରିଛନ୍ତି । ବର୍ତ୍ତମାନ ବିଲାତର ମାଞ୍ଚେଷ୍ଟରର ଲୁଗା କଳମାନଙ୍କରେ ତିଆରି ହେଉଥିବା ଲୁଗାପଟା ଆମ ଦେଶରେ ବିକ୍ରି କରି ଇଂରେଜମାନେ ବର୍ଷକୁ ଷାଠିଏ କୋଟି ଟଙ୍କା ନେଉଛନ୍ତି । ଏ ଶୋଷଣ ବନ୍ଦକଲେ ଦେଶ ଆର୍ଥିକ ଦୁର୍ଗତିରୁ ରକ୍ଷା ପାଇବ । ଦେଶ ସ୍ୱାଧୀନ ହେବ; ଏଣୁ ବିଦେଶୀ ଲୁଗା ସମସ୍ତେ ବର୍ଜନ କର ! ଅରଟରେ ସୂତା କାଟି ସେହି ସୂତାରେ ଲୁଗା ପିନ୍ଧ ।'' ପ୍ରତ୍ୟକ୍ଷଦର୍ଶୀ ବର୍ଣ୍ଣନା କରି-ଅଛନ୍ତି, 'ଏହି ବକ୍ତୃତା ଶୁଣି ଶ୍ରୀ ମଙ୍ଗରାଜ ଏପରି ଉତ୍ତେଜିତ ହୋଇଉଠିଲେ ଯେ, ସେ ସଙ୍ଗେ ସଙ୍ଗେ ପିନ୍ଧିଥିବା କୋଟ ଖଣ୍ଡିକ ଖୋଲି ଫିଙ୍ଗି ଦେଲେ । ସେହି ଦିନ-ଠାରୁ ସେ ଅସହଯୋଗ ଆନ୍ଦୋଳନରେ ଯୋଗଦେଲେ ।' ଏହା କିପରି ସମ୍ଭବ ହୋଇଥିଲା ? କେବଳ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ଦୀପ୍ତିର ପ୍ରଭାବରେ ।

ଏହି ବ୍ୟକ୍ତିତ୍ୱର ଦୀପ୍ତିମୟୀ ପ୍ରଭାବର ଆଉ ଗୋଟିଏ ଦୃଷ୍ଟାନ୍ତ ଦିଆଯାଉ । ନେତାଜୀ ସୁଭାଷଚନ୍ଦ୍ରଙ୍କର ବଡ଼ଭାଇ ଶ୍ରୀ ସୁରେଶଚନ୍ଦ୍ର ବୋଷ ୧୯୨୨ ମସିହାରେ ଖୋର୍ଦ୍ଧାରେ ଡେପୁଟି ମାଜିଷ୍ଟ୍ରେଟ ଥିଲେ । ସେତେବେଳେ 'ସମାଜ'ରେ ଗୋଟିଏ

ସମ୍ବାଦ ଏହି ଶିରୋନାମାରେ ପ୍ରକାଶ ପାଇଥିଲା, 'ସତ୍ୟ ହୋଇଥିଲେ ସାଂଘାତିକ' । ସମ୍ବାଦର ବିଷୟବସ୍ତୁ ହେଉଛି, ପୁରୀ ଜିଲ୍ଲାର ବେଗୁନିଆ ଥାନାର ପୁଲିସ ଗୋଟିଏ ନାରୀ ଉପରେ ପାଶବିକ ଅତ୍ୟାଚାର କରିଥିବାରୁ ସେହି ନାରୀଟି ଲଜ୍ଜାରେ ଆତ୍ମହତ୍ୟା କରିଥିଲା । ଅସହଯୋଗ ଆନ୍ଦୋଳନରେ ନେତୃତ୍ୱ ନେଇଥାନ୍ତି ବୋଲି ସେତେବେଳେ ଜିଲା-କର୍ତ୍ତୃପକ୍ଷଙ୍କର ଗୋପବନ୍ଧୁଙ୍କ ଉପରେ ମହାରାଗ । ଜିଲା ପୁଲିସ ସାହେବଙ୍କ ପ୍ରରୋଚନାରେ ବେଗୁନିଆ ଥାନାର ପୁଲିସ ଖୋର୍ଦ୍ଧା କଚେରୀରେ ଗୋପବନ୍ଧୁଙ୍କ ବିରୁଦ୍ଧରେ ଏକ ସଙ୍ଗୀନ ମାନହାନି ମକଦ୍ଦମା ଆଗତ କଲେ । ଭୟରେ ଖୋର୍ଦ୍ଧାର ଏସ୍. ଡି. ଓ. ସେ ମକଦ୍ଦମାର ବିଚାର ନିଜ ହାତକୁ ନ ନେଇ ଡେପୁଟି ମାଜିଷ୍ଟ୍ରେଟ ସୁରେଶବାବୁଙ୍କ ଉପରେ ସେ ଭାର ଲଦିଦେଲେ । ବିଚାର କିଛିଦିନ ଧରି ଚାଲିଲା । ମକଦ୍ଦମା ବିଚାର ଦେଖିବାକୁ ସୁଦୂର ପୁରପଲ୍ଲୀରୁ ବହୁଲୋକ ଖୋର୍ଦ୍ଧାକୁ ଆସୁଥାନ୍ତି । ମକଦ୍ଦମାର ରାୟ ବାହାରିଲା ଦିନ କଚେରୀ ହତାରେ ଅସଂଖ୍ୟ ଲୋକଙ୍କର ସମାଗମ ହୋଇଥିଲା । ଏ ମକଦ୍ଦମାରେ ଗୋପବନ୍ଧୁ ନିର୍ଦ୍ଦୋଷ ପ୍ରମାଣିତ ହେଲେ; କିନ୍ତୁ ଗୋପବନ୍ଧୁଙ୍କଠାରେ କି ଅପୂର୍ବ ବ୍ୟକ୍ତିତ୍ୱର ସନ୍ଧାନ ସୁରେଶବାବୁ ପାଇଥିଲେ, ସେ ଜାଣନ୍ତି, ଦିନେ ଆବେଗକମ୍ପିତ କଣ୍ଠରେ ସେ କହିଥିଲେ, "ଗୋପବନ୍ଧୁଙ୍କର ଅନେକ ଗୁଣ ଥିଲା । କେତେକ କ୍ଷେତ୍ରରେ ମହାତ୍ମାଗାନ୍ଧିଙ୍କ ଅପେକ୍ଷା ତାଙ୍କୁ ମୁଁ ଉଚ୍ଚ ଆସନ ଦିଏ ।" ଏହାର କାରଣ କ'ଣ ? ଏହା ଅନ୍ୟ କିଛି ନୁହେଁ । ଗୋପବନ୍ଧୁଙ୍କର ପ୍ରଭାବଶାଳୀ ବ୍ୟକ୍ତିତ୍ୱ ।

କେବଳ ଏତିକି ନୁହେଁ, ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ପରିଚୟ ନିଜେ ସୁରେଶବାବୁ ଦେଇଛନ୍ତି, 'ସମାଜ'ରେ ଧାରାବାହିକଭାବରେ ପ୍ରକାଶିତ ତାଙ୍କର 'ଗୋପବନ୍ଧୁ ସ୍ମୃତି' ପ୍ରବନ୍ଧରେ । ସେଥିରେ ଷଷ୍ଠ ପ୍ରବନ୍ଧରେ ସେ ଲେଖିଛନ୍ତି, "ଯେଉଁ କେତେଦିନ ଧରି ମକଦ୍ଦମାର ବିଚାର ଚାଲିଲା, ପ୍ରତିଦିନ ହଜାର ହଜାର ଲୋକ ବିଚାର ଦେଖିବାଲାଗି ଆସି ରୁଣ୍ଡ ହେଉଥିଲେ । ମଫସଲ ଅଞ୍ଚଳରୁ ଶହଶହ ଲୋକ ମଧ୍ୟ ଶଗଡ଼ରେ ଆସୁ-ଥିଲେ । × × × ରାୟ ଶୁଣାଇବା ତାରିଖ ଦିନ ସକାଳେ ଦେଖାଗଲା କଚେରୀ ଚାରିପଟେ ସହର ଭିତରେ ୩୦ ହଜାରରୁ ଊର୍ଦ୍ଧ୍ୱ ଲୋକ ପଣ୍ଡିତ ଗୋପବନ୍ଧୁଙ୍କ ବିରୁଦ୍ଧରେ ମାନହାନି ମକଦ୍ଦମାର ରାୟ ଶୁଣିବାକୁ ଜମା ହୋଇଛନ୍ତି । ରାୟ ଶୁଣାଇବା ଦିନ ସକାଳେ ମୁଁ ଘରେ ରାୟ ଲେଖୁଥିଲାବେଳେ ସବ୍‌ଡିଭିଜନ ଅଫିସର ରାୟ ବାହାଦୂର ଅଜୟଚନ୍ଦ୍ର ଦାସ ମୋ ବଙ୍ଗଳାକୁ ଆସିଲେ । ଖୋର୍ଦ୍ଧାଭଳି ଗ୍ରେଟ ସହରରେ ଯେପରି ଭାବରେ ଏ ବିରାଟ ଜନସମୁଦ୍ର ଚାରିଆଡ଼େ ଘେରି ରହିଛି, ସେଥିରେ ସେ ଭାରି ଆତଙ୍କିତ ହେଲେ ।"

ଗୋପବନ୍ଧୁଙ୍କର ଏପରି ବିପୁଳ ଲୋକପ୍ରିୟତା ଏବଂ ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀଙ୍କର ଏପରି କୋଳୁଆ ଭୟର କାରଣ କ'ଣ ? ଏହାର କାରଣ

ପ୍ରକୃତଃ ଗୋପବନ୍ଧୁଙ୍କର ସେହି ସ୍ୱମୋହନକାରୀ ବିରାଟ ବ୍ୟକ୍ତିତ୍ୱର ମହିମା । ଯେଉଁ ବ୍ୟକ୍ତିତ୍ୱକୁ କଳନା କରିବା ସେମାନଙ୍କ ପକ୍ଷରେ ସାଧ୍ୟାତୀତ; ସେହିପରି କେତେକଣ ମୁଷ୍ଟିମେୟ ଇତର ବ୍ୟକ୍ତି ଗୋପବନ୍ଧୁଙ୍କ ଜୀବଦ୍ଦଶାରେ ତାଙ୍କ ନାମରେ ନାନା କୁତ୍ସା ରଚନା କରିଥିଲେ । ଏହି କୁତ୍ସା ରଚନାର ଅନ୍ତରାଳରେ ବି ଅଛି ଗୋପବନ୍ଧୁଙ୍କର ସେହି ହୀରକପ୍ରଭ ବିରାଟ ବ୍ୟକ୍ତିତ୍ୱର ଅନିର୍ବାଣ ଶକ୍ତି, ଯାହା ଏହି ଦୋଷଦର୍ଶୀମାନେ ଅବବୋଧ କରିପାରି ନ ଥିଲେ, କରିଥିଲେ ମଧ୍ୟ ପ୍ରକାଶ କରିବାର ସତ୍‌ସାହସ ସେମାନଙ୍କର ନ ଥିଲା । ଏ ବ୍ୟକ୍ତିତ୍ୱର ବିନାଶ ସାଧନ ଥିଲା ଏହି କୁତ୍ସାରଚନାକାରୀ ନିନ୍ଦୁକମାନଙ୍କର ଏକମାତ୍ର ବ୍ୟବସାୟ ।

ତେବେ ଏ ବ୍ୟକ୍ତିତ୍ୱର ଉପାଦାନ କ'ଣ ? ମନୋବିଜ୍ଞାନୀଙ୍କ ମତରେ ବ୍ୟକ୍ତିତ୍ୱ କିମ୍ବା Personalityର ଆଉ ଗୋଟିଏ ସଂଜ୍ଞା ହେଲା, 'Inner essence'— ଅନ୍ତରର ନିର୍ଯ୍ୟାସ କିମ୍ବା ସାରବସ୍ତୁ । ଗୋପବନ୍ଧୁଙ୍କର ଏହି ଅନ୍ତରର ସାରବସ୍ତୁର ଉତ୍ସ-ଭୂମି କେଉଁଠାରେ ? କାହାଦ୍ୱାରା ସେ ପ୍ରଭାବିତ ? କିଏ ତାଙ୍କ ଜୀବନକୁ ଏପରି ଭାବରେ ସୁଗଠିତ କରିଥିଲା ? ଏପର୍ଯ୍ୟନ୍ତ ଯେଉଁମାନେ ସେ ବିଷୟରେ କିଛି ଆଲୋକପାତ କରିଅଛନ୍ତି, ସେମାନଙ୍କ ମଧ୍ୟରୁ କେହି କେହି କହନ୍ତି, ଜଗନ୍ନାଥ-ଦାସଙ୍କ ଭାଗବତ ପାଠ ଆବାଲ୍ୟରୁ ତାଙ୍କ ଜୀବନରେ ଆଧ୍ୟାତ୍ମିକ ଚେତନାର ବୀଜ ବପନକରି ତାଙ୍କୁ କ୍ରମେ କ୍ରମେ ଅନିବାର୍ଯ୍ୟ ଭାବରେ ଟାଣି ନେଇଛି ମନୁଷ୍ୟ-ସେବା ପ୍ରତି । କଥାଟା ନିତାନ୍ତ ଅବାନ୍ତର ନୁହେଁ । ତାଙ୍କ ଘରେ ପ୍ରତିଦିନ ଭାଗବତ ପଢ଼ା ହେଉଥିଲା । ସେ ପିଲାଦିନେ ଭାଗବତ ପାରାୟଣ କରୁଥିଲେ, ଭାଗବତର ଅନେକ ଅଂଶ ତାଙ୍କର କଣ୍ଠସ୍ଥ ହୋଇଥିଲା । ସେ ଏକାକୀ ଚାଲିବୁଲି କଲାବେଳେ ଭାଗବତରୁ ପଦେ ପଦେ ଆବୃତ୍ତି କରି ଆହ୍ଲାଦ ଅନୁଭବ କରୁଥିଲେ; ଭାଗବତର ଏକାଦଶ ସ୍କନ୍ଧ ତାଙ୍କର ଭାରି ପ୍ରିୟ ଥିଲା । ଏହି ସ୍କନ୍ଧର ଦ୍ୱାଦଶ ଅଧ୍ୟାୟରେ ଭଗବାନ୍ କହି ଅଛନ୍ତି—

"ସମଦରଶୀ ସତ୍ୟ ସାର । ଶୁଦ୍ଧ ବିବେକ ମତ ଯାର<br>
ଦ୍ରୋହ-ବର୍ଜିତ ଶାନ୍ତିପର । ତ୍ୟାଗ ସ୍ୱଭାବ ମହାଧୀର<br>
କୃପାଳୁ ସର୍ବଲୋକ ହିତ । ଶୁଚି ପବିତ୍ର ଦୃଢ଼ବ୍ରତ<br>
ଅଳ୍ପ ଭୋଜନେ ମନ ସ୍ଥିର । ମୃଦୁ ପ୍ରସନ୍ନ ଗତାଶ୍ୱର<br>
ସଂକଳ୍ପ ଅମାନୀ ଆନନ୍ଦ । କବି ପଣ୍ଡିତ ଶୁଦ୍ଧ ବୁଦ୍ଧ<br>
ଚିତ୍ତ-ସଂକଳ୍ପ ଅପ୍ରମାଦୀ । ଗମ୍ଭୀର ଚିତ୍ତ ଧୀର ବୁଦ୍ଧି<br>
ଏ ବଇଷ୍ଣବର ଲକ୍ଷଣ । ସତ୍ୟାଦି ଏକବିଂଶ ଗୁଣ ।"

ଭାଗବତ ବର୍ଣ୍ଣିତ ଏହି ଏକବିଂଶ ବୈଷ୍ଣବ ଲକ୍ଷଣରେ ସେ କ'ଣ ପ୍ରଭାବିତ ହୋଇ ଆବାଲ୍ୟରୁ ଜୀବନକୁ ଏହିପରି ଶୁଦ୍ଧ, ବୁଦ୍ଧ, ଧୀର ଓ ପ୍ରଶାନ୍ତ କରି ଗଢ଼ିଥିଲେ ? ଏ ପ୍ରଭାବକୁ ଅସ୍ୱୀକାର ବା କରିବ କିଏ ? ତାଙ୍କ ଗଦ୍ୟରଚନାଶୈଳୀର ସୌନ୍ଦର୍ଯ୍ୟର ପରମ ସମ୍ପଦ ହେଉଛି ସ୍ଥାନେ ସ୍ଥାନେ ଭାଗବତରୁ ଆପ୍ତପଦର ଉଦ୍ଧାର । ୧୯୧୯ ମସିହାର ଉତ୍କଳ-ସମ୍ମିଳନୀର ସଭାପତିରୂପେ ସେ ଯେଉଁ ବକ୍ତୃତା ଦେଇଥିଲେ ତାହାର ଉପକ୍ରମରେ ଥିଲା, "ମା ଉତ୍କଳ ଜନନୀ, ଏ ଅଧମ ସନ୍ତାନ-ଠାରେ ତୁମ୍ଭର ଯଦି ଏତେ ଦୟା ଏହାର କର୍ତ୍ତବ୍ୟପଥରେ ତୁମେହିଁ ସହାୟ ହୁଅ । ମା' ମୁଁ ଉପସ୍ଥିତ ଘଟନାରେ ଦେଶର ନାୟକ ନୁହେଁ, ତାହା ମୋର କେବେ ବାଞ୍ଛା ନୁହେଁ, ତୁମର ନମ୍ର ସେବକ ହେବା ହିଁ ମୋ ଜୀବନର ଚରମ ଆକାଂକ୍ଷା । ଆଜି ବିଶେଷଭାବରେ ସେ ସେବା କରିବାକୁ ମୋତେ ସୁଯୋଗ ଦେଇଅଛ; ତହିଁରେ ମୁଁ ଧନ୍ୟ ଏବଂ ପୁଣ୍ୟ ହୋଇଅଛି । ମା' ଏ ଅଧମ ଅଜ୍ଞାନ ସନ୍ତାନ ତୋର କି ସେବା କରିବ ?"

'ତୋତେ ହିଁ ତୁହି ରକ୍ଷା କର
ମୁଁ ତୁଚ୍ଛ ମନୁଷ୍ୟ ମାତର ।'

ଜୀବନର ନିରାଡ଼ମ୍ବର ସରଳତା, ନେତୃତ୍ୱର ନିରହଙ୍କାରତା, ମୁନିଜନସୁଲଭ ବିନମ୍ରତା ଏବଂ ପବିତ୍ର ସେବାମନୋଭାବ ପ୍ରଭୃତିର ଆଦର୍ଶ ହୁଏତ ପିଲାଦିନରୁ ସେ ଏହି ଭାଗବତରୁ ପାଇଥିଲେ । ତେଣୁ ସେ ଯେତେବେଳେ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନର କର୍ଣ୍ଣଧାର, ଏବଂ ଭଗୀରଥଙ୍କ ପରି ଅସହଯୋଗର ତ୍ରିପଥଗାମିନୀକୁ ଯେତେବେଳେ ଓଡ଼ିଶାର ପୁରପଲ୍ଲୀରେ ପ୍ରବାହିତ କରି ଜନସମାଜରେ ଅଭ୍ୟର୍ଥିତ, ସେତେବେଳେ ମଧ ସେ ସେହି ଦୈନ୍ୟ ଓ ବିନମ୍ରତା ପ୍ରକାଶକରି ଦେଶବାସୀଙ୍କୁ ଶୁଣାଇ ଅଛନ୍ତି ।

"ଏ ବିଶ୍ୱାସେ ମନ ଦୃଢ଼କର ଭାଇ,
ନେତାର ଅଭାବ ଲାଗି ଭାବନାହିଁ,
କର୍ମଭୂମେ କିଏ ନେତା କିବା ମିତ ?
ସରବେ ନିମିତ୍ତ ବିଧି-ନିୟୋଜିତ ।"

୧୯୦୫ ମସିହା ହେବ । ଗୋପବନ୍ଧୁ ଓକିଲାତି ପଢ଼ୁଥାନ୍ତି । ଛୁଟିରେ ଘରକୁ ଆସିଲେ ସାତମିତ ଭାଗବତ ପଢ଼ାରେ ଲାଗିଯାନ୍ତି । ସପ୍ତାହ ଭାଗବତ ପାଠ ଶେଷକରି ଉଦ୍‌ଯାପନର ଆୟୋଜନ ଚାଲିଥାଏ । ଗୋପବନ୍ଧୁଙ୍କ ଶୁଭ୍ରପୂତ ଦେହରେ କ୍ଷୌମବସ୍ତ୍ର । ଚକ୍ଷୁରେ ଅପୂର୍ବ ଦ୍ୟୁତି । ମୁଖମଣ୍ଡଳରେ ସ୍ନିଗ୍ଧ ପ୍ରସନ୍ନତା । ହଠାତ୍

ଯାଇ ସେଠାରେ ପହଞ୍ଚିଲେ ନୀଳକଣ୍ଠ, ହରିହର ଓ ସ୍ୱର୍ଗତ ପ୍ରଚାରକ ଅନନ୍ତ ମିଶ୍ର । ଚନ୍ଦ୍ରପକ୍ଷ ରାତିରେ ଗୋପବନ୍ଧୁଙ୍କ ସହ ସମସ୍ତେ ଭାର୍ଗବୀ ନଈବନ୍ଧତଳେ ଯାଗେଶ୍ୱରଙ୍କ ମନ୍ଦିର ପାଖେ ବସି ଦେଶର ଭବିଷ୍ୟତ ଚିନ୍ତା କରୁଥିଲେ । ଆବେଗ ଓ ତନ୍ମୟତା ମଧ୍ୟରେ ସଙ୍କଳ୍ପ କରାଗଲା, "ସରକାରୀ ଚାକିରୀ କରିବାନାହିଁ । ନିଜର ଭରଣପୋଷଣ ଓ ବିଳାସରେ ମନ ଦେବାନାହିଁ । ଜନ୍ମହୋଇ ଦେଶକୁ ଯାହା ଦେଖିଥାଉଁ, ମଲା-ବେଳେ ତାହାଠାରୁ ଉନ୍ନତତର ଅବସ୍ଥାରେ ଛାଡ଼ିଯିବା ଓ ସେଥିପାଇଁ ବରାବର ପ୍ରଯତ୍ନରେ ରହିବା ।"

ଏ କର୍ମଯୋଗ କି ଭାଗବତର ଅପ୍ରତ୍ୟକ୍ଷ ଓ ଅଲକ୍ଷିତ ପ୍ରଭାବ ନୁହେଁ ? କିନ୍ତୁ ବାହ୍ୟ ପ୍ରଭାବର କିଛି ମୂଲ୍ୟ ନାହିଁ, ଯଦି ପ୍ରଭାବ ଗ୍ରହଣ କରିବା ବ୍ୟକ୍ତିର ସେ ପ୍ରଭାବ ପ୍ରତି ଆଗ୍ରହ ଓ ଶ୍ରଦ୍ଧା ନ ଥାଏ । ଗୋପବନ୍ଧୁଙ୍କପରି ଆଉ କେତେ କି ସେତେବେଳେ ଭାଗବତ ପଢ଼ୁଥିଲେ; କିନ୍ତୁ ସେମାନଙ୍କ ପ୍ରାଣରେ ଏ ଶୁଦ୍ଧପୂତ ଭାବ, କର୍ମଯୋଗର ଏ ଉଦ୍ଦୀପନା ଓ କଲ୍ୟାଣ ବ୍ରତର ଏ ପରିସ୍ପନ୍ଦ କାହିଁକି ଜାଗି ନ ଉଠିଲା ? ଚାକିରି ନ କରି ଦେଶସେବାରେ ସମଗ୍ର-ଜୀବନକୁ ଉତ୍ସର୍ଗ କରିବା, ଏ କଥା ଗୋପବନ୍ଧୁ ଏହା ପୂର୍ବରୁ ଆଉ ଜଣେ ବ୍ୟକ୍ତି କରିଥିଲେ ତାଙ୍କର ଗୁରୁ ମୋକ୍ତାର ରାମଚନ୍ଦ୍ର ଦାସଙ୍କଠାରେ । ଏହି ମୋକ୍ତାର ରାମଚନ୍ଦ୍ର ଦାସ ଜଣେ ଉଚ୍ଚକୋଟୀର ବ୍ୟକ୍ତିତ୍ୱବାନ ପୁରୁଷ ଥିଲେ । ପୁରୀ ଜିଲ୍ଲାସ୍କୁଲରେ ପଢ଼ିଲାବେଳେ ଗୋପବନ୍ଧୁଙ୍କ ପିତା ମୋକ୍ତାର ଦୈତାରି ଦାସ ପୁଅକୁ ତାଙ୍କର ତତ୍ତ୍ୱାବଧାନରେ ସମର୍ପଣ କରି ଦେଇଥିଲେ । ସେତେବେଳେ ପୁରୀ ସହରରେ ରାମଚନ୍ଦ୍ର ଦାସଙ୍କ ପରି ସ୍ୱାଧୀନଚେତା ଓ ସ୍ୱଦେଶପ୍ରେମୀ ବ୍ୟକ୍ତି ନ ଥିଲେ । ପଣ୍ଡିତ ଲିଙ୍ଗରାଜ ମିଶ୍ର କହନ୍ତି, "ରାମଚନ୍ଦ୍ରଙ୍କ ଆଦର୍ଶ ଓ ପ୍ରଭାବ ଗୋପବନ୍ଧୁଙ୍କୁ ସାଧାରଣ କର୍ମୀରୂପେ ଜୀବନ ଗଢ଼ି-ବାରେ ବିଶେଷ ସାହାଯ୍ୟ କରିଥିଲା ।" ମୋକ୍ତାରଙ୍କ ଘରେ ପ୍ରାୟ ପ୍ରତିଦିନ ଦେଶର ଭବିଷ୍ୟତ ନିମନ୍ତେ ଛାତ୍ରଜୀବନରୁ କିପରି ପ୍ରସ୍ତୁତ ହେବାକୁ ପଡ଼ିବ, ତାହାର ଗମ୍ଭୀର ଚର୍ଚ୍ଚା ହେଉଥାଏ । ସଭାସମିତି କରି ଓଜସ୍ୱିନୀ ବକ୍ତୃତା ଦେଇ କିପରି ଜନଶକ୍ତିକୁ ଜାଗ୍ରତ କରିବାକୁ ହେବ ଏବଂ ଲୋକମତ ଗଠନ କରିବାକୁ ହେବ, ସେ ଢଗରେ ପ୍ରଯତ୍ନ କରାଯାଉଥାଏ । ରାମଚନ୍ଦ୍ରଙ୍କ ଆଦର୍ଶ ଗୋପବନ୍ଧୁଙ୍କୁ ଏପରି ପ୍ରଭାବିତ କରି-ଥିଲା ଯେ ତାଙ୍କର ଉନ୍ନତ ଚରିତ୍ର ଓ ବିଦ୍ୟାଶିକ୍ଷା ପ୍ରତି ପ୍ରଗାଢ଼ ଶ୍ରଦ୍ଧା ଦେଖି ଜିଲ୍ଲା ସ୍କୁଲର ଶିକ୍ଷକମାନେ କେବଳ ଗୋପବନ୍ଧୁଙ୍କୁ ନୁହେଁ, ମୋକ୍ତାର ରାମଚନ୍ଦ୍ର ଦାସଙ୍କର ମଧ୍ୟ ଭୂରି ଭୂରି ପ୍ରଶଂସା କରୁଥିଲେ । ଗୋପବନ୍ଧୁ ରାମଚନ୍ଦ୍ରଙ୍କଠାରୁ ଯେଉଁ ସଞ୍ଜୀବନୀ ମନ୍ତ୍ରଟି ଶିକ୍ଷାକରି ସାରା ଉତ୍କଳରେ ତାହା ପ୍ରତିଷ୍ଠିତ କରିବାକୁ ଅସାଧ୍ୟ ସାଧନ କରିଥିଲେ, ତାହା ହେଉଛି 'ଶିକ୍ଷା ଓ ସ୍ୱାବଲମ୍ବନଶୀଳତାରେ ସ୍ୱାଧୀନତା ଆସେ' । ଥରେ-ମଲ୍ଲବୁରୁ ରାମଚନ୍ଦ୍ର, ଗୋପବନ୍ଧୁ ଓ ତାଙ୍କର କେତେଜଣ ସହପାଠୀଙ୍କୁ ଏକତ୍ର

କରି ଦିନେ ପଚାରିଥିଲେ, "ତୁମ୍ଭେମାନେ ବଡ଼ ହେଲେ କ'ଣ କରିବ ?" ସ୍ୱର୍ଗତ ମାଜିଷ୍ଟ୍ରେଟ ବୈଦ୍ୟନାଥ ମିଶ୍ର ଓ ଡେପୁଟି ଗୋପୀନାଥ ଦାଶ ଉତ୍ତର ଦେଇଥିଲେ 'ଆମେ ସରକାରୀ ଚାକିରୀ କରିବୁ ।' କିନ୍ତୁ ଅଶ୍ରୁସଜଳ ନେତ୍ର ଓ ବାଷ୍ପରୁଦ୍ଧକଣ୍ଠ ଗୋପବନ୍ଧୁ କୌଣସି ଉତ୍ତର ଦେଇ ନ ପାରିବାରୁ ତାଙ୍କର ମନକଥା ବୁଝିପାରି ରାମଚନ୍ଦ୍ର ତାଙ୍କୁ ଗାଢ଼ ଆଲିଙ୍ଗନ କରି ଗୋପବନ୍ଧୁଙ୍କ ଅଶ୍ରୁ ସହିତ ନିଜର ଲୋତକ-ଧାରା ମିଶାଇ ଏକାକାର କରିଦେଇ କହିଥିଲେ, "ଗୋପ, ଆଜି ମୋର ଜୀବନର ଆକାଙ୍କ୍ଷା ଫଳବତୀ ହେଲା । ସ୍ୱାବଲମ୍ବନଶୀଳ ହେବାକୁ ହେଲେ ତୁମକୁ ଆଇନ ପଢ଼ିବାକୁ ହେବ ।" ଶେଷରେ ସେହି ରାମଚନ୍ଦ୍ର ଦାଶ ତାଙ୍କୁ ଓକିଲାତି ପଢ଼ିବା ପାଇଁ ପଠାଇଥିଲେ ।

ଗୋପବନ୍ଧୁଙ୍କ ବହିଃପ୍ରଭାବର ଆଉ ଗୋଟିଏ ଉପାଦାନ ସ୍ୱର୍ଗତ ପଣ୍ଡିତ ହରିହର ଦାଶଙ୍କର ବ୍ୟକ୍ତିତ୍ୱ । ହରିହର ଦାଶଙ୍କୁ ଗୋପବନ୍ଧୁ ଦେଖି ନ ଥିଲେ; କିନ୍ତୁ ସଂସ୍କାରବାଦୀ ହରିହରଙ୍କଠାରେ ସେ ଯେଉଁ ଅଗ୍ନିଗର୍ଭ ତେଜସ୍ୱିତା, ଅକପଟ ଦେଶ-ହିତୈଷିଣା, ପ୍ରାଚ୍ୟ ପାଶ୍ଚାତ୍ୟର ମିଳନସ୍ପୃହା ଏବଂ ଦେଶରେ ଶିକ୍ଷା ପ୍ରସାର ନିମନ୍ତେ ଅଦମ୍ୟ ବ୍ୟାକୁଳତାର ପରିଚୟ ପାଇଥିଲେ, ତାହା ହିଁ ହରିହରଙ୍କ ବ୍ୟକ୍ତିତ୍ୱ ପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ମାନର କାରଣ । ଏହି ହରିହର ଥିଲେ ପୁରୀ ସଂସ୍କୃତ କଲେଜର ପ୍ରତିଷ୍ଠାତା । ସତ୍ୟବାଦୀ ସ୍କୁଲର ପାଠାଗାର ଏହି ହରିହର ଦାସଙ୍କ ନାମରେ ନାମିତ ହୋଇଥିଲା । ହରିହରଙ୍କ ପୁଣ୍ୟ ପ୍ରଭାବର କି ଅପୂର୍ବ ଜ୍ୟୋତିରଶ୍ମି ଗୋପବନ୍ଧୁଙ୍କ ଅନ୍ତରକୁ ଉଦ୍ଭାସିତ କରିଥିଲା କେଜାଣି, ତରୁଣ ବୟସରେ ଏହି ହରିହରଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ନିବେଦନ କରି ଗୋପବନ୍ଧୁ ଲେଖିଥିଲେ,

"କଠୋର ବୟସେ କେତେ ସ୍ୱାର୍ଥତ୍ୟାଗ
କରିଥିଲ ଦେଶହିତେ,
ଏବେ ଦେଶ ଦଶା ଆହେ କ୍ଷଣଜନ୍ମା
ନ ପଡ଼େ କି ଦୃଷ୍ଟି ଚିତ୍ତେ ?
ଉତ୍କଳ ମଣ୍ଡଳେ ନବ୍ୟ ସଭ୍ୟ ଦଳେ
ସର୍ବେ ଆଜି ସ୍ୱାର୍ଥପର
ଆସ ହରିହର ପଣ୍ଡିତ ପ୍ରବର
ସମାଜ ସଂସ୍କାର କର ।"

୧୯୦୫ ମସିହାର ବଙ୍ଗଭଙ୍ଗ ଓ ସ୍ୱଦେଶୀ ଆନ୍ଦୋଳନ ମଧ୍ୟ ଗୋପବନ୍ଧୁଙ୍କ ନବ ତାରୁଣ୍ୟ ଉପରେ କମ ପ୍ରଭାବ ବିସ୍ତାର କରି ନ ଥିଲା । ବିଦେଶୀ ବର୍ଜନ

ଆନ୍ଦୋଳନ ତାଙ୍କର ହୃଦୟତନ୍ତ୍ରୀକୁ ଏପରି ଆନ୍ଦୋଳିତ କରିଥିଲା ଯେ ଭାବପ୍ରବଣ ଓ ସ୍ପର୍ଶକାତର ଗୋପବନ୍ଧୁ ଗେରୁଆ ଲୁଗା ପିନ୍ଧି ସନ୍ନ୍ୟାସୀ ବେଶରେ ପୁରୀଜିଲାର ବିଭିନ୍ନ ଅଞ୍ଚଳ ବୁଲି ଗ୍ରାମେ ଗ୍ରାମେ ଭଗବତ ଘର, ବ୍ୟାୟାମଶାଳା ଓ ଶିକ୍ଷାଳୟ ପ୍ରତିଷ୍ଠା କରିବା ନିମନ୍ତେ ଲୋକସାଧାରଣଙ୍କୁ ଉଦ୍‌ବୋଧନ ଦେଉଥିଲେ। ଏହି ସ୍ୱଦେଶ ଓ ସ୍ୱାଧୀନତା ପ୍ରୀତିକୁ ଦୃଢ଼ୀଭୂତ କରିଥିଲା ଇଟାଲୀର ଜନନାୟକ, ମୁକ୍ତି ସଂଗ୍ରାମର ଅପରାଜେୟ ନେତା ମାଜିନି ଓ ଗାରିବାଲ୍‌ଡ଼ିଙ୍କ ଜୀବନଚରିତ ଏବଂ ଜାତୀୟ ଭାବୋଦ୍ଦୀପକ ଉନ୍ମାଦନାମୟ ଉଦ୍‌ବୋଧନ। ପୁରୀଜିଲା ସ୍କୁଲର ତୃତୀୟ ଶ୍ରେଣୀରେ ପଢ଼ିଲାବେଳେ ସେ ଏସବୁ ବହି ପଢ଼ୁଥିଲେ। ମାଜିନିଙ୍କର ଯେଉଁ ଉଦ୍ଦୀପନାମୟୀ ବାଣୀ ତାଙ୍କୁ ନିଜ ଦେଶକୁ ଶିକ୍ଷା, ସାହିତ୍ୟ, ସଂସ୍କୃତି ଓ ରାଜନୀତି ଦିଗରୁ ସ୍ୱାଧୀନ କରିବାକୁ ପ୍ରେରଣା ଦେଇଥିଲା, ସେ ବାଣୀ ହେଉଛି "Without a country and without liberty, we might produce some prophets of art, but no vital art. Therefore it was better for us to consecrate our lives to the solution of the problem—Are we to have a country ?" "ନିଜର ଦେଶ ଓ ମୁକ୍ତିବିନା କଳାବିଦ୍ୟାରେ କେତେକ ଅଗ୍ରଦୂତ ହୁଏତ ଜନ୍ମି-ପାରନ୍ତି, ମାତ୍ର ପ୍ରକୃତ ଜୀବନ୍ତ କଳାର ବିକାଶ ସେଥିରେ ହେବନାହିଁ। ତେଣୁ ଆମକୁ ଏହି ଗୋଟିଏ ସମସ୍ୟାର ସମାଧାନ ପାଇଁ ଜୀବନ ଉତ୍ସର୍ଗ କରିବାକୁ ହେବ ଏବଂ ସେ ସମସ୍ୟା ହେଉଛି; ଆମର ହୋଇ ଗୋଟିଏ ରାଜ୍ୟ ବା ରାଷ୍ଟ୍ର ରହିବ ତ ?"

କିନ୍ତୁ ଏ ପ୍ରଭାବ ସବୁ ବାହ୍ୟ। ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ବିକାଶ ଓ ପରି-ପୁଷ୍ଟିରେ ଏ ସକଳ ଉପାଦାନ ଯେ ସାହାଯ୍ୟ କରିନାହାନ୍ତି ତାହା ନୁହେଁ; କିନ୍ତୁ ଏ ବ୍ୟକ୍ତିତ୍ୱ ଭଗବାନଙ୍କର ଆଶୀର୍ବାଦ-ଭଗବତ୍‌-କୃପାର ଫଳ, ଏହା ପୂର୍ବ ଜନ୍ମର ସଞ୍ଚିତ ପୁଣ୍ୟକର୍ମର ପରିଣାମ; ଏହା ଏକ ସହଜାତ-ପ୍ରବଣତା, ଏକ ଦିବ୍ୟ ଉନ୍ମାଦନା। ନରଠାରେ ଏ ଦେବତ୍ୱ, ସର୍ବଭୂତେ ଦୟାରୂପକ, ଏ ଐଶୀ ବିଭୂତି, ଏହି ନିରବଧି-କାଳ ଓ ବିପୁଳା ପୃଥ୍ୱୀ ମଧ୍ୟରେ କେତେଜଣଙ୍କୁ ମିଳିଛି ? ଯାହାକୁ ମିଳିଛି ସେ ସୌଭାଗ୍ୟବାନ୍। ଉପନିଷଦ କହେ—

ନାୟମାତ୍ମା ପ୍ରବଚନେନ ଲଭ୍ୟୋ ନ ମେଧୟା ନ ବହୁନା ଶ୍ରୁତେନ।
ଯମେ ବୈଷ ବୃଣୁତେ ତେନ ଲଭ୍ୟଃ···

ଆତ୍ମା ଶାସ୍ତ୍ରାନୁଶୀଳନରେ ଲଭ୍ୟ ନୁହେଁ, କି ବୁଦ୍ଧିଶକ୍ତିଦ୍ୱାରା ଆୟତ୍ତ ନୁହଁ— କେବଳ ମନନର ଅଧିଗତ ନୁହେଁ। ସେ ଯାହାକୁ ବରଣ କରନ୍ତି, ତା'ଦ୍ୱାରା

କେବଳ ଏହି ଆତ୍ମାଲଭ୍ୟ । ଗୋପବନ୍ଧୁ ଭକ୍ତିବିଭୋର କଣ୍ଠରେ ସଦାବେଳେ ଗାଇଥାନ୍ତି ।

'ଯେତେବେଳେ ଯାହା ଲୋଡ଼ୁଛ ହେ ପିତା
ତେତେବେଳେ ତାହା ଦେଇଛ,
ଯେତେବେଳେ ଯାହା କରୁଛ ହେ ପିତା
ତେତେବେଳେ ତାହା କହୁଛ ।
ପରାଣ-ଦେବତା ହେ ପରାଣ-ସଖା
କେତେମନ୍ତେ ମନ ମୋହୁଛ
ଯେତେ ଅପରାଧ, ଯେତେ ଅନାଚାର
କ୍ଷମାନିଧି ସବୁ ସହୁଛ ।'

ଜୀବନର ସମସ୍ତ ଆଦର୍ଶର ଆଦର୍ଶ କିଏ ? ଏ ପ୍ରଶ୍ନର ଉତ୍ତର ସତ୍ୟବାଦୀ ବିଦ୍ୟାଳୟର ଛାତ୍ର ଥାଇ ଆମ୍ଭେମାନେ ଗୋଟିଏ କୁଳ ସମ୍ମିଳନର ଦୀର୍ଘ ଉଦ୍‌ବୋଧନରେ ଶୁଣିବାକୁ ପାଇଥିଲୁ : "ବିଧାତାଙ୍କ କରୁଣାରେ ଆମ୍ଭେମାନେ ବୁଦ୍ଧି ଓ ଶରୀର ପାଇଅଛୁ । ତାଙ୍କର ଅନନ୍ତ ଦୟାରେ ବଞ୍ଚିଅଛୁ । ସେହି ଦୟାରେ ଜଗତ ଅଛି, ଚଳୁଅଛି । ବିଧାତା ସମସ୍ତଙ୍କୁ ଦୟାକରନ୍ତି, ସ୍ନେହକରନ୍ତି । ଯେଉଁଠାରେ ଦୟା, ସ୍ନେହ ପ୍ରୀତି ଆମ୍ଭେ ଦେଖୁ ତାହା ସେହି ବିଧାତାଙ୍କଠାରୁ ଆସିଅଛି । ପିତା ପୁତ୍ରକୁ ସ୍ନେହ କଲାବେଳେ ମଧ୍ୟ ଆମ୍ଭେମାନେ ସେହି ବିଧାତାଙ୍କର ସ୍ନେହର କଣିକାଏ ସେଠାରେ ପାଉ । ସେଥିପାଇଁ ଆମ୍ଭେ ବିଧାତାଙ୍କୁ କହୁ ବିଶ୍ୱପିତା, ବିଶ୍ୱଜନନୀ, ବିଶ୍ୱବନ୍ଧୁ ଓ ବିଶ୍ୱରାଟ୍ । ସେହି ଅନନ୍ତ କରୁଣାମୟ ପ୍ରୀତିମୟ ବିଧାତା ହିଁ ଆମ୍ଭର ଆଦର୍ଶ ।" ଏହି ଉଦ୍‌ବୋଧନବାଣୀ ସତ୍ୟବାଦୀ ବିଦ୍ୟାଳୟର ଯେ କୌଣସି ଶିକ୍ଷକଙ୍କ କଣ୍ଠରୁ ଉଚ୍ଚାରିତ ହୋଇ ନା କାହିଁକି, ଏହାହିଁ ଗୋପବନ୍ଧୁଙ୍କ ଜୀବନର ବାଣୀ । ତାଙ୍କର ଆଦର୍ଶର ଉତ୍ସ ସେହି ବିଧାତା ଏବଂ ପଦେ ପଦେ ଗୋପବନ୍ଧୁ ସେହି ପ୍ରଭାବରେ ପ୍ରାଣିତ । ଗୋପବନ୍ଧୁଙ୍କ ଜୀବନଦର୍ଶନର ସାରତତ୍ତ୍ୱ ହେଲା, "ପୁଣି କୌଣସି ଉଚ୍ଚ ସାଧୁଚିନ୍ତା ଏବଂ ଉନ୍ନତ କାର୍ଯ୍ୟ ଅନୁଷ୍ଠାନ ଯେ କେହି ସୂତ୍ରପାତ କରନ୍ତୁ ତାହା ବ୍ୟକ୍ତିବିଶେଷର ସୃଷ୍ଟି ନୁହେଁ । ତାହା ସମସ୍ତ କଲ୍ୟାଣର ଆଧାର ସେହି ବିଧାତାଙ୍କଠାରୁ ଆସେ । ତହିଁର ପ୍ରକାଶରେ ବ୍ୟକ୍ତିବିଶେଷ ନିମିତ୍ତ ମାତ୍ର । କଲ୍ୟାଣଧର୍ମୀ ଗୋପବନ୍ଧୁଙ୍କର କର୍ମ ଓ ସାହିତ୍ୟସୃଷ୍ଟି ଏ ସକଳର ଆଧାର ସେହି ବିଶ୍ୱବନ୍ଧୁ । ସଂସ୍କୃତରେ ଗୋଟିଏ ଆପ୍ତବାକ୍ୟ ଅଛି 'ଯଦ୍ ଭାବଂ ତଦ୍‌ଭବତି ।" ଯେ ଯେପରି ଭାବେ, ସେ ସେହିପରି ହୁଏ । ଗୋପବନ୍ଧୁ ଯେପରି ଭାବୁଥିଲେ, ସେହିପରି ହେଲେ । 'ଯୋ ଯଚ୍ଛ୍ରଦ୍ଧଃ ସ ଏବ ସଃ ।'

---

## ଦ୍ୱିତୀୟ ପରିଚ୍ଛେଦ

### ଗୋପସାହିତ୍ୟର ଭୂମିକା

ଗୋପ-ସାହିତ୍ୟର ପରିମାଣ ସ୍ୱଳ୍ପ । ତଥାକଥିତ ସୃଷ୍ଟିଧର୍ମୀ ସାହିତ୍ୟ-ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ସେ ସାହିତ୍ୟକ୍ଷେତ୍ରରୁ ନିର୍ବାସିତ ଦୀର୍ଘ ପ୍ରବନ୍ଧାବଳୀର ବି ଅଭାବ । ଜୀବନଚରିତ ନଥିଲେ ମଧ୍ୟ ଜୀବନୀମୂଳକ କ୍ଷୁଦ୍ର କବିତା ଅଛି; କିନ୍ତୁ ତାହାର ସଂଖ୍ୟା ବି ଅଧିକ ନୁହେଁ । ସୃଷ୍ଟିର ପ୍ରାଚୁର୍ଯ୍ୟ ନାହିଁ । ଯାହା ଅଛି, ସେଥିରେ "କଳ୍ପନାବିଳାସର ବୈଭବ ଓ ଭାଷାର ସୂକ୍ଷ୍ମ କଳାଗ୍ରତୁରୀ ନାହିଁ । ଗଦ୍ୟ-ସାହିତ୍ୟ ମଧ୍ୟରେ 'ସତ୍ୟବାଦୀ'ର ଆଲୋଚନା-ସ୍ତମ୍ଭରେ ପ୍ରକାଶିତ ନାନା ଜାତୀୟ ସମସ୍ୟାର ଆଲୋଚନା, 'ସମାଜ'ର ସମ୍ପାଦକୀୟ ସଭାସମିତିରେ ପ୍ରଦତ୍ତ ଭାଷଣ ଏବଂ ଅଦ୍ୟାବଧି ଲୋକମୁଖରେ ପ୍ରଚଳିତ ତାଙ୍କର ସରସତାପୂର୍ଣ୍ଣ ସଳାପ-ସମ୍ଭାଷଣ, କାବ୍ୟ ମଧ୍ୟରେ 'ଧର୍ମପଦ' ଏବଂ 'ନଚିକେତା' ଉପାଖ୍ୟାନ ଓ ଜୀବନର ବିଭିନ୍ନ ସମୟରେ ରଚିତ ଗୀତିକବିତାର ସମାହାର 'ଅବକାଶଚିନ୍ତା' 'କାରାକବିତା' ଓ 'ବନ୍ଦୀର ଆତ୍ମକଥା' ଏବଂ ପୁରାଣ ପରମ୍ପରାରେ ପ୍ରଣୀତ ଗୋ-ଜାତିର ମହତ୍ତ୍ୱ 'ଗୋ-ମାହାତ୍ମ୍ୟ' । ପ୍ରଶ୍ନ ଉଠିପାରେ, ଏହି ସ୍ୱଳ୍ପ କୃତିକୁ କେନ୍ଦ୍ରୀଭୂତ କରି, ଏଡ଼େ ବଡ଼ ସମାଲୋଚନା-ଗ୍ରନ୍ଥର ଆବଶ୍ୟକତା କେଉଁଠାରେ ? ଯାହା ପୁଣି ସର୍ବସାଧାରଣବୋଧଗମ୍ୟ, ସରଳ, ପ୍ରାଞ୍ଜଳ ଓ ନିରାଭରଣ ଭାଷାରେ ରଚିତ, ତା' ଉପରେ ଏତେ ଟୀକା ଟିପ୍ପଣୀ, ଏତେ ଭାଷ୍ୟ କାହିଁକି ? ଏହାର ଉତ୍ତରରେ ଏତିକିମାତ୍ର କୁହାଯାଇ ପାରେ, କେଉଁ ଜାତି କିମ୍ବା କେଉଁ ବ୍ୟକ୍ତିର ସାହିତ୍ୟିକ ଉତ୍କର୍ଷ କିମ୍ବା ସିଦ୍ଧି ଗ୍ରନ୍ଥର ସଂଖ୍ୟା କିମ୍ବା ଫଳନର ପ୍ରାଚୁର୍ଯ୍ୟ ଉପରେ ନିର୍ଭର କରେନାହିଁ, ନିର୍ଭରକରେ କୃତିର ଚମତ୍କାରିତା ଏବଂ ସୁଦୂରପ୍ରସାରୀ ପ୍ରଭାବ ଉପରେ—ଜାତୀୟ ଚରିତ୍ର ଗଠନକୁ ଆଖି ଆଗରେ ରଖି ଏହା ସର୍ବାଙ୍ଗୀଣ ଚେତନାରେ କେତେଦୂର ଜନସମାଜକୁ ଉଦ୍‌ବୁଦ୍ଧ କରିଛି, ସେଥିରେ ଏବଂ ଆଳସ୍ୟ-ବିଜଡ଼ିତ କର୍ମଭୀରୁ ଓ ଚିନ୍ତାବିରହିତ ମନରେ, ସୁମହାନ୍ ଅସନ୍ତୋଷ ଓ ଅତୃପ୍ତିର ବେଦନାବୋଧ ସୃଷ୍ଟିକରି ଆମେ ଯାହା ଥିଲୁ ବା ଅଛୁ, ତା'ଠାରୁ ଆହୁରି ଶକ୍ତିଶାଳୀ, ମହତ୍ତର ଓ ଉନ୍ନତତର କରିବାର ଅନିର୍ବାଣ ଦୀପଶିଖା ଚିତ୍ତ-ପୀଠରେ ପ୍ରଜ୍ୱଳିତ କରି ରଖିବାରେ । ଏ ଦୃଷ୍ଟିରୁ ବିଗ୍ଭରକଲେ ଗୋପ-ସାହିତ୍ୟର ପରିମାଣ ସ୍ୱଳ୍ପ ହେଲେହେଁ, ତାହା ମୂଲ୍ୟବାନ୍, ଚନ୍ଦନପରି ତା'ର ସୌରଭ ଦିଗଦିଗନ୍ତ ବିଚ୍ଛୁରିତ । ଓଡ଼ିଆ ଜାତି ପ୍ରତି ସେ ସ୍ୱଳ୍ପ ସାହିତ୍ୟ ଚିର ଦୀପ୍ତିମନ୍ତ ଆଲୋକ-ବର୍ତ୍ତିକା । ସେ କୃତିରେ କେବଳ ଦୀପ୍ତି ନାହିଁ, ନୂତନତ୍ୱର ଦିଗଦର୍ଶନ ଅଛି,

ସର୍ବୋଦୟର ବ୍ୟାପ୍ତି ଅଛି, ସନ୍ନ୍ୟାସୀର ବୈରାଗ୍ୟ ସାଧନା ଅଛି, ଅହିଂସାଧର୍ମୀ ବୀର ପୁରୁଷର 'ରଣ-ହୁଂକାର' ଅଛି, କର୍ମଯୋଗୀର ପ୍ରବୃଦ୍ଧ ସ୍ପନ୍ଦନ ଓ ଜାଗରଣ ଅଛି, ସାମ୍ପ୍ରାଦିକତା ସହିତ ଚିରନ୍ତନ-ସାହିତ୍ୟର ସମ୍ମେଳନ ଅଛି, ଆଶା ନୈରାଶ୍ୟର ଆଲୋକ ଛାୟା ଅଛି, ଜାତିର ସର୍ବତୋମୁଖୀ ଶ୍ରେୟବୋଧର କଲ୍ୟାଣଶ୍ରୀମଣ୍ଡିତ ଅଭିପ୍ରକାଶ ଅଛି ଏବଂ ଅଛି ଏକସୂତ୍ରରେ ଗ୍ରଥିତ ମଣିଗଣପରି ମହାକାଳର ପ୍ରବହମାନ ଗତିଶୀଳତା—ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସଂଯୋଗ ସାଧନା । ଉପନିଷଦ୍ କହେ, "ସହ ନୌଭୁନକ୍ତୁ । ସହ ବୀର୍ଯ୍ୟଂ କରବାବହେ । ତେଜସ୍ୱି ନାମଧୀତମସ୍ତୁ । ମା ବିଦ୍ୱିଷାବହୈ"—ଆମ୍ଭେମାନେ ଐକ୍ୟବଦ୍ଧ ହୋଇ କର୍ମକରୁ, ଆମ୍ଭମାନଙ୍କର ଅଧ୍ୟୟନ ତେଜୋମୟ ହେଉ । ଆମ୍ଭମାନଙ୍କ ମଧ୍ୟରେ ବିଭେଦର ସୀମାରେଖା ନ ରହୁ । ଗୋପ-ସାହିତ୍ୟ ଏହି ମନ୍ତ୍ରରେ ଅଭିସିଂଚିତ, ଏହି ଶକ୍ତିରେ ସଂଜୀବିତ । ଗୋପ-ସାହିତ୍ୟ 'ଚିରନ୍ତନ-ଗାମୀ' ନ ହେଲେ ସୁଦ୍ଧା ସ୍ୱଳ୍ପପରିସୀମା ମଧ୍ୟରେ ଏହା ସର୍ବତ୍ରଗାମୀ । ଏଥିରେ ଜୀବନ ସହିତ ଜୀବନର ନିବିଡ଼ ଯୋଗ ଅଛି—ଭୂମି ସହିତ ଭୂମାର ମିଳନ ଅଛି । ମାନବତା ସହିତ ଅନ୍ତଃସ୍ଫୂର୍ତ୍ତି ଭଗବତ୍‌ଚେତନାର ମଣି-କାଞ୍ଚନ ସଂସର୍ଗ ଅଛି । ଇଦାନୀନ୍ତନକୁ ଅତିକ୍ରମକରି ଏ ସାହିତ୍ୟରେ ଅଛି ଚିରନ୍ତନର ଇଙ୍ଗିତ । ଯେଉଁଠାରେ ଇଦାନୀନ୍ତନର ସଙ୍କେତ, ସେହିଠାରେ ଗୋପବନ୍ଧୁ ସାମ୍ୟାଦିକ; କିନ୍ତୁ ଏହି ଇଦାନୀନ୍ତନର ପଶ୍ଚାତ୍‌ରେ ଅଛି ଶାଶ୍ୱତର ଅନୁରଣନ ଓ ପ୍ରତିଧ୍ୱନି । ଦେଶର କଲ୍ୟାଣଚିନ୍ତା ସହିତ ଜଡ଼ିତ ହୋଇଛି ନିବିଡ଼ ଅଧ୍ୟାତ୍ମ-ଚେତନା । ଯେ ଦେଖେ, ଜାଣେ ଓ ପ୍ରକାଶ କରେ ସେ କବି । 'କବିର୍ମନୀଷୀ ପରିଭୂଃ ସ୍ୱୟମ୍ଭୂଃ'- ସେ କ୍ରାନ୍ତଦର୍ଶୀ ଦିବ୍ୟଦୃଷ୍ଟିସମ୍ପନ୍ନ, ସେ ଚର୍ମଚକ୍ଷୁରେ ଦେଖେନାହିଁ, ଦେଖେ ମର୍ମଚକ୍ଷୁରେ । ଯେଉଁ କବି କେବଳ ଅପ୍ରୟୋଜନର ଆନନ୍ଦ ପରିବେଷଣ କରିବା ଉଦ୍ଦେଶ୍ୟରେ ଲେଖେ, ସେ ହୁଏତ ଖାଲି କାଳିରେ କଲମ ବୁଡ଼ାଇ ଲେଖେ; କିନ୍ତୁ ଯେ ଶିଳ୍ପ କିମ୍ବା ସାହିତ୍ୟକୁ ଏକ ବିଶିଷ୍ଟ ମାନବୀୟ ତଥା ସାମାଜିକ କର୍ତ୍ତବ୍ୟ ବୋଲି ମନେକରେ, ଯୁଗଜୀବନର ପରମ ଶ୍ରେୟବୋଧକୁ ଶିଳ୍ପାୟିତ କରି ଭବିଷ୍ୟତ ଇତିହାସର ଗତି ନିର୍ଦ୍ଦେଶ କରେ, ସେ କ'ଣ କେବଳ କାଳିରେ କଲମ ବୁଡ଼ାଇ ଲେଖି ତା'ର କର୍ତ୍ତବ୍ୟ ନିଃଶେଷ କରେ ? ସେ ଲେଖେ ନିଜର ସ୍ୱେଦ ଓ ଶୋଣିତରେ । ସେ ଲେଖେ ଲେଖନୀକୁ ତା'ର ଅଜସ୍ର ଅଶ୍ରୁଧାରରେ ସିକ୍ତକରି । ସେ ଏହି ସସୀମ ପୃଥିବୀର ସଂକୁଚିତ ପରିସର ମଧ୍ୟରେ ଅସୀମକୁ ରୂପାୟିତ କରେ, ବିରାଟ ଭୂମାକୁ ଦ୍ୟୋତିତ କରେ ।

ଏହି ପରିପ୍ରେକ୍ଷୀରେ ବିଚାରକଲେ ଯୋଗୀ ଅରବିନ୍ଦ କବି, ସ୍ୱାମୀ ବିବେକାନନ୍ଦ ଶିଳ୍ପୀ, ଗାନ୍ଧି ସୁନ୍ଦରର ଉପାସକ ଏବଂ ଗୋପବନ୍ଧୁ 'କବିର୍ମନୀଷୀ' ।

ପରମ ଶକ୍ତି-ସାଧକ ରାମକୃଷ୍ଣ ପରମହଂସଙ୍କୁ କବିରୂପେ ପ୍ରତିପାଦନ କରିବାକୁ ଯାଇ ଜଣେ ସୃଜନଧର୍ମୀ ସମାଲୋଚକ ଯାହା ଲେଖିଅଛନ୍ତି, ତାହା ଗୋପବନ୍ଧୁଙ୍କ ପ୍ରତି ଅକ୍ଷରେ ଅକ୍ଷରେ ପ୍ରଯୋଜ୍ୟ ନୁହଁକି ? ତେବେ ସୃଷ୍ଟିର ପ୍ରାଚୁର୍ଯ୍ୟ ଓ ଅପ୍ରାଚୁର୍ଯ୍ୟର ପ୍ରଶ୍ନ ଗୋପ-ସାହିତ୍ୟର ଆଲୋଚନାରେ ନିତାନ୍ତ ଅବାନ୍ତର । ସେହି ସମାଲୋଚକ କହନ୍ତି, "ଏହି ବିଶ୍ୱସୃଷ୍ଟି ହିଁ ମନୁଷ୍ୟ ନିକଟକୁ ଲେଖା ଈଶ୍ୱରଙ୍କର ଗୋଟିଏ ପ୍ରେମ ପତ୍ର । ଆଉ ମନୁଷ୍ୟର ସାହିତ୍ୟ ହେଉଛି ତା'ର ପ୍ରତ୍ୟୁତ୍ତର । ଏହି ବିଶ୍ୱସୃଷ୍ଟି ହେଉଛି ଈଶ୍ୱରଙ୍କର ସ୍ୱରସମ୍ଭାଷଣ, ସାହିତ୍ୟ ହେଉଛି ତାହାର ପ୍ରତିଧ୍ୱନି । ଏହି ବିଶ୍ୱସୃଷ୍ଟି ହେଉଛି ଈଶ୍ୱରଙ୍କର କାନ୍ତି-ଗୌରବ, ସାହିତ୍ୟ ହେଉଛି ତା'ର ପ୍ରତିଚ୍ଛାୟା ।"

ଗୋପବନ୍ଧୁଙ୍କ ନିକଟରେ ବାରମ୍ବାର ଈଶ୍ୱରଙ୍କର ଏ ପ୍ରେମପତ୍ର ଯାଇ ଉପନୀତ ହୋଇଛି । ଗୋପବନ୍ଧୁଙ୍କ ହୃଦୟକୁ ଏହା ବାରମ୍ବାର ଆଘାତ କରିଛି । ତାଙ୍କ ହୃଦୟକୁ ଭକ୍ତି-ସ୍ରୋତରେ ପ୍ଲାବିତ କରିଛି । ତାଙ୍କର ଆତ୍ମାକୁ ଊର୍ଦ୍ଧ୍ୱାୟିତ କରିଛି । ଈଶ୍ୱର-ପ୍ରେମର ପ୍ରତିଧ୍ୱନି ତାଙ୍କର ପ୍ରତ୍ୟେକ କର୍ମଚିନ୍ତା, କଥା ଓ କବିତାରେ ତା'ର ଅନିର୍ବାଣ ସ୍ୱାକ୍ଷର ବହନ କରିଛି । ତାଙ୍କର ସକଳ କର୍ମକୁ ସେ ବଦ୍ଧାଞ୍ଜଳି ହୋଇ ଭଗବାନଙ୍କଠାରେ ସମର୍ପଣ କରିଦେଇ ଅଛନ୍ତି । ଅହଂଜନିତ ଆତ୍ମକେନ୍ଦ୍ରିକତାର ଲବମାତ୍ର ପ୍ରକାଶ ତାଙ୍କର କର୍ମ-ପ୍ରବାହରେ ନାହିଁ, କି କବିତାରେ ନାହିଁ । ଏହି ସଂସାରର ପ୍ରପଞ୍ଚଜ୍ୱାଳାରେ ତାଙ୍କର ହୃଦୟ ବେଳେ ବେଳେ କ୍ଷତବିକ୍ଷତ ହୋଇଥିଲେ ମଧ୍ୟ, ବିଶ୍ୱବିଧାତାଙ୍କର ସେହି ଚରମ ପ୍ରେମ-ପତ୍ର ତାଙ୍କ ପ୍ରାଣରେ ବଳିଷ୍ଠ ଆଶା, ବିଶ୍ୱାସ ଓ ଆନନ୍ଦ ସଂଚାର କରିଛି, ତାଙ୍କର 'କାମନା ନିଚୟ'କୁ ଧର୍ମ ଅନୁକୂଳ କରିଅଛି, ମର୍ମକୋଷରୁ ସ୍ୱତଃ ଉଚ୍ଚାରିତ ହୋଇଛି—

'ଚଳାଅ ମୋ ଅଙ୍ଗେ ଅମୀୟ ଅଙ୍ଗୁଳି
ଦିଅ ଶିରେ ମୋର ପୁଣ୍ୟ ପଦଧୂଳି
ବଜାଅ ସେ ବୀଣା ମୃତ୍ୟୁଭୟ-କ୍ଷୀଣା
ଉଠୁ ପ୍ରାଣ ମୋ ଉଚ୍ଛୁଳି ।'

( 'କାରାକବିତା'—'ଦେଖାଦିଅ ବାରେ ।')

କିମ୍ବା

'ତାଙ୍କ ପ୍ରେମ-ରାଜ୍ୟେ ନାହିଁ ଅସୁନ୍ଦର
ଅସତ୍ୟ ଅନ୍ୟାୟ ଅଶୁଭବିନ୍ଦୁ,
କି ମୋର ଭାବନା ମୋ ପ୍ରାଣ-ପ୍ରବାହ
ଭେଟିଅଛୁ ଆଜି ସେ ପ୍ରେମସିନ୍ଧୁ ।'

('କାରାକବିତା'-'ବ୍ୟଥିତପ୍ରାଣର ଅନ୍ତିମ ଅଶ୍ରୁ')

ସୃଷ୍ଟି ସ୍ୱଳ୍ପ ହେଲେ ମଧ୍ୟ ଗୋପ-ସାହିତ୍ୟ ରତ୍ନଗର୍ଭ, ବିଶ୍ୱଜନୀନ, ଆତ୍ମାର ଊର୍ଦ୍ଧ୍ୱାୟନର ପ୍ରଶସ୍ତ ସେତୁ, ପବିତ୍ରତାର ପ୍ରେରକ, ସୁନ୍ଦର, ମଧୁର, ଶ୍ରେଷ୍ଠ ଓ ମହତ୍ତ୍ୱର ଜାଗ୍ରତ-ମନ୍ତ୍ର ଏବଂ ମାନବତାର ପରମାଦର୍ଶ ।

ଭକ୍ତକବି ମଧୁସୂଦନ ଲେଖିଅଛନ୍ତି ।

'ଶିଳାରେ ଘଷିଲେ ଚନ୍ଦନ,
ସୁବାସକରେ ବିତରଣ ।'

ତେଣୁ ଗୋପବନ୍ଧୁଙ୍କ ସାହିତ୍ୟ-ଚନ୍ଦନକୁ ଯେ କୌଣସି ଦୁର୍ବଳ ଲେଖନୀ ଘର୍ଷଣ କରୁ, ସେଥିରୁ ସୁବାସ ନିଶ୍ଚୟ ଉଦ୍‌ଗତିବ । ଏ ସୁବାସ ଉତ୍କଳ ଜାତିର ଭିତରର ପ୍ରତିରନ୍ଧ୍ରରେ ବିକୀର୍ଣ୍ଣ ହେବ, ସେତିକି ତାଙ୍କ ଜୀବନର ମହାପ୍ରାଣ ମନ୍ତ୍ର ଆମ ହୃଦୟ-କନ୍ଦରରେ ପ୍ରବେଶ କରିବ, ସେତିକି ଆମେ ଧନ୍ୟ ଓ ପୁଣ୍ୟ ହେବା । ତେଣୁ ୧୯୨୮ ମସିହାରୁ ଏ ପର୍ଯ୍ୟନ୍ତ ଗୋପ-ସାହିତ୍ୟର ଧାରାବାହିକ ଆଲୋଚନା କେବଳ ଓଡ଼ିଶା ନୁହେଁ, ଓଡ଼ିଶା ବାହାରେ ମଧ୍ୟ ହୋଇଆସୁଅଛି । ଗୋପବନ୍ଧୁଙ୍କ ଆତ୍ମାର ସନ୍ଧାନ ଲାଭକରିବାକୁ ନାନା ମାନସ ପ୍ରୟତ୍ନକରି ତାଙ୍କର ଜଣେ ଶ୍ରେଷ୍ଠ ପ୍ରତିଭାପୂଜକ ଶେଷରେ ନିରାଶ ହୋଇ ତାଙ୍କୁ କଳ୍ପନା-ଚକ୍ଷୁରେ ସୁଦୀର୍ଘ ଛତିଶ ବର୍ଷ ପରେ ଏହି ରୂପରେ ଦେଖିବାକୁ ପାଇଅଛନ୍ତି—

ସେ ଜନ-ସାଗର ଭିତରେ ଦେଖିଲି ବାଟୋଇ ଜଣେ
ଶିଥିଳ ଚରଣ ବିକଳମନେ
ଅର୍ଦ୍ଧାଶନେ
କରପାତ୍ର ବସିଥିଲେ କି ଧ୍ୟାନେ ।
କଙ୍କାଳମୟ ବସନ- ବିହୀନ ଅଙ୍ଗତଳେ
ସେ କିବା ଜଠର-ଅନଳ ଜଳେ
ଲୋତକଜଳେ
ଦେଖିଲି ତୁମର ବଦନ ଝଲେ ।'

ଷଟ୍‌ତ୍ରିଂଶତମ ଶ୍ରାଦ୍ଧ ସଂଖ୍ୟା 'ସମାଜ' ।
ଶ୍ରୀ ଗୋଦାବରୀଶ ମହାପାତ୍ର-'ଦେଖିଲି ତୁମର ବଦନ ଝଲେ' ।

ଗୋପବନ୍ଧୁଙ୍କ ସାହିତ୍ୟ ଓଡ଼ିଆ ସାହିତ୍ୟର ସମାଲୋଚନା-ଶିଳ୍ପକୁ ଯେ କେତେକାଂଶରେ ସୃଷ୍ଟିଧର୍ମୀ କରିପାରିଛି, ଏପରି ଏକ ମତ ପୋଷଣ କରିବାରେ ଅବାସ୍ତବତା ନାହିଁ । ତେଣୁ ଗୋପ-ସାହିତ୍ୟର ଏହି ଅଖଣ୍ଡ-ପ୍ରବାହରେ ଉପସ୍ଥିତ

ଲେଖକର ଏହି ଅକିଂଚିତ୍କର କ୍ଷୀଣ ପ୍ରୋକ୍ତିଟି ମିଶାଇଦେଲେ, କ୍ଷତି ବା କ'ଣ ? ଏ ତ ଗୋପବନ୍ଧୁ-ସାହିତ୍ୟର ସମାଲୋଚନା ନୁହଁ, ଏହା ଦୀନ ଲେଖକର 'ପୂଜାର ଆବେଗମିଶ୍ରିତ ବ୍ୟାଖ୍ୟା' । ବିଶ୍ୱକବି ରବୀନ୍ଦ୍ରନାଥଙ୍କ ମତରେ 'ଯଥାର୍ଥ ସମାଲୋଚନା ପୂଜା, ସମାଲୋଚକ ପୂଜାରୀ, ପୁରୋହିତ ।'

—୨—

ଗୋପବନ୍ଧୁଙ୍କ ସାହିତ୍ୟ କେଉଁ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ? ଏହାର ବହୁ ଆଲୋଚନା ସମାଲୋଚନା ହୋଇସାରିଛି । ଗୋପବନ୍ଧୁ କିମ୍ବା ସତ୍ୟବାଦୀ-ଯୁଗର ସାହିତ୍ୟକୁ ଆଦର୍ଶବାଦୀରୂପେ ପ୍ରତିପାଦନ କରି କେହି କେହି ମଧ୍ୟ ଆକ୍ଷେପ କିମ୍ବା ଆକ୍ରୋଶ ବ୍ୟକ୍ତ କରିଅଛନ୍ତି । ସତ୍ୟବାଦୀର ସାହିତ୍ୟ ରାଧାନାଥ-ସାହିତ୍ୟର କେବଳ ମୌନ ପ୍ରତିବାଦ ବୋଲି କୌଣସି କୌଣସି ସମାଲୋଚକ ମତ ପ୍ରକାଶ କରିଅଛନ୍ତି; କିନ୍ତୁ ଏ ସବୁ ସତ୍ୟ ହୋଇପାରେ, ଏ ସତ୍ୟ ପୂର୍ଣ୍ଣ ନୁହେ—ଆଂଶିକ ।

ଗୋପବନ୍ଧୁ ଯେ ଜଣେ ବଳିଷ୍ଠ ଓ ଗରିଷ୍ଠ ଆଦର୍ଶବାଦୀ, ଏଥିରେ ମତଦ୍ୱୈଧ ନାହିଁ । ଗୋପବନ୍ଧୁ ନିଜେ ତାଙ୍କ ସମ୍ପାଦିତ 'ସତ୍ୟବାଦୀ' ମାସିକ ପତ୍ରରେ ଏହି ଆଦର୍ଶର ସ୍ପଷ୍ଟ ସୂଚନା ଦେଇ ତାକୁ କିପରି ଅବଲମ୍ବନେ କର୍ମରେ ପରିଣତ କରିବାକୁ ହେବ, ତାହାର ସ୍ପଷ୍ଟ ସଙ୍କେତ ଦେଇଅଛନ୍ତି । ଜୀବନକୁ ସେହି ଆଦର୍ଶରେ ସଂଜୀବିତ କରି କର୍ମକ୍ଷେତ୍ରରେ ତାହା ରୂପାନ୍ତରିତ କରିବାକୁ ଚେଷ୍ଟା କରିଅଛନ୍ତି । ସ୍ୱାମୀ ବିବେକାନନ୍ଦଙ୍କ ପରି ଆଦର୍ଶବିଚ୍ୟୁତିକୁ ସେ ଜୀବନର ମହାପାପ ବୋଲି ମନେ କରୁଥିଲେ । "ତ୍ୟାଗ କର, ତ୍ୟାଗ ଛଡ଼ା କୌଣସି ମହତ୍କାର୍ଯ୍ୟ ସମ୍ପନ୍ନ ହୋଇ ନ ପାରେ । ବୁକୁ ଚିରି ହୃତ୍ପିଣ୍ଡ ବାହାର କରିବାକୁ ହେବ, ସେହି ରକ୍ତସିକ୍ତ ହୃଦୟ ଜନସେବାର ବେଦମୂଳରେ ଉତ୍ସର୍ଗ କରିବାକୁ ହେବ । ମହତ୍କାର୍ଯ୍ୟ ନିମନ୍ତେ ବିରାଟ ମୂଲ୍ୟ ଦେବାକୁ ହେବ"—ବିବେକାନନ୍ଦଙ୍କର ଏ ବାଣୀ ଗୋପବନ୍ଧୁଙ୍କ ଜୀବନରେ ଅକ୍ଷରେ ଅକ୍ଷରେ ପ୍ରତିପାଳିତ ହୋଇଅଛି । କର୍ମକୁ ସେ କବିତାରୁ ବିଚ୍ଛିନ୍ନ କରି ଦେଇ ନାହାନ୍ତି । କେବଳ ଆତ୍ମୋପଲବ୍ଧିର ଆନନ୍ଦ ତାଙ୍କ ସାହିତ୍ୟର ଚରମ ଲକ୍ଷ୍ୟ ନୁହଁ । ସେ ଜନସେବାରେ ନିଜକୁ ନିୟୋଜିତ କରି ଯେଉଁ ଅନୁଭୂତି ଲାଭକରି ଅଛନ୍ତି, ସେହି ଅନୁଭୂତିକୁ ସେ ଲକ୍ଷ ଲକ୍ଷ ପ୍ରାଣରେ ସଂକ୍ରାମିତ କରି ଜନଶକ୍ତିକୁ କର୍ମ-ପ୍ରବୃତ୍ତ କରିବାକୁ ଅକ୍ଲାନ୍ତ ସାଧନା କରିଯାଇଅଛନ୍ତି । ସାହିତ୍ୟ-ସାଧନା ତାଙ୍କର ସମାଜ-ସେବା କିମ୍ବା ଦେଶହିତୈଷଣାର ଏକ ଅଚ୍ଛେଦ୍ୟ ଓ ଅପରିହାର୍ଯ୍ୟ ଅଙ୍ଗ । ସାହିତ୍ୟକ୍ଷେତ୍ରରେ ସେ ଏକକ, ନିଃସଙ୍ଗ, ପଳାୟନପନ୍ଥୀ କିମ୍ବା

ଆନନ୍ଦବାଦୀ ନୁହନ୍ତି । ସାହିତ୍ୟଙ୍କ କମ୍ଵା କବି ଯେ ଜଣେ ସମାଜ-ବହିର୍ଭୂତ ଅନାବଶ୍ୟକ ବ୍ୟକ୍ତି, ଏ ଭ୍ରାନ୍ତ ଧାରଣା ଉପରେ ସେ କୁଠାରାଘାତ କରିଅଛନ୍ତି । ଆମୋଦ ପ୍ରମୋଦ ସୃଷ୍ଟିକରି ପାଠକର ଚିତ୍ତକୁ କ୍ଷଣିକ ଆନନ୍ଦ ଓ ଉତ୍ତେଜନାରେ ବିମୋହିତ ଓ ବିଭ୍ରାନ୍ତ କରିବା ଯେଉଁ ସାହିତ୍ୟର ଉଦ୍ଦେଶ୍ୟ, ଗୋପବନ୍ଧୁ ସେ ସାହିତ୍ୟକୁ ଦୂରରୁ ପ୍ରଣତି ନିବେଦନ କରିଅଛନ୍ତି । ଭାଷା ଓ ସାହିତ୍ୟର ଭୂୟୋବିକାଶ ନ ହେଲେ ଜାତିର ସ୍ୱାଧୀନତାର ବିଶେଷ କିଛି ମୂଲ୍ୟ ନାହିଁ, ଏ ଦୃଢ଼ ଧାରଣା ସେ ତାଙ୍କ ଚରିତ୍ରକୁ ଉପଲବ୍ଧି କରିଅଛନ୍ତି । ଏ ଦିଗରେ ରୁଷିଆର ଋଷି ଓ ମନୀଷୀ ଟଲ୍‌ଷ୍ଟୟ୍, ସ୍ୱାଧୀନ ଭାରତର ପିତା ମହାତ୍ମାଗାନ୍ଧି ଏବଂ ବିଶ୍ୱକବି ରବୀନ୍ଦ୍ରନାଥଙ୍କର ସାହିତ୍ୟାଦର୍ଶ ସହିତ ତାଙ୍କ ସାହିତ୍ୟାଦର୍ଶର ବିଶେଷ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ।

ବିଶ୍ୱକବି ରବୀନ୍ଦ୍ରନାଥ ତାଙ୍କ ମହାପ୍ରୟାଣରେ ଦୁଇ ବର୍ଷ ପୂର୍ବରୁ ୧୯୩୯ ମସିହାରେ ଅନ୍ତରର ମର୍ମନ୍ତୁଦ ଦୁଃଖପ୍ରକାଶ କରି ଲେଖିଥିଲେ, "ମନୁଷ୍ୟର ଅସମ୍ମାନ ମୋର ଚକ୍ଷୁସମ୍ମୁଖରେ ଦୁର୍ବିସହଦୁଃଖରେ ପୁଞ୍ଜିତ ହୋଇ ଉଠିଛି; କିନ୍ତୁ ମୁଁ ସେ ସବୁର ପ୍ରତିକାର କରିବା ନିମନ୍ତେ ଛୁଟି ଯାଇନାହିଁ । ସେ ଧିକ୍‌କାର ପ୍ରାଣେରେ, ମୋର ଚିରଲଗ୍ନ ହୋଇ ରହିଛି—ଚିରଲଗ୍ନ ଅଛେ ପ୍ରାଣେ ଧିକ୍‌କାର ତାହାର ।" କେବଳ ସେତିକି ନୁହଁ, ସେ ପୁଣି ଲେଖିଅଛନ୍ତି, "ମୁଁ କେବଳ ଜୀବନଯାକ କୀଟପରି ମୋ ଘରପାଖଯାକ ସୂକ୍ଷ୍ମ ରେଶମର ଜାଲ ବୁଣି ରହିଲି । ବାହାରେ ଯେ ପ୍ରକାଣ୍ଡ ଜୀବନ ପଡ଼ିରହିଛି, ସେଥିପ୍ରତି ଚଳେଚହେଲେ ଦୃଷ୍ଟି ଦେଲିନାହିଁ । କେବଳ ନିଜର ମଧୁର ତମିରରେ ବୁଡ଼ିରହିଲି । ମୁଁ ଯାହା ସବୁ ଲେଖି ସ୍ତୂପାକାରରେ ଜମେଇଦେଇ ଯାଉଛି, ସେ ଗାନର ପସରା କେବଳ କୃତ୍ରିମ ଓ ବ୍ୟର୍ଥ ପଣ୍ୟ-ସାମଗ୍ରୀରେ ପର୍ଯ୍ୟବସିତ ହୋଇ ରହିବ । ଏହି ନିବାର କଥା ମାନିନେଇ ମୋତେ ସମାରରୁ ବିଦାୟ ନେବାକୁ ହେବ । ଯେଉଁ ମନୁଷ୍ୟ କେବଳ କଳ୍ପନା-କୁଞ୍ଜରେ ବିହାର କରି ଗାନ ରଚନାକରେ, ସେ ମନୁଷ୍ୟ ମୋ ଅନ୍ତରରେ ଧରାପଡ଼ିଛି, ଯେଉଁ ମନୁଷ୍ୟ ଅନ୍ୟର ଦୁଃଖ ଦୁର୍ଗତି ଦୂରକରିବା ଉଦ୍ଦେଶ୍ୟରେ ନିଃସ୍ୱାର୍ଥ ଜନ-ସେବାରେ ନିଜର ପ୍ରାଣକୁ ଢାଳିଦିଏ, ସେ ମନୁଷ୍ୟର ଦେଖା ମୁଁ ପାଇନାହିଁ । ତେଣୁ ହେ ଜୀବନ ଦେବତା, ହେ ମୋହମୟୀ ଜବତା—'ଏବାର ଫିରାଓ ମୋରେ' ଏଥର ସେହି ମାନବସେବା କିମ୍ଵା ଚରମଙ୍ଗଳମୟ ମାନବତାର ସର୍ବିସ୍ୱ ଚୈତନ୍ୟ ପ୍ରତି ମୋର ଦୃଷ୍ଟି ଫେରାଇ ନିଅ । କବି କାଳିଦାସଙ୍କପରି ମୋତେ ଶୈବ କର । ମୁଁ ଜନମଙ୍ଗଳର କର୍ମନିଷ୍ଠ ଉପାସକ ହୁଏ । ଏ ସୌନ୍ଦର୍ଯ୍ୟମୁଗ୍ଧତା ମୋତେ ମାନବବିମୁଖ କରିଦେଇଛି, ବୃହତ୍ତର ସମାଜରୁ ମୋତେ ବିଚ୍ଛିନ୍ନକରି ବିକଳାଙ୍ଗ

କରିଦେଇଛୁ । ମୋତେ ନିଖିଳ ମାନବସହିତ ମୁକ୍ତକରି ମୋର ବ୍ୟାବହାରିକ ଜୀବନର ସାଫଲ୍ୟ ବିଧାନ କର ।"

'ଜୀବନେ ଜୀବନ ଯୋଗକରା
ନାହଲେ, କୃତ୍ରିମ ପଣ୍ୟେ ବ୍ୟର୍ଥ ହୟ ଗାନେର ପସରା ।
ତାଇ ଆମି ମେନେ ନିଇ ସେ ନିନ୍ଦାର କଥା
ଆମାର ସୁରେର ଅପୂର୍ଣ୍ଣତା ।
ଆମାର କବିତା, ଆମି ଜାନି
ଗେଲେଓ ବିଚିତ୍ରପଥେ ହୟନାଇ ସେ ସର୍ବତ୍ରଗାମୀ ।'

କବିଙ୍କର ନିଜପ୍ରତି ନିଜର ଏ ଧିକ୍କାର ଏବଂ ପ୍ରବଳ ଆତ୍ମ-ପ୍ରତିକ୍ରିୟାର ଫଳ ହେଉଛି ଶାନ୍ତିନିକେତନ ଏବଂ ବିଶ୍ୱଭାରତୀ । ରବୀନ୍ଦ୍ରଙ୍କ ସହଜାତ ସୌନ୍ଦର୍ଯ୍ୟସ୍ପୃହା ଓ ବିଶ୍ୱଜନୀନ ପ୍ରେମ କିମ୍ବା ମହାମାନବ ସେବାର ସମନ୍ୱୟ ପୀଠ ଏହି ବିଶ୍ୱଭାରତୀ ।

କିନ୍ତୁ ଗୋପବନ୍ଧୁଙ୍କର ମହାମାନବସେବା କିମ୍ବା ଜନକଲ୍ୟାଣ ପ୍ରୟାସ ଏପରି କୌଣସି ଆତ୍ମଧିକ୍କାର ବା ଆତ୍ମପ୍ରତିକ୍ରିୟାର ଫଳ ନୁହେଁ । 'ଅବକାଶ ଚିନ୍ତା' ତାଙ୍କର ଆଦ୍ୟ ଯୌବନର ସୃଷ୍ଟି । ଯୁବଜନସୁଲଭ ଉନ୍ମାଦନାର ପ୍ରେରଣା ଏହା ପଶ୍ଚାତ୍ତରେ ଅଛି ଏବଂ ରହିବା ସ୍ୱାଭାବିକ; କିନ୍ତୁ ସେହି ସମୟରୁ ବୃହତ୍ତର ସମାଜର କଲ୍ୟାଣ-ଚିନ୍ତା ତାଙ୍କ ମନପ୍ରାଣକୁ ଆକୁଳ କରିଅଛି । 'Young Utkal Association' ଗଠନକରି ଦୁର୍ଭିକ୍ଷ ଏବଂ ବନ୍ୟାପ୍ରପୀଡ଼ିତ ଲୋକମାନଙ୍କର ସେବା କରିବା ନିମନ୍ତେ ସେ ସେହି ସମୟରୁ ନିଜକୁ ପ୍ରସ୍ତୁତ କରିଅଛନ୍ତି । ଚୂଡ଼ାଙ୍ଗଡ଼ର ବାନ୍ଧ ଘୋର ବର୍ଷାକାଳରେ କୂଳପ୍ଲାବିନୀ ନଦୀ ଅତିକ୍ରମ କରିଛନ୍ତି । ଶିକ୍ଷା, ସାହିତ୍ୟ ଓ ସଂସ୍କୃତିର ପ୍ରତିଷ୍ଠା ଓ ପ୍ରସାରଦ୍ୱାରା ଦେଶବାସୀଙ୍କ ମଧ୍ୟରେ ମହାମାନବତାର ସ୍ପନ୍ଦନ ସୃଷ୍ଟି କରିବା ନିମନ୍ତେ ତାଙ୍କର ପରିକଳ୍ପନା ଏହି ଯୌବନରୁ । ବୃହତ୍ତର ସମାଜସହିତ ସେ ନିଜକୁ ମିଶାଇ ଦେଇଥିଲେ ଛାତ୍ରଜୀବନରୁ । ଜାତିର ଏ ପରମଶ୍ରେୟବୋଧ ଏବଂ ମାନବତାର ଏ ମହାସ୍ପର୍ଶୀ ଅନୁଭୂତି ତାଙ୍କ ଜୀବନର ଅଖଣ୍ଡ ଅବ୍ୟାହତ ପୁଣ୍ୟ ପରମ୍ପରା । ଛାତ୍ରାବସ୍ଥାରୁ ଆଦର୍ଶ ହିଁ ତାଙ୍କ ଜୀବନର ଅଟଳ ଧ୍ରୁବତାରା । ସାହିତ୍ୟରେ ଯେଉଁ ଉଚ୍ଚସ୍ଥାନ୍ ଆଦର୍ଶର ଅକ୍ଷୟ ପାଥେୟ ସେ ଆମପାଇଁ ସାଇତି ରଖିଯାଇଛନ୍ତି, ମାନବର ସେବାରେ ମଧ୍ୟ ସେହି ଆଦର୍ଶ । ଏହି ଆଦର୍ଶର ବିରୋଧ କିମ୍ବା ସଂଘର୍ଷ ତାଙ୍କ ସାହିତ୍ୟରେ ନାହିଁ । ଏ ସାହିତ୍ୟରେ ଯେ ସ୍ରଷ୍ଟା, ସେ କର୍ମୀ, ଗଦ୍ୟରେ ଯେଉଁ ପୁଣ୍ୟ ଉଚ୍ଛ୍ୱାସ, ପଦ୍ୟରେ ତାହାର ପ୍ରତିଚ୍ଛାୟା ମାତ୍ର । ରାଜନୈତିକ ଜୀବନରେ ଦେଶବାସୀଙ୍କର ଯେଉଁ ମଙ୍ଗଳ ଚିନ୍ତା ବନ୍ଦୀର ଆତ୍ମକଥାରେ ତାହାର ପ୍ରତିଧ୍ୱନି ।

ସାହିତ୍ୟର ଲକ୍ଷ୍ୟ ସମ୍ବନ୍ଧରେ ସେ ଥରେ 'ସତ୍ୟବାଦୀ'ରେ ଲେଖିଥିଲେ, 'କୌଣସି ଲେଖାଦ୍ୱାରା ଦେଶବାସୀଙ୍କ ଚିନ୍ତାରେ ଯଦି ସାମାନ୍ୟ ସ୍ପୃହଣୀୟ ପରିବର୍ତ୍ତନ ଘଟେ ଏବଂ ଜୀବନର ଉନ୍ନତିପକ୍ଷରେ କିଛି ସାହାଯ୍ୟ ମିଳେ, ତାହା ସର୍ବଥା ଆଦରଣୀୟ ।'

ରୁଷିଆର ଋଷି ଟଲଷ୍ଟୟଙ୍କ ପରି ଗୋପବନ୍ଧୁଙ୍କର ମତ—ସମାଜରେ ଅନ୍ୟ ଦଶଜଣ ଲୋକଙ୍କର ବିଭିନ୍ନ ପ୍ରକାର କର୍ମଦ୍ୱାରା ସମାଜର ତଥା ବୃହତ୍ତର ମାନବତାର ସେବା ଯେପରି ଅବଶ୍ୟ କରଣୀୟ, ଜଣେ କବି କିମ୍ବା ଶିଳ୍ପୀର ଠିକ୍ ସେହିପରି । କବି କିମ୍ବା ଶିଳ୍ପୀ ସମାଜ-ଜୀବନ ସହିତ ଅଚ୍ଛେଦ୍ୟଭାବରେ ସମ୍ପୃକ୍ତ । ସମାଜରେ ତା'ର ଗୋଟିଏ ବିଶିଷ୍ଟ ସ୍ଥାନ ଓ ପ୍ରୟୋଜନୀୟତା ଅଛି । ସେ ପ୍ରୟୋଜନୀୟତା ହେଉଛି, ତାହାର ସମାଜସେବା । କୃଷୀ କୃଷି ନକଲେ ସମାଜ ଜୀବନ ଯେପରି ଅଚଳ ହୋଇଉଠେ, ଜଣେ କବି କିମ୍ବା ଶିଳ୍ପୀ ଯଦି ସେହିପରି ତା'ର ମାନବତାର ସେବାରୂପକ ଅବଶ୍ୟ କରଣୀୟ କର୍ତ୍ତବ୍ୟ ନକରେ, ତେବେ ସମାଜର ଅଗ୍ରଗତି ସେହିପରି ଅଚଳ ହୋଇ ଉଠେ । ଇତିହାସର ଅଗ୍ରସରଣର ସ୍ରୋତ ପ୍ରତିରୁଦ୍ଧ ହୁଏ । ସମାଜର ସର୍ବାଙ୍ଗୀନ ଉନ୍ନତି ସୁଦୂରପରାହତ ହୁଏ । ଋଷି ଟଲଷ୍ଟୟଙ୍କ ପରି ଗୋପବନ୍ଧୁ ବାରମ୍ବାର ଆମକୁ ଚେତାଇ ଦେଇ ଯାଇଅଛନ୍ତି, 'କେଉଁ ଶିଳ୍ପ ବା ସାହିତ୍ୟ ସାର୍ଥକ କିମ୍ବା ଅସାର୍ଥକ ତାହାର ବିଚାର ମୁଖ୍ୟତଃ ହେବ ଏହି ପ୍ରଣାଳୀରେ :—ଏହି ଶିଳ୍ପ କିମ୍ବା ସାହିତ୍ୟ ମାନବତାକୁ ତାହାର ମଙ୍ଗଳ ଯାତ୍ରାପଥରେ କେତେ ଦୂର ଆଗେଇଦେଇ ପାରିଛି ।

ଟଲ୍‌ଷ୍ଟୟଙ୍କ ସାହିତ୍ୟାଦର୍ଶକୁ ଆଉରି ବିଶଦ ଏବଂ ପ୍ରାଞ୍ଜଳଭାବରେ ବିଶ୍ଳେଷଣ କରିବାକୁ ଯାଇ ଜଣେ ସମାଲୋଚକ ଲେଖିଅଛନ୍ତି, "ଜଣେ କବି କିମ୍ବା ଲେଖକ ତାହାର ଅନନ୍ୟସାଧାରଣ ସମ୍ବେଦନଶୀଳତାଦ୍ୱାରା ଯେଉଁ ଜୀବନସତ୍ୟକୁ ଗଭୀରଭାବରେ ଅନୁଭବ କରିଅଛି, ସେହି ଆନନ୍ଦମୟ ସତ୍ୟାନୁଭୂତିକୁ ବାହାର ସକଳ ମନୁଷ୍ୟ ଚିତ୍ତରେ ସଂକ୍ରାମିତ କରିଦେଇ ତାକୁ ସେହି ସତ୍ୟରେ ସମସ୍ତଙ୍କୁ ଉଦ୍‌ବୋଧିତ କରିବାକୁ ହେବ । ଏହା ବୃହତ୍ ସମାଜଜୀବନର ବିଶେଷ ଅଂଶୀଦାରରୂପେ ତାହାର ଅବଶ୍ୟକରଣୀୟ କାର୍ଯ୍ୟ । ବାସ୍ତବ-ଜୀବନର ପ୍ରେରକ ବୃତ୍ତି ନୁହଁ—ଆନନ୍ଦମୟ ହୃଦୟାନୁଭୂତି । ଜୀବନର ସତ୍ୟ ସମ୍ବନ୍ଧରେ ଏହି ଆନନ୍ଦମୟ ହୃଦୟାନୁଭୂତି ସଂକ୍ରାମିତକରି ଶିଳ୍ପ କିମ୍ବା ସାହିତ୍ୟ ସେହି ମଙ୍ଗଳମୟ ସତ୍ୟ ପ୍ରତି ଆମ୍ଭମାନଙ୍କର ମନ ଏବଂ କର୍ମକୁ ପ୍ରେରିତ କରେ । ଆମର ଶୁଭ ବୃତ୍ତିକୁ ଜାଗ୍ରତ କରେ ।"

ଗୋପବନ୍ଧୁ ଯୁଗପତ୍ ସମାଜକର୍ମୀ ଓ କବି, ଏଇ ଦୁଇ ବିଭାବ ମଧ୍ୟରେ ବ୍ୟବଧାନର ପ୍ରାଚୀର ନାହିଁ । ସମାଜକର୍ମୀ ଭାବରେ କବିର ବୈଶିଷ୍ଟ୍ୟ ହେଉଛି,

ଯେଉଁଠାରେ ତା'ର ମୁକ୍ତ, ଚିନ୍ତା ବୃତ୍ତି ଏବଂ କର୍ମଧାରା ଲୋକ-ସମାଜକୁ ପ୍ରଭାବିତ କରିପାରେନାହିଁ, ମାନବତାର ମହିମା ଝଙ୍କାର ମୁକ୍ତି କରିପାରେ ନାହିଁ, ପ୍ରାଣ-ଭୂମିରେ ଅମୃତରଧାରା ପ୍ରବାହିତ କରିପାରେ ନାହିଁ, ସେଠାରେ ସେ କାବ୍ୟ କବିତା ରଚନାକରି ମନୁଷ୍ୟର ହୃଦୟକୁ ଆନନ୍ଦ ସ୍ପନ୍ଦନରେ ଉଦ୍‌ବୁଦ୍ଧ କରେ । କର୍ମ-ପ୍ରବାହର ଉଦ୍ଦୀପନା ଓ ଶୃଙ୍ଖଳା ଜନ-ସମାଜରେ ଖେଳାଇ ଦିଏ । ଗୋପବନ୍ଧୁଙ୍କ କବିତା ରବୀନ୍ଦ୍ରନାଥଙ୍କ ଉକ୍ତିପରି 'ଆଳସ୍ୟର ସହସ୍ର ସଞ୍ଚୟ' ନୁହେଁ. ଏ କବିତାର ଦୀପ ଜାଳିଲେ କାହାର ଅନ୍ଧକାରମୟ ଗୃହ ଆଲୋକିତ ହେବନାହିଁ, ଏପରି କଥା କେହି କହିପାରିବ ନାହିଁ । ହୃଦୟ ଜାତ ସେହି ଦୀପକୁ କାଣବନରେ ଶୂନ୍ୟନଦୀର ତୀରରେ ନିସ୍ତବ୍ଧ ସନ୍ଧ୍ୟାରେ ଏକା ଏକା ଅକାରଣେ ଭସାଇ-ଦେବାକୁ କେହି ଇଚ୍ଛା ପ୍ରକାଶ କରିବେନାହିଁ । ଏ ଦୀପସବୁ ଦିନେ ଜଳି ଉଠିଥିଲା ଅନ୍ଧକାରପୂର୍ଣ୍ଣ ଗୃହକୁ ଆଲୋକମଣ୍ଡିତ କରିବା ନିମନ୍ତେ । ସେ ମହାଦୀପ ଅନିର୍ବାଣ, ତା'ର ନିର୍ବାଣ ନାହିଁ । ଏ ଯୁଗର ପ୍ରଗତିବାଦୀ କବି ତାହା ଯଥାର୍ଥ ଉପଲବ୍ଧି କରି ଲେଖିଛନ୍ତି—

'କେତେ ଏ ଜାତି ବୋଇତ ଲାଗି
ମହାଦୀପ ସେ ଅନିର୍ବାଣ ଜଳୁ
ଜୀଆଁ ଏ ତା'ର ପରଶ ତାପେ
ନିଗିରି ଯେତେ ଦୁଃଖୀ ମଲୁ ।'

କବି ଗୋପବନ୍ଧୁ ମଧ୍ୟ କବିର ଏ ସାମାଜିକ ଧର୍ମ ସମ୍ବନ୍ଧରେ ସମ୍ପୂର୍ଣ୍ଣ ସଚେତନ ଥିଲେ । ୧୯୨୫ ମସିହା କଥା, ହଜାରିବାଗ ଜେଲରୁ ଫେରି ଆସିବା-ପରେ । 'ସମାଜ' ପ୍ରେସ୍ ସେତେବେଳେ ପୁରୀରେ । ଗଠନମୂଳକ କାର୍ଯ୍ୟରେ ସେତେବେଳେ ଗୋପବନ୍ଧୁଙ୍କର ସକଳ ଚିନ୍ତା ଓ ଶକ୍ତି ନିୟୋଜିତ । ଦିନେ ସନ୍ଧ୍ୟାରେ କେତେଜଣ ସହକର୍ମୀଙ୍କ ସହିତ ଦେଶର ବର୍ତ୍ତମାନ ଓ ଭବିଷ୍ୟତ ନେଇ ଆଲୋଚନା କଲାବେଳେ ସେ ବଡ଼ ଗମ୍ଭୀରଭାବରେ କହିଥିଲେ, "ବିଦ୍ୟାଜ୍ଞାନର ଗଭୀରତା ଓ ସାଧନାର ନିବିଡ଼ତା ପରିବର୍ତ୍ତେ କୌଣସି ପ୍ରକାରେ ଉପଭୋଗ୍ୟବସ୍ତୁ ହାସଲ କରିବା ଓ ଲୋକଚକ୍ଷୁରେ କ୍ଷମତା ସାହାଯ୍ୟରେ ସହଜସୁଲଭ ଉପାୟରେ ବଡ଼ ପ୍ରତିପାଦିତ ହେବାରେ ଗର୍ବ ଓ ଆନନ୍ଦ ଅନୁଭବ କରିବାଟା ଯେପରିକି ଜୀବନର ସାର୍ଥକତା—ଏହି ଭାବ କ୍ରମେ ଯୁବଶକ୍ତିକୁ ବିମୁଗ୍ଧ କରୁଛି । ମୋର ମନେହୁଏ, ଏଥିର ଏକମାତ୍ର ପ୍ରତିକାର, କେତେକ ଜ୍ଞାନୀ, ଉଚ୍ଚଶିକ୍ଷିତ ଓ ସମାଜରେ ସମ୍ମାନିତ ବଡ଼ବଡ଼ିଆ ଲୋକ ନିଜକୁ ଏ ସାଧନାରେ ଉତ୍ସର୍ଗ କରିବା । ସେଥିପାଇଁ ମୁଁ ଲେଖିଥିଲି ।

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ
ଦେଶର ସ୍ୱରାଜ୍ୟପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।
ସ୍ୱାଧୀନତା ପଥେ ଚଳେ ହେଲେ ନର
ମୋ ଜୀବନଦାନେ ହେଉ ଅଗ୍ରସର ।
ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା,
ପୂରୁ ଏ ପରାଣେ ଏହି ଶେଷ ଭିକ୍ଷା ।"

ମୋ ଅନ୍ତରର ଏ ବେଦନା, ଏ କାମନା ଯଦି ମୋର ଆଜୀବନ ସଙ୍ଗୀମାନଙ୍କୁ ଅନୁପ୍ରାଣିତ ନ କରେ, ତେବେ ମୁଁ କହିବ ମୋ ସାଧନାରେ ଯଥାର୍ଥ ଆନ୍ତରିକତା ନ ଥିଲା । ମୁଁ ଦୁର୍ବଳ—ମୋ ଦୁର୍ବଳତା ଏ ଶିଥିଳତା ପାଇଁ ଦାୟୀ । ମୁଁ ଆଉ କାହାକୁ ଦୋଷ ଦେବି ? ବ୍ୟକ୍ତିର ବ୍ୟକ୍ତିତ୍ୱ, ସାଧନା ଓ ନିଷ୍ଠାର ସାଫଲ୍ୟ ସମାଜର ସର୍ବାଙ୍ଗୀନ ଉନ୍ନତି-ବିଧାନରେ । ବ୍ୟକ୍ତିର ଉଦୟ ଜନ-ସମାଜର କୋଟି କୋଟି ଲୋକଙ୍କର ଉଦୟରେ । ଏ ଉଦୟ ପୁଣି ସର୍ବତୋମୁଖୀ ହେବା ବିଧେୟ—ଧର୍ମ, ଦର୍ଶନ, ସାହିତ୍ୟ, ସମାଜ, ରାଜନୀତି, ଅର୍ଥନୀତି, ଭାଷା ଓ ଲିପି ଏ ସକଳ କ୍ଷେତ୍ରରେ । ଏହାର ନାମ 'ସର୍ବୋଦୟ' । ମହାତ୍ମାଗାନ୍ଧି ଶିଳ୍ପକ୍ଷେତ୍ରରେ ମଧ୍ୟ ଏ ସର୍ବୋଦୟର ସମର୍ଥକ । ଗୋପବନ୍ଧୁଙ୍କ ସାହିତ୍ୟ-କଳ୍ପା ଶିଳ୍ପାଦର୍ଶ ସହିତ ଗାନ୍ଧିଜୀଙ୍କ ଶିଳ୍ପାଦର୍ଶର ବି ସାମଞ୍ଜସ୍ୟ ଲକ୍ଷ୍ୟ କରିବାର କଥା । ଯୌବନରେ ଲେଖା 'ଅବକାଶ ଚିନ୍ତା'ରେ ସନ୍ନିବେଶିତ 'ବାଣୀ' କବିତାରେ ଗୋପବନ୍ଧୁ ଲେଖିଅଛନ୍ତି—

"ଆବର୍ଜନାମୟ ଏହି ସଂସାରଜଞ୍ଜାଳେ
କେବେ ପ୍ରପୀଡ଼ିତ ମୋର ନ ହେଉ ମାନସ,
କଳ୍ପନାର ସୁଖରାଜ୍ୟେ ଦେଖେ କାଳେ କାଳେ
ସ୍ୱର୍ଗୀୟ ସୁଷମା ଆଉ ସ୍ୱର୍ଗୀୟ ରହସ୍ୟ ।"

ଏହି 'ସ୍ୱର୍ଗୀୟ ସୁଷମା' ଓ 'ସ୍ୱର୍ଗୀୟ ରହସ୍ୟ' ଶୂନ୍ୟରେ ବିଲମ୍ବମାନ କୌଣସି ନିରାକାର ଆଦର୍ଶ ନୁହେଁ । ଏହା ଏହି ମର୍ତ୍ତ୍ୟଭୂମିର ସିଦ୍ଧିସାଧନା । ଲକ୍ଷ୍ୟ ହେଉଛି ସ୍ୱର୍ଗ, ଧରା ହେଉଛି ତା'ର ସାଧନାପୀଠ । ତେଣୁ ଗୋପ-ସାହିତ୍ୟରେ ମୃଣ୍ମୟ ସହିତ ଚିନ୍ମୟର ମଧୁରମୋହନ ସମନ୍ୱୟ । ସେଥିପାଇଁ ସାଧକର ଚିତ୍ତ ପବିତ୍ର ହେବା ଆବଶ୍ୟକ । ହୃଦୟ ମାଳିନ୍ୟରହିତ ଓ ନିଷ୍କପଟ ହେବା ଲୋଡ଼ା । ଦେଶବାସୀଙ୍କୁ 'ଅନ୍ନଭୋଜନ' ଦେଇସାରି 'ପରମାନ୍ନ ଭୋଜନର' ଆସ୍ୱାଦ ଦେବା ଗୋପବନ୍ଧୁଙ୍କର

ଲକ୍ଷ୍ୟ । ଧରିତ୍ରୀକୁ ସ୍ୱର୍ଗୀୟ ସୁଷମାରେ ବିମଣ୍ଡିତ କରିବା ନିମନ୍ତେ ଶାଣିତ-କ୍ଷୁରଧାରର ସାଧନା ପ୍ରୟୋଜନ । ଦେଶର ଲକ୍ଷ ଲକ୍ଷ ବୁଭୁକ୍ଷିତ ଓ ହୃତଶ୍ରୀ ଜନତା ଜନାର୍ଦ୍ଦନଙ୍କୁ ସାଙ୍ଗରେ ନେଇ ଏ ସାଧନା । ନିଜେ ସ୍ୱର୍ଗୀୟ ସୁଷମା ଲାଭକଲେ ଦେଶର ଯାଏ ଆସେ କେତେ ? ନିଜେ ରସରେ ବୁଡ଼ିବ, ତାହିଁ ସଙ୍ଗେ ସଙ୍ଗେ ଜାତିଭାଇମାନଙ୍କୁ ଭସେଇବ, ସାହିତ୍ୟ ସାଧକ କମ୍ବା କବି ଶିଳ୍ପୀର ଚରମ ଲକ୍ଷ୍ୟ ସେହି ଦିଗରେ । ଶ୍ରୀରାମକୃଷ୍ଣ ପରମହଂସ ଥରେ ସ୍ୱାମୀ ବିବେକାନନ୍ଦଙ୍କୁ କହିଥିଲେ, "ସୋଽହଂ ମାନେ କ'ଣ ଏକେଲା ମୁଁ ? ସୋଽହଂ ମାନେ ଆମେ ସମସ୍ତେ । ମୋ ଛଡ଼ା ସକଳ ନାହିଁ । ସକଳ ଛଡ଼ା ମୁଁ ନାହିଁ, ତୁ ନିଜେ ରାଜଭୋଗ ଖାଇବୁ ଆଉ ତୋର ବଞ୍ଚିତ, ପୀଡ଼ିତ, କ୍ଷୁଧିତ ଜନମାନଙ୍କୁ ତା'ର ଆସ୍ୱାଦ ଦେଇପାରିବୁ ନି ? ପ୍ରହ୍ଲାଦ କହିଥିଲେ, ହେ ଅଚ୍ୟୁତ, ମୁଁ ଏକା ମୁକ୍ତ ହେବାକୁ ଚାହେଁ ନାହିଁ । ମୋର ସାଙ୍ଗୀ ଏହି ଅସୁରବାଳକମାନେ ଅତ୍ୟନ୍ତ ଦୀନ, ଅସମର୍ଥ । ଏମାନଙ୍କୁ ଛାଡ଼ି ମୁଁ କୁଆଡ଼େ ଯିବି ? ତେଣୁ ମୋ ସହିତ ଏମାନଙ୍କୁ ମୁକ୍ତ କରନ୍ତୁ ।" ଏକକୁ ନେଇ ଅନେକ, ଅନେକକୁ ନେଇ ଏକ : —ଗୋପବନ୍ଧୁଙ୍କର 'ସ୍ୱର୍ଗୀୟ ସୁଷମା' ଠିକ୍ ସେହିପରି ଅନ୍ତର୍ନିହିତ ଅଛି 'ଧର୍ମପଦ'ର ଗୋଟିଏ ପଦରେ :

ଏକର ବିନାଶେ ଅନେକ ପ୍ରକାଶେ
ସୃଷ୍ଟିର ଏ ନିତ୍ୟବିଧି
ଏକର ଯା କ୍ଷୟ ଅନେକ ଉଦୟ
ଅନେକ ଏକର ସିଦ୍ଧି ।

ପରମପୁରୁଷ ପରମହଂସଙ୍କର ଏ ମୃଦୁମନ୍ଦ ଭର୍ତ୍ସନାବାଣୀ ଶୁଣି ବିବେକାନନ୍ଦ ତାଙ୍କୁ ପଚାରିଥିଲେ, "ମୋତେ କି କାମ କରିବାକୁ ହେବ ?"

କାମ କରିବାକୁ ହେବ—ଅନେକ, ଅନେକ କାମ ।
—"ପାରି ପାରିବି ତ ?
—ଅଲବତ ପାରିବୁ !
—କି କାର୍ଯ୍ୟ ?
—ଲୋକଶିକ୍ଷା, ଲୋକଶିକ୍ଷା ।"

ରାମକୃଷ୍ଣଙ୍କ ସ୍ୱର ଗମ୍ଭୀର । ଚକ୍ଷୁ ଦୀପ୍ତିମନ୍ତ । ଓଷ୍ଠାଧରରେ ବେପଥୁର ଈଷତ୍ ଇଙ୍ଗିତ । ଦକ୍ଷିଣ ହସ୍ତ ମୁଷ୍ଟିବଦ୍ଧ । ଦୃଷ୍ଟି ସୁଦୂରଭେଦୀ ! ମୁଖରୁ ଅମୃତ ବାଣୀ ନିଃସୃତ ହେଲା, 'ହଁ, ମନୁଷ୍ୟକୁ ଶିଖାଇବାକୁ ହେବ, ହେ ମନୁଷ୍ୟ, ତୁମେ

କ୍ଷୁଦ୍ର ନୁହଁ, ଅଳ୍ପ ନୁହଁ, ହ୍ରସ୍ୱ ନୁହଁ, ତୁମେ ନିରତିଶୟ, ତୁମେ ଅପରିମେୟ, ତୁମେ ଅନ୍ତ ନୁହଁ, ତୁମେ ଅମୃତ, ତୁମେ ଅନନ୍ତ ଶକ୍ତିର ଆଧାର, ତୁମେ ଦ୍ୱିବାହୁ ହୋଇ ମହାବାହୁ । ତୁମେ କେବଳ ମାତ୍ର ଅନ୍ନାଧୀନ ନୁହଁ, ତୁମେ ପୁଣି ପରମାନ୍ନଭୋକ୍ତା ।

( ଗୋପବନ୍ଧୁ କୌଣସି ମନୁଷ୍ୟଙ୍କୁ କ୍ଷୁଦ୍ର କିମ୍ବା ଅଳ୍ପ ବୋଲି ମନେ କରୁ ନ ଥିଲେ । )

ଗୋପବନ୍ଧୁଙ୍କ 'ସ୍ୱର୍ଗୀୟ ସୁଷମା'ର ମୌଳିକ ସତ୍ୟ ଅନ୍ନ ସହିତ ପରମାନ୍ନ-ଭୋଜନର ସଂଯୋଗରେ ନିହିତ । ଭଗବଦ୍‌ଗୀତାର 'ସର୍ବଭୂତହିତେ ରତାଃ'ର ଶାଶ୍ୱତ ବାଣୀ ଏଥିରେ ପ୍ରତିଫଳିତ । ଏହି ପରୋପକାରର ସ୍ୱପ୍ନ ଓ କଳ୍ପନାରେ ସେ ନିରବଧି ବିହ୍ୱଳ ଥିଲେ । ସ୍ୱପ୍ନକୁ କର୍ମରେ ପରିଣତ କରିବା ନିମନ୍ତେ, ତାଙ୍କର ନିରଳସ ସାଧନାର ବିରାମ ନ ଥିଲା । ତେଣୁ ମହାତ୍ମାଗାନ୍ଧିଙ୍କ ଶିଳ୍ପାଦର୍ଶ ଅନୁଯାୟୀ ସେ ଜଣେ ମହତ୍ ଶିଳ୍ପୀ 'Supreme artist' ।

ଗାନ୍ଧିଜୀଙ୍କୁ ଥରେ କେହି ଜଣେ ପ୍ରଶ୍ନ ପଚାରିଥିଲେ—ଆପଣ ତ ଜଣେ କର୍ମବୀର ସନ୍ନ୍ୟାସୀ । ଆପଣ କୁଆଡ଼େ ଆର୍ଟକୁ ମୋଟେ ପସନ୍ଦ କରନ୍ତିନାହିଁ ? ମହାତ୍ମାଜୀ ଉତ୍ତରରେ କହିଥିଲେ, "ମୁଁ ତ ମୋ ଜାଣିବାରେ ସର୍ବଶ୍ରେଷ୍ଠ ଆର୍ଟିଷ୍ଟ । ତୁମ୍ଭେମାନେ ଆର୍ଟର କି ଅର୍ଥ କର, ମୁଁ ଜାଣେ ନା । ମୁଁ ଜାଣେ ଆର୍ଟ ପରିପୂର୍ଣ୍ଣ ସୁଷମା, ବିରୁଦ୍ଧତା ମଧ୍ୟରେ ସାମଞ୍ଜସ୍ୟର ପ୍ରତିଷ୍ଠା, ସଙ୍ଗ କିମ୍ବା ଭେଦର ହୀନତାକୁ ପୂର୍ଣ୍ଣର ମହିମାରେ ଭରିଦେବା । ଯାହାକୁ ତୁମ୍ଭେମାନେ ସନ୍ନ୍ୟାସୀ ବୋଲି କହ, ସେମାନଙ୍କର କଥା ଟିକିଏ ଚିନ୍ତାକର ଦେଖି । ସକଳ ଖର୍ବତା, ସକଳ ସାମଞ୍ଜସ୍ୟକୁ ଯେଉଁମାନେ ଐକ୍ୟ ମଧ୍ୟରେ ପ୍ରତିଷ୍ଠାକରି ସମଗ୍ର ଜୀବନକୁ 'ସତ୍ୟ ଶିବ ସୁନ୍ଦର'ର ମୂର୍ତ୍ତିମତୀ ବାଣୀରୂପେ ଗଢ଼ି ତୋଳନ୍ତି, ମୋର ଜୀବନ ତ ସେହି ଶ୍ରେଷ୍ଠ ଆର୍ଟର ବାଣୀ ।"

ଗୋପବନ୍ଧୁ ତ ଆମରଣ ସନ୍ନ୍ୟାସ ଓ ତ୍ୟାଗର ଶାଣିତ ମନ୍ତ୍ର ଗ୍ରହଣ କରିଥିଲେ । ଆତ୍ମନିବେଦନ ଓ ଆତ୍ମବିସର୍ଜନର ବ୍ରତତ ତାଙ୍କ ଜୀବନର ମହା-ଦୀକ୍ଷା । ଏହି ମହାଦୀକ୍ଷାର ଉଦ୍‌ବୋଧର ସ୍ପନ୍ଦନ ଓଡ଼ିଆ ଜାତିର ଶିରାପ୍ରଶିରାରେ ପ୍ରବାହିତ କରିଦେବା ନିମନ୍ତେ ସେ ୧୯୧୯ ମସିହାର ଉତ୍କଳ-ସମ୍ମିଳନୀର ସଭାପତି ଭାଷଣରେ ଉଦାତ୍ତ କଣ୍ଠରେ କହିଥିଲେ, "କେତେ ସାଧୁସନ୍ନ୍ୟାସୀଙ୍କୁ ଏ ପୁଣ୍ୟଭୂମି ଯୁଗେଯୁଗେ ଆକର୍ଷଣ କରିଅଛି । ବର୍ତ୍ତମାନ ଏହାର ସନ୍ତାନମାନଙ୍କର ସନ୍ନ୍ୟାସୀ ହେବାର ସମୟ ଆସିଅଛି, ପ୍ରୟୋଜନ ହୋଇଅଛି । ସନ୍ନ୍ୟାସୀର ତପସ୍ୟା ଏବଂ ସାଧନା ବିନା ଜଗତରେ କେବେ କୌଣସି ଗୁରୁକାର୍ଯ୍ୟ ସାଧିତ ହୋଇନାହିଁ ।

ସନ୍ନ୍ୟାସୀର ସାଧନାରେ ହିଁ ଆତ୍ମମାନଙ୍କର ଜାତିର ମୁକ୍ତି ।" ଆଉ ଗୋପବନ୍ଧୁଙ୍କ ବାଣୀ ଯେ ସତ୍ୟ ଶିବ ସୁନ୍ଦରର ମହାପ୍ରସୀ ବାଣୀ—ଆଜି ଓଡ଼ିଶାର ପ୍ରତିଷ୍ଠିତ ସାହିତ୍ୟିକମାନେ ସେ କଥା ସ୍ୱୀକାର କଲେଣି । ଯେଉଁମାନେ ଦିନେ ଯୌବନର ଉଦ୍ଦୀପନାରେ ଗୋପବନ୍ଧୁଙ୍କ ଜନସେବାର ଆକୁଳ ନିବେଦନକୁ ବିଦ୍ରୂପ କରିଥିଲେ, ଏବେ ସେମାନଙ୍କ ମଧ୍ୟରୁ କେହି କେହି କହିଲେଣି, 'ବନ୍ଦୀର ଆତ୍ମକଥା' ଓଡ଼ିଆ ଜାତିର ବାଇବଲ ସ୍ୱରୂପ ଏବଂ ଏହା ଆମ ଜାତୀୟ ଜୀବନର ପଥପ୍ରଦର୍ଶକରୂପେ ସବୋଚ୍ଚ ଆଲୋକସ୍ତମ୍ଭ ହୋଇ ରହିଛି ।

ମହାତ୍ମାଜୀ ଥରେ ଏହି ଆର୍ଟର ସ୍ୱରୂପ ନିର୍ଣ୍ଣୟ ପ୍ରସଙ୍ଗରେ କହିଥିଲେ, 'But I know that many call themselves artists, and are recognised as such, and yet in their works there is absolutely no trace of the soul's upward urge and unrest';—କିନ୍ତୁ ମୁଁ ଜାଣେ ଅନେକ ନିଜକୁ ଆର୍ଟିଷ୍ଟ ବୋଲି କହୁଥାନ୍ତି ; ସେହିପରି ସ୍ୱୀକୃତି ମଧ୍ୟ ସେମାନେ ଲାଭକରିଥାନ୍ତି, ଅଥଚ ସେମାନଙ୍କ ଶିଳ୍ପକୃତି ମଧ୍ୟରେ ଆତ୍ମାର ଊର୍ଦ୍ଧ୍ୱ ସ୍ପନ୍ଦନ ଅଥବା ମହତ୍ତ୍ୱ ନିମନ୍ତେ ଅସ୍ଥିରତାର ଆଭାସ ମାତ୍ର ନାହିଁ; କିନ୍ତୁ ଗୋପ ସାହିତ୍ୟରେ ଏ 'ମହତ୍ତ୍ୱ' ଓ 'ଅସ୍ଥିରତା'ର ଆଭାସର ଅଭାବ ନାହିଁ । ବରଂ ଏହି 'ମହତ୍ତ୍ୱ' ଓ 'ଅସ୍ଥିରତା'ର ବାଣୀ ହିଁ ତାଙ୍କର ଜୀବନଦର୍ଶନ । ବନର ବେଦାନ୍ତକୁ ସେ ଘରେ ଘରେ ଆଣି ପହଞ୍ଚାଇ ଦେଇ କ୍ଷୁଦ୍ର ପ୍ରାଣରେ ଭୂମାର ବ୍ୟାକୁଳତା ଉଦ୍ଦୀପିତ କରିବାକୁ ନାନା ଦିଗରେ ଚେଷ୍ଟା କରିଅଛନ୍ତି । 'ଶୃଣ୍ୱନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ'ର ପ୍ରତିଧ୍ୱନି ତୋଳି ପ୍ରାଣର ଅସ୍ଥିରତାରେ ଗାଇ-ଅଛନ୍ତି—

"ସମସ୍ତ ଜୀବନ କର ଏକ ଶିବରାତ୍ରି
ଅନ୍ଧାରେ ନ ହୁଡ଼ ପଥ ହେ ସ୍ୱରଗ ଯାତ୍ରୀ ।"

ବିନ୍ଦୁ ମଧ୍ୟରେ ସେ ସିନ୍ଧୁର ଅସୀମ ବ୍ୟାପ୍ତି ଦେଖିଅଛନ୍ତି । ଶିଶିରକଣା-ମଧ୍ୟରେ ବିରାଟ ଆକାଶର ପ୍ରତିଛବି ଦେଖିବାକୁ ପାଇଅଛନ୍ତି ଓ ଦେଖାଇ ଅଛନ୍ତି । ବିଲାତରୁ ପ୍ରତ୍ୟାଗତ ଭୁବନାନନ୍ଦ ଦାସଙ୍କୁ ସମ୍ବର୍ଦ୍ଧନା ଜଣାଇବାକୁ ଯାଇ 'ସତ୍ୟବାଦୀ'ର 'ଆଲୋଚନା'ରେ ସେ ଲେଖିଥିଲେ, 'ଉତ୍କଳ ସାମ୍ୟ ମୈତ୍ରୀ, ଉଦାରତାର ପ୍ରଶସ୍ତ କ୍ଷେତ୍ର । ନିଷ୍ପେଷଣ ଏହାର ମାତୃ ନୁହେଁ, ଆଗ୍ରହ ଏବଂ ଆଲିଙ୍ଗନ ଏହାର ପ୍ରକୃତି !" କାହିଁ ଭୁବନାନନ୍ଦ ଦାସ—ଜଣେ ବିଲାତଫେରନ୍ତା ସାଧାରଣ ଶିକ୍ଷିତ ଯୁବକ, କାହିଁ ଉତ୍କଳର ସାମ୍ୟ ଓ ମୈତ୍ରୀ । 'ମାତୃଭାଷା ସାହାଯ୍ୟରେ

ଶିକ୍ଷାଦାନ' ଶୀର୍ଷକ ପ୍ରବନ୍ଧରେ ଥରେ ସେ 'ସତ୍ୟବାଦୀ'ରେ ଲେଖିଥିଲେ, 'ସାହିତ୍ୟ ଜାତି ସମକ୍ଷରେ ଉନ୍ନତ ଆଦର୍ଶ ରଖେ ଏବଂ ସେହି ଆଦର୍ଶରେ ଜାତୀୟ ଚରିତ୍ର, ଜାତୀୟ ଆକାଂକ୍ଷା ପ୍ରଭାବିତ ହୋଇ ତାହା ପୁଣି ସାହିତ୍ୟରେ ପ୍ରତିବିମ୍ବିତ ହୁଏ। ଜଗତ କ୍ରମେ ଉନ୍ନତ ମାର୍ଗରେ ଅଗ୍ରସର ହେଉଅଛି। ନୂତନ ଚିନ୍ତା, ନୂତନ ଭାବ ଓ ନୂତନ କଳ୍ପନା ପ୍ରତିଦିନ ପ୍ରକାଶ ପାଉଅଛି। ଜାତୀୟ ହୃଦୟକୁ ଉଜ୍ଜୀବିତ, ବଳିଷ୍ଠ, ଏବଂ ବର୍ଦ୍ଧିଷ୍ଣୁ ରଖିବାଲାଗି ସେ ସବୁକୁ ଜାତୀୟ ସାହିତ୍ୟରେ ଅନ୍ତର୍ଭୁକ୍ତ କରି ଜାତିର ରକ୍ତମାଂସରେ ମିଶାଇବାକୁ ହେବ। × × × ସମଗ୍ର ଜାତିର ଚିନ୍ତାରେ, କାର୍ଯ୍ୟରେ ପ୍ରାଣରେ ନୂତନ ଶକ୍ତି ସଞ୍ଚାର କରାଇବାକୁ ହେବ। ଏଥିଲାଗି ବିରାଟ ବଳିଷ୍ଠ ଜାତୀୟ ସାହିତ୍ୟ ଗଠନ ସର୍ବପ୍ରଥମେ ଆବଶ୍ୟକ।"

ଗୋପବନ୍ଧୁଙ୍କ ସାହିତ୍ୟ-ଦର୍ଶନର ଏହି ସୂତ୍ର ଧରି ଆମକୁ ଉପସ୍ଥିତ କାର୍ଯ୍ୟରେ ଅଗ୍ରସର ହେବାକୁ ହେବ।

---

## ତୃତୀୟ ପରିଚ୍ଛେଦ

### ଗୋପବନ୍ଧୁ ଓ ରାଧାନାଥ

ଗୋପବନ୍ଧୁ ଯେପରି ଐତିହ୍ୟବାଦୀ, ପରମ୍ପରାର ପୃଷ୍ଠପୋଷକ ଓ ବାହକ, ସେହିପରି ପ୍ରଗତିଶୀଳ ଓ ଆଧୁନିକ ଧର୍ମୀ । 'ନବ ତେଜେ ପୁଣି ବିକାଶୁ ପ୍ରତିଭା'— ଏହି ନୀତିର ସେ ବିଶ୍ୱାସୀ । ପଛକୁ ଚାହିଁ ଆଗେଇ ଚାଲ—ଏହା ହିଁ ତାଙ୍କର ସବୁ କ୍ଷେତ୍ରରେ ଉଦ୍‌ବୋଧନ । ଉପେନ୍ଦ୍ରଭଞ୍ଜଙ୍କ ପ୍ରତି ତାଙ୍କର ଯେତିକି ଆଦର ଓ ସମ୍ମାନ, ପଣ୍ଡିତ ହରିହର ଦାସ, ଜ୍ୟୋତିଷଶାସ୍ତ୍ରବିଶାରଦ ସାମନ୍ତ ଚନ୍ଦ୍ରଶେଖର ଏବଂ କବିବର ରାଧାନାଥ, ମଧୁସୂଦନଙ୍କ ପ୍ରତି ସେହିପରି ଅପରିମେୟ ସମ୍ମାନ ଓ ସଂଭ୍ରମବୋଧ, ଉପେନ୍ଦ୍ରଭଞ୍ଜଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣକରି ସେ ଯୌବନରେ ଲେଖିଥିଲେ ।

> 'ଗାଏ ତୁମ୍ଭ ଗୀତ ସଭାରେ ପଣ୍ଡିତ
> ପଥେ ପାନ୍ଥ ହୃଷ୍ଟମନା,
> ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
> ନୃତ୍ୟରଙ୍ଗେ ବାରାଙ୍ଗନା ।'

ଏହି ପଦଟି ଏପରି ବାସ୍ତବ ଓ ମର୍ମସ୍ପର୍ଶୀ ହୋଇଛି ଯେ, ଏବେ ଭଞ୍ଜ-ସାହିତ୍ୟରେ ଯେ କୌଣସି ସମାଲୋଚକ ତାଙ୍କ ମତର ଦୃଢ଼ତା ପ୍ରତିପାଦନ କରିବାକୁ ଏ ପଦଟି ନିର୍ବିଚାରଭାବରେ ଉଦ୍ଧାର କରିଥାନ୍ତି । ରାଧାନାଥଙ୍କ ପ୍ରତି ପରବର୍ତ୍ତୀ-କାଳରେ ତାଙ୍କର କମ୍ ସମ୍ମାନ ନ ଥିଲା; କିନ୍ତୁ ପୁରୀଜିଲା ସ୍କୁଲର ଚତୁର୍ଥ ଶ୍ରେଣୀର ଛାତ୍ର ଥିଲାବେଳେ ପ୍ରାଚୀନ ସାହିତ୍ୟ ପ୍ରତି ଅତ୍ୟଧିକ ଅନୁରାଗ ଫଳରେ କୈଶୋରର ଚାପଲ୍ୟରେ ପ୍ରଣୋଦିତ ହୋଇ ସେ ହୁଏତ ରାଧାନାଥଙ୍କୁ ବ୍ୟଙ୍ଗ ବିଦ୍ରୂପ କରି କ'ଣ ଲେଖି ପକାଇଥିଲେ; କିନ୍ତୁ ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ସେ ସେହି କବିଙ୍କର ପ୍ରକୃତି ପୂଜାକୁ ଯଥେଷ୍ଟ ସମାଦର ଦେଖାଇବାକୁ ଯାଇ ଲେଖିଥିଲେ—

> "ଦେବୀ ବୀଣାପାଣି ଶାଶ୍ୱତ ସେବକ
> କବି ରାଧାନାଥ ସୁଷମା ଗ୍ରାହକ

× × ×

ସୁଦକ୍ଷ ବାନ୍ଧଣି ରଚି ଯେଉଁ ହାର
ଅର୍ପିଲେ ଉତ୍କଳ ଭାରତୀ ଗଳାର
ଚିରଦିନ ତାହା ରାଜିବ ରୁଚିର
ତା ଦେଖି ଭାବୁକେ ଲୋଡ଼ିବେ ତୋ ତୀର ।"

'ଅବକାଶ ଚିନ୍ତା'ର 'ରେଳ ଉପରେ ଚିଲିକା ଦର୍ଶନ' କବିତାରେ ସୁଷମା ଗ୍ରାହକ ରାଧାନାଥଙ୍କ ପ୍ରତି ଏହି ଯେଉଁ ସମ୍ମାନ ପ୍ରଦର୍ଶନ, ସେଥିରୁ ଜଣାଯାଏ, ସେ ରାଧାନାଥଙ୍କ ପ୍ରତି ବିମୁଖ ନ ଥିଲେ; ବରଂ କୁହାଯାଇପାରେ, 'ରେଳ ଉପରେ ଚିଲିକା ଦର୍ଶନ' କବିତାରେ ସ୍ଥଳ ବିଶେଷରେ ରାଧାନାଥଙ୍କ 'ଚିଲିକା'ର ଭାବ ଓ ଭାଷାର ପ୍ରଭାବ ସ୍ପଷ୍ଟ । ଚିଲିକାର ସୌନ୍ଦର୍ଯ୍ୟ ଉପଭୋଗ କରିବା ନିମନ୍ତେ ରାଧାନାଥଙ୍କ 'ଚିଲିକା' କାବ୍ୟ ଯେପରି ତାଙ୍କୁ ଅନ୍ତଃପ୍ରେରଣା ଦେଇଅଛି ଏବଂ ରାଧାନାଥଙ୍କ ସୌନ୍ଦର୍ଯ୍ୟ-ଦୃଷ୍ଟିରେ ସତେ ଯେପରି ସେ ଚିଲିକାର ସୁଷମା ଦେଖିଅଛନ୍ତି । ରାଧାନାଥଙ୍କପରି ସେ ମଧ କହିଅଛନ୍ତି 'ତା ଦେଖି ଭାବୁକେ ଲୋଡ଼ିବେ ତୋ ତୀର' । ରାଧାନାଥଙ୍କ ପରି ଚିଲିକାକୁ ଦେଖୁଦେଖୁ ଓଡ଼ିଶାର ଲୁପ୍ତ ଐତିହାସିକ ଗୌରବ ମଧ ତାଙ୍କ ପ୍ରାଣକୁ କ୍ଷୋଭାକୁଳ କରିଅଛି; କିନ୍ତୁ ଦିନେ ଏହି ରାଧାନାଥଙ୍କୁ ବ୍ୟଙ୍ଗକରି ପୁରୀଜିଲ୍ଲା ସ୍କୁଲର ଚତୁର୍ଥଶ୍ରେଣୀ ଛାତ୍ର ଥିବାବେଳେ ୧୮୯୪ ମସିହାରେ ସେ ଯେଉଁ ପ୍ରବନ୍ଧ କିମ୍ବା କବିତାଟି 'ଇନ୍ଦ୍ରଧନୁ'ରେ ଲେଖିଥିଲେ, ତାହାର ଗୋଟିଏ ସାମାନ୍ୟ ଅଂଶ ଏବେ ଜନଶ୍ରୁତିରେ ଅଛି । ତାହା ହେଉଛି—

'ଧଡ଼ିଆ ପଣ୍ଡିତଂମନ୍ୟ,
ବାଲ୍‌ଟି ସାହିରେ ଶୃଗାଳ କେଶରୀ ପରି ହେଉଥାଏ ଗଣ୍ୟ ?'

ଏ ଲେଖାର ଅବଶିଷ୍ଟ ଅଂଶତକ ବର୍ତ୍ତମାନ ଗବେଷକମାନେ ଖୋଜି ନ ପାଇ ନିରାଶ ହେଉଛନ୍ତି । ସମଗ୍ର ଲେଖାଟି ମିଳିଥିଲେ, ଏହା ଉପରେ ଅଧିକ ଆଲୋକପାତ କରାଯାଇପାରିଥାନ୍ତା । ସେ ଯାହାହେଉ ବର୍ତ୍ତମାନ ବିଚାର କରିବାର କଥା, କିଶୋର ଗୋପବନ୍ଧୁ ଏହି ଅପରିପକ୍ୱ ବୟସରେ ଖ୍ୟାତନାମା କବି ଏବଂ ଓଡ଼ିଶାର ସ୍କୁଲ ସମୂହର ଇନ୍‌ସପେକ୍‌ଟର ରାଧାନାଥ ରାୟଙ୍କ ବିରୁଦ୍ଧରେ ଏପରି ଲେଖା କାହିଁକି ଲେଖିଥିଲେ ? ତାଙ୍କର ସହକର୍ମୀ ପଣ୍ଡିତ ଲିଙ୍ଗରାଜ ମିଶ୍ର 'ଜନନାୟକ ଗ୍ରନ୍ଥମାଳା'ର 'ପଣ୍ଡିତ ଗୋପବନ୍ଧୁ' ଶୀର୍ଷକ କ୍ଷୁଦ୍ର ପୁସ୍ତକରେ ଲେଖିଅଛନ୍ତି, "ସେ 'ଇନ୍ଦ୍ରଧନୁ'ରେ ନବୀନ ଲେଖକମାନଙ୍କୁ କଟୁ ସମାଲୋଚନା କରି ଗୋଟିଏ ବ୍ୟଙ୍ଗ କବିତା ନିଜର ନାମ ନ ଦେଇ ପ୍ରକାଶ କରିଥିଲେ । ସେଥିରେ ଅନ୍ୟ କଥା ଭିତରେ ରାଧାନାଥ ରାୟଙ୍କୁ ଲକ୍ଷ୍ୟକରି ଲେଖାଥିଲା 'ଧଡ଼ିଆ ପଣ୍ଡିତଂ ମନ୍ୟ' ଇତ୍ୟାଦି । ଏ ଲେଖା ସେତେବେଳେ ଓଡ଼ିଶାର ବିଦ୍ୱାନ୍‌ସମାଜରେ ଏକ ଚାଞ୍ଚଲ୍ୟ ଖେଳାଇ ଦେଇଥିଲା ।"

ପ୍ରଥମେ ପ୍ରଶ୍ନ ଉଠେ, ଏହି ଅନାମିକା କବିତା ଉପରେ ଏତେ ଗୁରୁତ୍ୱ ଆରୋପ କରାଗଲା କାହିଁକି ? ବେନାମୀ ଚିଠିପତ୍ରକୁ କୌଣସି ବିଚାରକୁ ନ ଆଣିବା ନିମନ୍ତେ ଏବେ ନିକଟରେ କେନ୍ଦ୍ର ସରକାରରୁ ନିର୍ଦ୍ଦେଶନାମା ଆସିଛି । ଗୋପବନ୍ଧୁ ସେ କବିତା ଲେଖିଥିଲେ ବୋଲି ତାର ଅକାଟ୍ୟ ପ୍ରମାଣ କ'ଣ ? 'ଧତ୍ତୁଆ ଦନ୍ତ୍ରିତଂ ମନ୍ୟେ' ପ୍ରଭୃତି ଶବ୍ଦ-ବିନ୍ୟାସ ଜଣେ ଚତୁର୍ଥ ଶ୍ରେଣୀର ଇଂରାଜୀ ସ୍କୁଲର ପାଠ କରୁଥିବା ଛାତ୍ରଠାରୁ ଆଶା କରିବା ସାଧାରଣତଃ ଅସମ୍ଭବ । ତା ଯଦି ଗୋଟିଏ ଲେଖନୀପ୍ରସୂତ ହୋଇଥାଏ, ତେବେ ତାଙ୍କର ଭବିଷ୍ୟତରେ ଜଣେ ଶକ୍ତିଶାଳୀ ଲେଖକ ହେବାର ବିପୁଳ ସମ୍ଭାବନା ଥିଲା । ଜୀବନରେ ନାନା ଜାତୀୟ ସମସ୍ୟାର ସମାଧାନରେ ବ୍ୟାପୃତ ରହିବାରୁ ହତଭାଗ୍ୟ ଓଡ଼ିଆବାଣୀ ଏ ସମ୍ଭାବନାର ସାଫଲ୍ୟ ଦେଖି ପାରିଲେନାହିଁ । ଯଦି ପ୍ରମାଣରେ ସାବ୍ୟସ୍ତ ହେଲା, ଚତୁର୍ଥ ଶ୍ରେଣୀର ଛାତ୍ର ଗୋପବନ୍ଧୁ ନାମ ନ ଦେଇ 'ଇନ୍ଦ୍ରଧନୁ'ରେ ଏ କବିତା ଲେଖିଅଛି, ତେବେ ଯେଉଁ ରାଧାନାଥଙ୍କୁ ପୋପନିନ୍ଦୁ ପରେ 'ସୁଷମା ଗ୍ରାହକ' ବିଶେଷଣରେ ମଣ୍ଡିତ କରିଅଛନ୍ତି, ସେହି ଗୁଣଗ୍ରାହକତାରୂପକ 'ସୁଷମା'ରେ ସେ କିଶୋର ଗୋପବନ୍ଧୁଙ୍କୁ କ୍ଷମା ନ କରି ତାଙ୍କର ପ୍ରତିଭାକୁ ଅଭିନନ୍ଦନ ନ କରି, ତାଙ୍କ ପ୍ରତି ଏ ନିଷ୍ଠୁର ଦଣ୍ଡାଦେଶ କାହିଁକି କଲେ ?

ସେତେବେଳେ 'ଇନ୍ଦ୍ରଧନୁ' ଓ 'ବିଜୁଳି' ମଧ୍ୟରେ ଘୋର ସଂଘର୍ଷ । ଏହାକୁ ସେତେବେଳେ କେହି କେହି 'ଦେବାସୁର' ଯୁଦ୍ଧ ଆଖ୍ୟା ଦେଇଥିଲେ । ସେତେବେଳର ଓଡ଼ିଶାର ପ୍ରାୟ ସମସ୍ତ ପ୍ରଧାନ ପ୍ରଧାନ ସମ୍ପାଦପତ୍ର ଦୁଇ ଦଳରେ ବିଭକ୍ତ ହୋଇ କେହି ଭଞ୍ଜଙ୍କର ପକ୍ଷ, କେହି ରାଧାନାଥଙ୍କ ପକ୍ଷ ସମର୍ଥନକରି ଲେଖାମାନ ପ୍ରକାଶ କରୁଥିଲେ । ଏକପକ୍ଷରେ 'ବିଜୁଳି', ଅନ୍ୟ ପକ୍ଷରେ 'ଇନ୍ଦ୍ରଧନୁ'ର ଲେଖକମାନେ ଯଥାକ୍ରମେ ରାଧାନାଥ ପ୍ରମୁଖ ନବୀନ ଲେଖକ ଏବଂ ଉପେନ୍ଦ୍ର ଭଞ୍ଜ ଓ ପୁରାତନ କବିମାନଙ୍କ ପକ୍ଷ ସମର୍ଥନ କରି 'ଦେବାସୁର' ଯୁଦ୍ଧକୁ ଅଣ୍ଟାଭିଡ଼ ବାହାରି ପଡ଼ୁଥିଲେ । ତା ୫ । ୨ । ୧୮୯୪ରେ ଶ୍ରୀ ଗ୍ର—'ଉତ୍କଳ ଦୀପିକାକୁ ଖଣ୍ଡିଏ ବେନାମି ଚିଠି ଲେଖିଥିଲେ । ଅନ୍ୟାନ୍ୟ ବିଷୟ ମଧ୍ୟରେ ସେଥିରେ ଲେଖାଥିଲା, "ତୃତୀୟ ଅଭିଯୋଗଟି (ଗୋପବନ୍ଧୁଙ୍କ କବିତା) ଅତି ଚମତ୍କାର ଓ ରହସ୍ୟଜନକରୂପେ ବିବୃତ ହୋଇଅଛି । ସମସ୍ତ ପ୍ରକାଶକଲେ ପ୍ରବନ୍ଧ ବଡ଼ ହେବ, ଏହି ଭୟରେ ନ ଲେଖି ସାରାଂଶ ବ୍ୟକ୍ତ କଲୁଁ ।"

ବାବୁ ମହୋଦୟ (ଇନ୍‌ସପେକ୍ଟର ରାଧାନାଥ ରାୟ) ଏଠାରେ ପ୍ରବିଷ୍ଟ ହୋଇ କନୈକ ତୋଷାମଦକାରୀ ଶିକ୍ଷକଙ୍କୁ ଇନ୍ଦ୍ରଧନୁ ବିଜୁଳିର ଚର୍ଚ୍ଚା କେଉଁ କେଉଁମାନେ କରନ୍ତି, ଏ ସମ୍ବନ୍ଧରେ କେତେକ ପ୍ରଶ୍ନ କରିଥିଲେ । ଉତ୍ତରରେ କୌଣସି

ଲୋକ ବେନାମୀ ଚିଠିଦ୍ୱାରା ଜଣାଇ ଦେଲା ଯେ, ଗୋପବନ୍ଧୁ ଦାସ ଗୁରୁ ଆପଣଙ୍କ ବିରୁଦ୍ଧରେ ଇନ୍ଦ୍ରଧନୁରୁ ପ୍ରବନ୍ଧ ଲେଖିଅଛି ଓ ସ୍କୁଲର ସେକେଣ୍ଡ ମାଷ୍ଟ୍ର ତାହା ସଂଶୋଧନ କରି ଦେଇଅଛନ୍ତି । ଇନସ୍‌ପେକ୍ଟର ମହୋଦୟ ଉକ୍ତ ପତ୍ର ପ୍ରାପ୍ତହୋଇ ସ୍କୁଲ ପରିଦର୍ଶନ ସମୟରେ ହେଡ୍‌ମାଷ୍ଟରଙ୍କ ସହିତ ଉକ୍ତ ବିଷୟରେ ଅନୁସନ୍ଧାନରେ ପ୍ରବୃତ୍ତ ହେଲେ । ନାମୋଲ୍ଲିଖିତ (ଗୋପବନ୍ଧୁ) ବାଳକ ପଢୁଥିବା ଶ୍ରେଣୀରେ ଉପସ୍ଥିତ ହୋଇ ପରୀକ୍ଷା କରିବା ସମୟରେ ମଧ୍ୟେ ମଧ୍ୟେ ପ୍ରଶ୍ନ କରୁଥିଲେ, କିଏ କିଏ, ଏ ଶ୍ରେଣୀରେ ରଚନା କରିପାରନ୍ତି ? 'ଇନ୍ଦ୍ରଧନୁ' କିଏ କିଏ ପଢ଼ କି ନା ? ଏବଂ 'ଇନ୍ଦ୍ରଧନୁ'ରେ କିଏ ପ୍ରବନ୍ଧ ଲେଖେ କି ନା ? ଇତ୍ୟାଦି ପ୍ରଶ୍ନ ପଚାରି ଶେଷରେ ଗୋପବନ୍ଧୁଙ୍କୁ 'ଇନ୍ଦ୍ରଧନୁ'ରେ ପ୍ରବନ୍ଧ ଲେଖିଥିବାର ପଚାରିବାରୁ ସେ ଲେଖୁ ନ ଥିବାର କହିଲା । ତତ୍ପରେ କେତେକ ମାଷ୍ଟର ଓ ଶ୍ରେଣୀସ୍ଥ ବାଳକମାନଙ୍କୁ ପଚାରିବାରେ ସେମାନେ ଜାଣି ନ ଥିବାର ବ୍ୟକ୍ତକଲେ । ତତ୍ପର ଦିବସ ହେଡ୍‌ମାଷ୍ଟର ଉକ୍ତ ଗୋପବନ୍ଧୁର ଅନୁପସ୍ଥିତ କାଳରେ କେତେକ ବାଳକମାନଙ୍କଠାରୁ ସାକ୍ଷ୍ୟ ସାବ୍ୟସ୍ତ କରିଥିଲେ । ତତ୍ପର ଦିନ ସ୍କୁଲରେ ନୋଟିସ୍ ଦେଇ ଜଣାଇଦେଲେ ଯେ "ଗୋପବନ୍ଧୁ 'ଇନ୍ଦ୍ରଧନୁ'କୁ ପ୍ରବନ୍ଧ ଲେଖି ମନା କରୁଥିବାରୁ ମିଥ୍ୟା କହିବା ଦୋଷରେ ସାତ ଦିନର ବୃତ୍ତି ଜରିମାନା କରାଗଲା ଓ ଗତବର୍ଷ ପରୀକ୍ଷାର ପାରଦର୍ଶିତାନୁସାରେ ଯେଉଁ ପ୍ରାଇଜ ପାଇଥାନ୍ତା, ତାହା କର୍ତ୍ତନ କରାଗଲା ।"

ଏହି ନ୍ୟାୟ ବିଚାର ଉପରେ ପତ୍ର ଲେଖକ ନିଜର ମନ୍ତବ୍ୟ ପ୍ରକାଶକରି ପୁଣି ଲେଖିଅଛନ୍ତି, "ପାଠକେ ! କିପରି ନ୍ୟାୟ ବିଚାର ଦେଖିଲ ତ ? ଇନସ୍‌ପେକ୍ଟର ମହୋଦୟ ଶିକ୍ଷକମାନଙ୍କମଧ୍ୟରୁ କେତେକ ଲୋକଙ୍କୁ ପଚାରିଲେ ଯେ, ତୁମ୍ଭେମାନେ 'ଇନ୍ଦ୍ରଧନୁ' ଆଣ କି ନା ? 'ଇନ୍ଦ୍ରଧନୁ' ପଢ଼ାପଢ଼ି କର କି ନା ? ଇତ୍ୟାଦି । ଏ ପ୍ରଶ୍ନ ମାନଙ୍କରେ ପଢ଼ୁଥିବା, ନେଉଥିବା ଶିକ୍ଷକମାନେ ମଧ୍ୟ 'ଇନ୍ଦ୍ରଧନୁ' ସ୍ପର୍ଶ କରିବାରେ ମନାକଲେ । ହେଡ୍‌ମାଷ୍ଟର ମହୋଦୟ ସେମାନେ ମିଛ କହିଲେ ବୋଲି ତାଙ୍କର କିଛି ଦଣ୍ଡ ହୋଇଅଛି କି ? ନା ସେମାନେ ଶିକ୍ଷକଯାଙ୍ଗ ସାଉ । ପଠକେ ! ହେଡ୍‌ମାଷ୍ଟରଙ୍କର ଏ କାର୍ଯ୍ୟ କେତେଦୂର ସଙ୍ଗତ ହୋଇଅଛି । ଆପଣମାନେ ବିଚାର କରିବେ ।..............."

ଏଥିରୁ ଜଣାଯାଏ, ଗୋପବନ୍ଧୁଙ୍କ ବୃତ୍ତି କର୍ତ୍ତନଟି କେବଳ ସତ୍ୟ, ଅନ୍ୟ ସବୁ ବିଷୟ ଅପ୍ରମାଣିତ । ତେଣୁ ଅସତ୍ୟର ନାମାନ୍ତର ମାତ୍ର । ଗୋପବନ୍ଧୁଙ୍କ ପ୍ରବନ୍ଧରେ ନାମ ନାହିଁ । ହେଡ୍‌ମାଷ୍ଟର ବିଚାର କରିଛନ୍ତି ଗୋପବନ୍ଧୁଙ୍କ ଅନୁପସ୍ଥିତରେ । ଏ ବିଚାରବେଳେ ତାଙ୍କ ଆଖି ଆଗରେ ଭୂତପରି ଠିଆହୋଇ-ଥିଲା ଇନ୍‌ସପେକ୍ଟର ରାଧାନାଥଙ୍କର କଳ୍ପିତ ଦୁଇ ଲାଲଚକ୍ଷୁ । ତେଣୁ ଏ ପ୍ରବନ୍ଧ

ଗୋପବନ୍ଧୁ ନିଜେ ଲେଖିଥିଲେ, ଏ ବିଷୟରେ ଘୋର ସନ୍ଦେହ । ଏ ପୁଣି ପଦ୍ୟ ନୁହେଁ, ଗୋଟିଏ ପ୍ରବନ୍ଧ । ସେ ପ୍ରବନ୍ଧରେ ନବୀନ ଲେଖକମାନଙ୍କୁ ଆକ୍ଷେପ କରି ଆଉ ସବୁ କି କି ବିଷୟ ଲେଖାଥିଲା, ତାହା ଏପର୍ଯ୍ୟନ୍ତ ପ୍ରକାଶ ପାଇନାହିଁ । ତେଣୁ ରାଧାନାଥଙ୍କ ଇଙ୍ଗିତରେ ଜଣେ ବୁଦ୍ଧିମାନ୍ ଛାତ୍ରକୁ ଏପରି ମିଥ୍ୟାବାଦୀ ସାବ୍ୟସ୍ତକରି ଦଣ୍ଡନୀୟ କରିବା କେତେ ଦୂର ଯୁକ୍ତିସଂଗତ ତା ମନେ ହୁଏନାହିଁ । ଏହି ରହସ୍ୟାଚ୍ଛନ୍ନ ଘଟଣାକୁ ଆଶ୍ରୟକରି ଅନେକ ଦିନ ତଳେ ଜଣେ ଓଡ଼ିଆ ଅଧ୍ୟାପକ ପ୍ରାଚୀନ ପୋଥିପତ୍ରରେ ତାଙ୍କର ଗବେଷଣା-ପାଟବର ନିଦର୍ଶନ ଦର୍ଶାଇବାକୁ ଯାଇ ଲେଖିଥିଲେ, "ଏଇ ହେଉଛନ୍ତି ଆମ୍ଭମାନଙ୍କର ଉତ୍କଳମଣି ଗୋପବନ୍ଧୁ", ଅର୍ଥାତ୍ ଯେଉଁ ଗୋପବନ୍ଧୁ 'ସତ୍ୟମେବ ଜୟତେ' ଏହି ମନ୍ତ୍ର ବାରମ୍ବାର ତାଙ୍କ ଜୀବନରେ ଉଚ୍ଚାରଣ କରିଅଛନ୍ତି ଏବଂ ଦେଶବାସୀଙ୍କୁ ଏ ମନ୍ତ୍ରରେ ଦୀକ୍ଷିତ ହେବାକୁ କହି ଅଛନ୍ତି, ସେ ଛାତ୍ରାବସ୍ଥାରେ ମିଥ୍ୟାବାଦୀ ଥିଲେ ।" ଏଠାରେ ପଚରା-ଯାଇପାରେ, ରାଧାନାଥ ଇଚ୍ଛା କରିଥିଲେ, ତାଙ୍କର ଅପରିସୀମ ପ୍ରଭାବ ପକାଇ 'ଇନ୍ଦ୍ରଧନୁ'ରେ ପ୍ରକାଶିତ ଏ ପ୍ରବନ୍ଧର ଲେଖକଙ୍କର ନାମ ଜାଣି ପାରି-ଥାନ୍ତେ । ତା ସେ କଲେନାହିଁ କାହିଁକି ? ଯେଉଁ ଲୋକ ବେନାମୀ ଚିଠିଦ୍ୱାରା ଜଣାଇ-ଦେଲା, ଛାତ୍ର ଗୋପବନ୍ଧୁ ଦାସ ରାଧାନାଥଙ୍କ ବିରୁଦ୍ଧରେ 'ଇନ୍ଦ୍ରଧନୁ'ରେ ସେ ପ୍ରବନ୍ଧ ଲେଖିଅଛି, ସେ ବ୍ୟକ୍ତିର ଯଦି ସତ୍ସାହସ ଥିଲା, ସେ ଯଦି ଅଣଶିକ୍ଷକ, ତେବେ ସେ ନିଜ ନାମ ପ୍ରକାଶ କରି ଚିଠି ଲେଖିଲାନାହିଁ କାହିଁକି ? ସେ ତ ଜଣେ 'ବ୍ୟକ୍ତି', 'ଛାତ୍ର' ନୁହନ୍ତି, ତାଙ୍କ ନାମ ପ୍ରକାଶ ପାଇଥିଲେ, ଗୋପବନ୍ଧୁ ତାଙ୍କର କି କ୍ଷତି ବା କରି ପାରିଥାନ୍ତେ ? ସେତେବେଳେ ତ ଗୋପବନ୍ଧୁ ସାମାନ୍ୟ ଚତୁର୍ଥ ଶ୍ରେଣୀର ଜଣେ ଅନାମଧେୟ ଛାତ୍ର । ଏ 'ବ୍ୟକ୍ତି' ଯଦି ଜଣେ ଉପର ଶ୍ରେଣୀର ଛାତ୍ର ହୋଇଥାନ୍ତି, ତେବେ ସେ ଗୋପବନ୍ଧୁଙ୍କର କ୍ଷତିକରିବା ନିମନ୍ତେ କୌଣସି ଦୁର୍ବୃତ୍ତ ବ୍ୟକ୍ତିର କୁପ୍ରରୋଚନାରେ ଏ ବେନାମି ଚିଠି ଲେଖିଥିବ । କାରଣ 'ଇନ୍ଦ୍ରଧନୁ'ରେ ଏ ପ୍ରବନ୍ଧ ଗୋପବନ୍ଧୁ ଲେଖି ନ ଥିଲେ ଏ କଥା ପ୍ରମାଣିତ ହେଲେ ମଧ୍ୟ ସ୍ୱୀକାର କରିବାକୁ ହେବ ଯେ, ସେତେବେଳକୁ ସେ ତାଙ୍କ କବି-ପ୍ରତିଭା ଓ ସାହିତ୍ୟାନୁରାଗର ପରିଚୟ ଦେଇସାରିଥିଲେ, ବିଶେଷତଃ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ କିମ୍ବା ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରତି ସେତେବେଳେ ତାଙ୍କର ଅତ୍ୟନ୍ତ ଶ୍ରଦ୍ଧା ଥିଲା । ରକ୍ଷଣଶୀଳ ପରିବାରରେ ଜନ୍ମଗ୍ରହଣ କରିଥିବାରୁ ଆମ ଦେଶର ପ୍ରାଚୀନ ସଂସ୍କୃତି ପ୍ରତି ତାଙ୍କର ମମତା ଥିଲା । ପୁରୀଜିଲା ସ୍କୁଲରେ ପ୍ରବେଶକରିବା ପୂର୍ବରୁ ସେ ରୂପଦେଇପୁର ଭଣ୍ଡାରୀକୁଳର ସ୍କୁଲରେ ପଢ଼ିଲାବେଳେ 'ଭାର୍ଗବୀ ପ୍ରତି' ପ୍ରଭୃତି ଅନେକଗୁଡ଼ିଏ କବିତା ରଚନା କରିଥିଲେ । ଭାଗବତରୁ ପଦେ ଦି'ପଦ ଆଣି ନିଜର ପଦେ ଦି'ପଦ ସେଥିରେ ମିଶାଇ ଦେଇ ସେ ଅପୂର୍ବ ରଚନାନୈପୁଣ୍ୟର

ପରିଚୟ ଦେଇଥିଲେ । ତେଣୁ ସନ୍ଦେହ ହୁଏ, ଗୋପବନ୍ଧୁଙ୍କଠାରେ ଏହି ସାହିତ୍ୟା-
ନୁରାଗର ପରିଚୟ ପାଇ ସେ ବୟୋବୃଦ୍ଧିମୁଖୀ ଯୁଗରେ କିଶୋର ଗୋପବନ୍ଧୁଙ୍କଠାରେ
ବୈପ୍ଳବିକ ମନୋବୃତ୍ତିର ଆଶଙ୍କାକରି ତାଙ୍କ ବିରୁଦ୍ଧରେ ଏ ଦମନ-ନୀତି ରାଧାନାଥଙ୍କ
ଇଙ୍ଗିତରେ ପ୍ରୟୋଗ କରାଯାଇଥିଲା ।

ଗୋପବନ୍ଧୁଙ୍କର କୌଣସି କୌଣସି 'ସହକର୍ମୀ'ଙ୍କଠାରୁ ଶୁଣାଯାଏ, ସେ
ବାସ୍ତବରେ ସେହି ପ୍ରବନ୍ଧ ଲେଖିଥିଲେ ଏବଂ ରାଧାନାଥଙ୍କ ସମ୍ମୁଖରେ ସେ
ନିର୍ଭୀକଭାବରେ ସତ୍ୟ ପ୍ରକାଶ କରିବାକୁ କୁଣ୍ଠିତ ନ ଥିଲେ; କିନ୍ତୁ ତାଙ୍କର ଜଣେ
ଶୁଭାକାଙ୍କ୍ଷୀ ଶିକ୍ଷକ ସ୍ୱର୍ଗତ ଶ୍ରୀ ଦିବ୍ୟସିଂହ ମିଶ୍ର, ରାଧାନାଥ ଗୋପବନ୍ଧୁଙ୍କ ଅନିଷ୍ଟ
କରି ତାଙ୍କର ଭବିଷ୍ୟତ ଜୀବନକୁ ନଷ୍ଟ କରିପାରନ୍ତି, ଏହି ଆଶଙ୍କାରେ ସେ କଥା
ସ୍ୱୀକାର ନ କରିବାକୁ ତାଙ୍କୁ ପରାମର୍ଶ ଦେଇଥିଲେ । ହୁଏତ ସେହି ଶିକ୍ଷକଙ୍କ
ଆଦେଶ ଶିରୋଧାର୍ଯ୍ୟ କରି ଗୋପବନ୍ଧୁ 'ଇନ୍ଦ୍ରଧନୁ'ରେ ସେ ପ୍ରବନ୍ଧ ଲେଖିଛନ୍ତି
ବୋଲି ଅସ୍ୱୀକାର କରିଥିଲେ, କିନ୍ତୁ ଏହି 'ସହକର୍ମୀ' ସେତେବେଳେ ପୁରୀଜିଲା
ସ୍କୁଲର ଛାତ୍ର ନ ଥିଲେ । ଏ କେବଳ ତାଙ୍କର ଶୁଣାଶୁଣି କଥା । ଏହା ଉପରେ
ଗୁରୁତ୍ୱ ଆରୋପ କରିବା ଅସମୀଚୀନ । ଯୁକ୍ତିସ୍ଥଳରେ ଧରିଯାଉ, ଗୋପବନ୍ଧୁ ସେ
ପ୍ରବନ୍ଧ ଲେଖିଥିଲେ । ଯଦି ଲେଖିଥିଲେ, ତେବେ ପରେ 'ରେଳ ଉପରେ ଚିଲିକା-
ଦର୍ଶନ' କବିତାରେ ସେହି 'ଧଉଆ ପଣ୍ଡିତଂ ମନ୍ୟ' ରାଧାନାଥଙ୍କର ଭୂୟସୀ ପ୍ରଶଂସା
କଲେ କାହିଁକି ? ଏହାର ଉତ୍ତରରେ ଏତିକି ମାତ୍ର କୁହାଯାଇପାରେ,
ସେତେବେଳେ ସେ ରାଧାନାଥଙ୍କର ସବୁ କାବ୍ୟ କବିତା ପଢ଼ି ନ ଥିବେ, ପଢ଼ିଥିଲେ
ମଧ୍ୟ ବୁଝି ନ ଥିବେ । ସେତେବେଳେ ତାଙ୍କର କୈଶୋରାବସ୍ଥା । ପ୍ରାଚୀନ ଓ
ନବୀନର ସଂଘର୍ଷରେ ସେ ସେତେବେଳେ ନବୀନକୁ ସ୍ୱାଗତ କରିପାରି ନ ଥିଲେ ।
ପୁରାତନ ସଂସ୍କୃତି ପ୍ରତି ତାଙ୍କର ସେତେବେଳେ ପ୍ରବଳ ମମତା । ତେଣୁ ସେ ପ୍ରାଚୀନ
ସାହିତ୍ୟ ଓ ସଂସ୍କୃତିର ପରମ୍ପରାର ଅନୁବର୍ତ୍ତୀ ହୋଇ ନବୀନ ବିରୁଦ୍ଧରେ ନିଜର
ସ୍ୱର ଉତ୍ତୋଳନ କରିଥିବେ; କିନ୍ତୁ କଲେଜରେ ପଢ଼ିବାବେଳେ ରାଧାନାଥ-
ସାହିତ୍ୟରେ କବିବରଙ୍କର ପ୍ରକୃତି-ପ୍ରେମିକତା ଓ ଦେଶାତ୍ମବୋଧ ଦେଖି ତାଙ୍କୁ
ଅଭିନନ୍ଦନ ଜଣାଇବାପାଇଁ କୁଣ୍ଠିତ ହୋଇନାହାନ୍ତି । ସେଉଁ ପଣ୍ଡିତ ନୀଳକଣ୍ଠ
'କୋଣାର୍କେ' କାବ୍ୟରେ ଲେଖିଛନ୍ତି—

'କବିଙ୍କି ସୁମର ବିରାଗେ ମୁହଁ ଫେରାଅ ପଛେ ।'

ସେହି ନୀଳକଣ୍ଠ ଗୋପବନ୍ଧୁଙ୍କ ପ୍ରତିଷ୍ଠିତ Central Young
Associationରେ ରାଧାନାଥ ରାୟଙ୍କ ମୃତ୍ୟୁଶ୍ରାଦ୍ଧରେ (୧୯୦୮) 'ରାଧାନାଥ ଓ
ଉତ୍କଳ ସାହିତ୍ୟ' ଶୀର୍ଷକ ପ୍ରବନ୍ଧ ପାଠକରି ସେଥିରେ ଲେଖିଥିଲେ, 'ବର୍ତ୍ତମାନ

ରାଧାନାଥ ଉତ୍କଳ-ସାହିତ୍ୟ'ରେ ଏକାଙ୍ଗଚକ୍ରବର୍ତ୍ତୀ ।' ଅବସ୍ଥାଚକ୍ରରେ କବି ଓ ମନୀଷୀମାନଙ୍କ ଚିନ୍ତାଧାରାରେ ରୂପାନ୍ତର ଘଟେ । ତେଣୁ ଗୋପବନ୍ଧୁ ରାଧାନାଥଙ୍କ ଗୁଣର ସାମଗ୍ରିକ ପରିଚୟ ପାଇବା ପରେ ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ ।

ଏସବୁ ଅନୁମାନ ନିର୍ଭର । ଏ ରହସ୍ୟକୁ ସେହିପରି ରହସ୍ୟ-ଜଡ଼ିତ ଅବସ୍ଥାରେ ରଖି ଶେଷରେ ଏତିକି ମାତ୍ର କୁହାଯାଇପାରେ ଯେ, ଗୋପବନ୍ଧୁ 'ଇନ୍ଦ୍ରଧନୁ'ରେ ଏ ପ୍ରବନ୍ଧ ବା କବିତା ଲେଖନ୍ତୁ ବା ନ ଲେଖନ୍ତୁ, କିନ୍ତୁ ଇତିହାସ ଏ ବିଷୟରେ ଅଭ୍ରାନ୍ତ ସାକ୍ଷ୍ୟ ଦିଏ—ଏହି କୈଶୋରରୁ ଗୋପବନ୍ଧୁ ବଡ଼ ବଳୁଆ ଥିଲେ । ଅନ୍ୟାୟ ଓ ଅସତ୍ୟ ବିରୁଦ୍ଧରେ ଠିଆହେବାକୁ ପଛେଇ ନ ଥିଲେ । ଅବିଚାରୀକୁ ଉଚିତ ଦଣ୍ଡ ନ ଦିଆଯିବା ପର୍ଯ୍ୟନ୍ତ ତାଙ୍କର ଶାନ୍ତି ନ ଥିଲା । ୧୮୯୯ ମସିହାର ଘଟଣା । ଗୋପବନ୍ଧୁ ପୁରୀଜିଲା ସ୍କୁଲରୁ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥାନ୍ତି । ଏହି ସମୟରେ ଦିବାକର ଦାସ ନାମକ ଜଣେ ବ୍ୟକ୍ତି ଏଣ୍ଟ୍ରାନ୍ସ ପାସ୍ କରି ପୁରୀରେ ରହୁଥାନ୍ତି । ସେ କଲିକତାର ଷ୍ଟେଟ୍‌ସ୍‌ମାନ (Statesman) କାଗଜର ପ୍ରତିନିଧି ଥାଇ ପୁରୀର ସମ୍ବାଦ ଏ କାଗଜକୁ ପଠାଉଥାନ୍ତି । ସେତେବେଳେ ପୁରୀରେ ଭୟଙ୍କର ହଇଜା । ରଥଯାତ୍ରା ସମୟରେ ଏହାର ପ୍ରାଦୁର୍ଭାବ ବେଶି । ହଇଜାରୋଗୀମାନଙ୍କର ସେବା ଶୁଶ୍ରୂଷା କରିବା ନିମନ୍ତେ ଗୋପବନ୍ଧୁ ଗୋଟିଏ ସ୍ୱେଚ୍ଛାସେବକ-ସଂଘ ଗଢ଼ିଥାନ୍ତି । ସ୍ୱାସ୍ଥ୍ୟବିଭାଗ କର୍ମଚାରୀମାନଙ୍କର ଅବହେଳା-ଯୋଗୁ ବର୍ଷେ ରଥଯାତ୍ରା ସମୟରେ ଅନେକ ଲୋକଙ୍କର ମୃତ୍ୟୁ ହେଲା । ଏ ବିଭାଗର ଦାୟିତ୍ୱ ଥାଏ ଗୋରା ସିଭିଲ ସର୍ଜନ ବ୍ୟାଙ୍କ ସାହେବଙ୍କ ଉପରେ । ତାଙ୍କର କାର୍ଯ୍ୟକୁ ତୀବ୍ର ନିନ୍ଦାକରି ଦିବାକର ଷ୍ଟେଟ୍‌ସ୍‌ମାନ କାଗଜକୁ ସମ୍ବାଦ ପଠାଇଲେ । ସାହେବ ତ ଏ ଲେଖା ପଢ଼ି କ୍ରୋଧରେ କମ୍ପମାନ । ମାରିବେ ନୋହିଲେ ମରିବେ । ଦିବାକର ଏହା ଲେଖିଛନ୍ତି ଜାଣିପାରି ଖୋଜି ଖୋଜି ବ୍ୟାଙ୍କ ସାହେବ ତାଙ୍କ ଘରେ ଆସି ପହଞ୍ଚିଲେ ଏବଂ ଲୋକଙ୍କ ଆଗରେ ତାଙ୍କୁ ଗୋଟିଏ ବେତରେ ଦୁଇ ଚାରି ପ୍ରହାର ଦେଲେ । ଗୋପବନ୍ଧୁ ଏବଂ ତାଙ୍କର ସହକର୍ମୀ ସ୍ୱେଚ୍ଛାସେବକମାନେ ଏହା ଶୁଣି କ୍ରୋଧରେ ଅତ୍ୟନ୍ତ ଉତ୍ତେଜିତ ହୋଇଉଠିଲେ । ଗୋପବନ୍ଧୁଙ୍କ ପରାମର୍ଶରେ ଦିବାକର ବାବୁ ସାହେବଙ୍କ ନାମରେ ଫୌଜଦାରୀ ମକଦ୍ଦମା ରୁଜୁ କଲେ । ସାହେବଙ୍କ ଅବସ୍ଥା ଏଥିରେ ବଡ଼ ଶୋଚନୀୟ ହୋଇପଡ଼ିଲା । ସେ ଦିବାକର ବାବୁଙ୍କ ସହିତ ଗୋଟାଏ ଆପୋଷ ନିଷ୍ପତ୍ତି କରିବାକୁ ଧାଁ ଧପଡ଼ ଆରମ୍ଭ କରିଦେଲେ; କିନ୍ତୁ ସତ୍ୟବ୍ରତ ଓ ନ୍ୟାୟନିଷ୍ଠ ଗୋପବନ୍ଧୁଙ୍କର ଏକା ଜିଦ୍—ସାହେବ ସର୍ବସମକ୍ଷରେ ଦିବାକର ବାବୁଙ୍କୁ କ୍ଷମାମାଗନ୍ତୁ । ଗୋରା ସର୍ଜନ ଅଗତ୍ୟା ଶେଷରେ ତାହାହିଁ କଲେ । ଜନନେତାରୂପେ ଗୋପବନ୍ଧୁଙ୍କ ଲୋକପ୍ରିୟତାର ଏହାହିଁ ହେଲା ପ୍ରଥମ ସୋପାନ । ଏ ସନ୍ଧାନ୍ତରେ ଆଉ ଜଣେ ବରେଣ୍ୟ ନେତାଙ୍କର

ବୈପ୍ଲବିକ ମାନସର କଥା ମନେପଡ଼େ । ସେ ହେଉଛନ୍ତି ସ୍ୱାଧୀନତାର ବୀର ସୈନିକ ସୁଭାଷଚନ୍ଦ୍ର ବୋଷ । ଏହି ଘଟଣା ଯୋଗୁଁ ସେ କଲିକତାରେ ପ୍ରଥମେ ଲୋକଦୃଷ୍ଟିକୁ ଆସିଥିଲେ । ଘଟଣାଟି ବଡ଼ କୌତୁକପ୍ରଦ ଏବଂ ଶୃଙ୍ଖଳାକର । ପ୍ରେସିଡେନ୍ସି କଲେଜର ଜଣେ ଅଧ୍ୟାପକ (Oaten) ଛାତ୍ରମାନଙ୍କୁ ଆକ୍ଷେପକରି କ'ଣ କହିବାରୁ ସେମାନେ ତାଙ୍କୁ କଠୋର ମାଡ଼ ମାରିଲେ । ସୁଭାଷ କାଳେ ସେ ଘଟଣାରେ ମୁଖ୍ୟଭାଗ ନେଇଥିଲେ ବୋଲି ନିର୍ଭୀକ ଭାବରେ କର୍ତ୍ତୃପକ୍ଷଙ୍କ ସମ୍ମୁଖରେ ସ୍ୱୀକାର କରିବାରୁ କଲେଜରୁ ତାଙ୍କୁ ବହିଷ୍କାର କରାଯାଇଥିଲା । ଏହିମାନଙ୍କଠାରେ ହିଁ ଭବିଷ୍ୟତ ନେତୃତ୍ୱର ବିପୁଳ ସମ୍ଭାବନା ଥାଏ—ନିଃସ୍ୱାର୍ଥ ଜନକଲ୍ୟାଣ ସାଧନର ବଳିଷ୍ଠ ଆଶା ଥାଏ ।

ଗୋପବନ୍ଧୁ ଓ ରାଧାନାଥଙ୍କର ସମ୍ପର୍କ ଏତିକରେ ଶେଷ ନୁହେଁ । ସେ ରେଭେନ୍‌ସା କଲେଜରେ ପ୍ରଥମବର୍ଷୀୟ ଶ୍ରେଣୀରେ ପଢୁଥିବାବେଳେ 'କଲ୍ପଲତା' ନାମରେ ଗୋଟିଏ କାବ୍ୟ ଲେଖିଥିଲେ । ରାଧାନାଥଙ୍କ 'ମହାଯାତ୍ରା' କାବ୍ୟର ଅନୁସରଣରେ ତାହା ରଚିତ ହୋଇଥିଲା । ସ୍ୱର୍ଗତ ପଣ୍ଡିତ ଲିଙ୍ଗରାଜଙ୍କ ଭାଷାରେ, କବିବର ରାଧାନାଥ ମଧ୍ୟ ସେ ପାଣ୍ଡୁଲିପି ଦେଖି ଫେରାଇଦେଲାବେଳେ ତାଙ୍କ ପ୍ରାଣର ଗଭୀର ଆବେଗ ପ୍ରକାଶକରି ଗୋପବନ୍ଧୁଙ୍କୁ ବିଶେଷ ଉତ୍ସାହିତ କରିଥିଲେ । ଗ୍ରୀଷ୍ମ ଛୁଟିରେ ଗାଁକୁ ଆସିଲାବେଳେ ଖୋର୍ଦ୍ଧାରୋଡ଼ ଷ୍ଟେସନରେ ଏହି ପାଣ୍ଡୁଲିପି ଥିବା ତାଙ୍କ ଟ୍ରଙ୍କଟି ହଜିଗଲା । ଏହି ଘଟଣାରେ ସେ ଏତେ କ୍ଷୁବ୍ଧ ହୋଇପଡ଼ିଥିଲେ ଯେ ଅନେକଦିନ ପର୍ଯ୍ୟନ୍ତ ଲେଖାଲେଖି ଏକରକମ ବର୍ଜନ କରିଦେଇଥିଲେ । ଶ୍ରୀ ଭରତଚନ୍ଦ୍ର ନାୟକ ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା 'ସମାଜ'ରେ (୧୯୬୧ ଜୁଲାଇ ୧୬) ଗୋପବନ୍ଧୁ ଓ ରାଧାନାଥଙ୍କ ସମ୍ପର୍କରେ ତାଙ୍କର 'ପୂର୍ବସ୍ମୃତି' ପ୍ରବନ୍ଧରେ ଦୃଢ଼ଭାବରେ ଲେଖିଅଛନ୍ତି, "ଅଥଚ ୧୯୦୪ ମସିହାରେ ଯେତେବେଳେ ଗୋପବନ୍ଧୁ ବାବୁ ଖୋର୍ଦ୍ଧା ହାଇସ୍କୁଲର ହେଡ଼ମାଷ୍ଟର ପଦ ସକାଶେ ପ୍ରାର୍ଥୀ ହୋଇଥିଲେ, ସେହି ସମୟରେ ସେହି ରାଧାନାଥ ବାବୁ ତାଙ୍କୁ ଉଚ୍ଚଭାଷାପୂର୍ଣ୍ଣ ସାର୍ଟିଫିକେଟ ଦେଇଥିଲେ । ପୁରୀ ବ୍ରାହ୍ମଣ ସମିତି ବୋର୍ଡିଂରେ ତାଙ୍କ ସହିତ ମୁଁ ଥିବା ସମୟରେ ତାହା ଦେଖିଅଛୁ ।"

ରାଧାନାଥ ଗୋପବନ୍ଧୁଙ୍କୁ କିପରି ଭଲ ପାଉଥିଲେ ସେ ସମ୍ପର୍କରେ ଗୋପବନ୍ଧୁଙ୍କର ଘନିଷ୍ଠ ବନ୍ଧୁ ସ୍ୱର୍ଗତ ଶ୍ରୀ ବାସୁଦେବ ରଥ କହନ୍ତି, 'ମୁକୁର'ରେ ଗୋପବନ୍ଧୁଙ୍କର ଗୋଟିଏ କବିତା ପ୍ରକାଶ ପାଇଥାଏ । ତା'ର ଗୋଟିଏ ପଦ—

'ଅବନ୍ଧୁ ଜୀବନ ଅସୂର୍ଯ୍ୟ ମହୀ
ଦେହ ଧରି କିଏ ପାରିବ ସହି ?'

କବିବର ରାଧାନାଥ 'ମୁକୁର'ଖଣ୍ଡି ହାତରେ ଧରି ସନ୍ଧ୍ୟା ସମୟରେ ଗୋପବନ୍ଧୁଙ୍କ ବସାରେ ଆସି ପହଞ୍ଚିଲେ ଏବଂ କାଠଯୋଡ଼ି କୂଳକୁ ତାଙ୍କ ସହିତ ବୁଲିଯିବାପାଇଁ ଡାକିଲେ । ବାଟରେ ଗୋପବନ୍ଧୁଙ୍କୁ କୁଣ୍ଢାଇପକାଇ କହିଲେ, 'ମୁଁ ଏତେଦିନ କବିତା ଭଳି ଗୋଟିଏ କବିତା ପଢ଼ିବାକୁ ପାଇଲି ।' ସେହିଦିନୁ ଅନେକଥର ସେ ଗୋପବନ୍ଧୁଙ୍କ ବସାକୁ ଆସି ନଈକୂଳରେ ବୁଲିବାପାଇଁ ତାଙ୍କୁ ସାଙ୍ଗରେ ଡାକି ନେଉଥିଲେ ଓ ତାଙ୍କ ସାହିତ୍ୟ ସମ୍ପର୍କରେ ନାନା ଆଲୋଚନା କରୁଥିଲେ ।'
(ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା 'ସମାଜ' ଜୁନ ୨୧ ତାରିଖ ୧୯୬୫)

## ପରିଶିଷ୍ଟ

ରାଧାନାଥ ଓ ଯୁବ ଗୋପବନ୍ଧୁଙ୍କ ମଧ୍ୟରେ ଏହି ଯେଉଁ ବିବଦମାନ ସାହିତ୍ୟିକ ସଂଘର୍ଷ, ତାହା ଉପରେ ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କର 'ଆତ୍ମଜୀବନୀ'ରେ କିଞ୍ଚିତ୍ ଆଲୋକପାତ କରିଛନ୍ତି । 'ଗୋପବନ୍ଧୁ ଦାସ ଓ 'ଇନ୍ଦ୍ରଧନୁ' ଶୀର୍ଷକ ପରିଚ୍ଛେଦରେ ସେ ଲେଖି ଅଛନ୍ତି; ''ଫୋର୍ଥ କ୍ଲାସରେ (4th) ଥିଲାବେଳେ ଗୋପବନ୍ଧୁ 'ଇନ୍ଦ୍ରଧନୁ'ରେ ଗୋଟିଏ କବିତା ଲେଖିଥିଲେ । ରାଧାନାଥ ବାବୁ ଥିଲେ ଇନସ୍‌ପେକ୍‌ଟର । ସେ ଜାଣିପାରିଲେ, ଏ ଲେଖକଟି ପୁରୀଜିଲ୍ଲା ସ୍କୁଲର ଗୋଟିଏ ପିଲା । ସଙ୍ଗେ ସଙ୍ଗେ ଇନ୍‌କ୍ୱାରି ଚାଲିଲା । ରାଧାନାଥ ବାବୁ ଯାଇ ପହଞ୍ଚିଲେ । ଗୋପବନ୍ଧୁ ଦାସଙ୍କର ସ୍କୁଲରୁ ବହିଷ୍କାର ଦଣ୍ଡ ଠିକ୍ ହେଲା । ସ୍କୁଲର ହେଡ୍‌ମାଷ୍ଟରଙ୍କ ସହିତ ଅନ୍ୟାନ୍ୟ ଅନେକ ଭଦ୍ରଲୋକ ବ୍ୟସ୍ତ ଓ ଚକିତ ହୋଇପଡ଼ିଲେ । ପୁରୀର ସ୍ୱର୍ଗତ ହରିସିଂହ ମିଶ୍ର, ବି. ଏ. ସେତେବେଳେ ନୂଆ ହୋଇ ପୁରୀଜିଲା ସ୍କୁଲରେ ମାଷ୍ଟରି କରୁଥାନ୍ତି । ସେ ଉଦ୍ୟମକରି ବହୁ ଭଦ୍ରଲୋକଙ୍କୁ ଆଣି ରାଧାନାଥ ବାବୁଙ୍କ ପାଖରେ ପହଞ୍ଚିଲେ । ଶୁଣିଛି, ଶିକ୍ଷା ବିଭାଗର ଅଧିନାୟକ ରୂପେ ରାଧାନାଥ ବାବୁ ମତ ଦେଇଥିଲେ, 'ସେ ମୋ ବିରୁଦ୍ଧରେ ଲେଖିଲା କି ଆଉ କାହା ବିରୁଦ୍ଧରେ ଲେଖିଲା ପଡ଼ିନାହିଁ; କିନ୍ତୁ ଯେ ଆଜିଠାରୁ ଏପରି ଲେଖିପାରେ ସେ ଭବିଷ୍ୟତରେ ହେବ କ'ଣ ? ତାକୁ ଆଉ ବେଶି ଶିକ୍ଷାଦେଲେ ସେ ସମାଜର କି ଅନିଷ୍ଟ ନ କରିପାରେ ?' ଶେଷକୁ ସମସ୍ତେ ପ୍ରମାଣ କରିବାକୁ ଚାହିଁଲେ ପିଲାଟା ହୁଏତ ନିଜେ ଲେଖିନାହିଁ, ଆଉ କିଏ ଲେଖିଦେଇଛି କିମ୍ବା ସେ ହୁଏତ ଅନ୍ୟ କାହା ପ୍ରେରଣାରେ ଲେଖିଛି । ତାକୁ ଦଣ୍ଡ ନ ଦେଇ ଏଥର ପଢ଼ିବାର ସୁବିଧା ଦିଅନ୍ତୁ । ଆଉ ତାର ଚରିତ୍ର ଏପରି ଦେଖାଗଲେ ପରେ ଯାହାହେବ କରାଯିବ । ବହୁ କଷ୍ଟରେ ଶେଷକୁ ଦଶଟଙ୍କା ଜୋରିମାନା ଦେଇ ସେ ବର୍ଷର ପ୍ରାଇଜ୍ ହରାଇ ଗୋପବନ୍ଧୁ ଦାସେ ସେ ଘାଟି ଖସିଗଲେ । ଏଇଟା ଖୁବ୍ ସମ୍ଭବ ୧୮୯୫ ବା ୧୮୯୬ ଖ୍ରୀ: ଅ:ର କଥା ।''

# ଚତୁର୍ଥ ପରିଚ୍ଛେଦ

## କବି-ଜୀବନର ପ୍ରଭାତରଶ୍ମି—'ଅବକାଶ-ଚିନ୍ତା'

'ଅବକାଶ-ଚିନ୍ତା' କବି ଗୋପବନ୍ଧୁଙ୍କର ପ୍ରଥମ ସାରସ୍ୱତ ସୃଷ୍ଟି । ଜୀବନର ପ୍ରଭାତ-ରଶ୍ମିରେ ଏ କ୍ଷୁଦ୍ର କବିତା-ପୁସ୍ତକଟି ଉଦ୍ଭାସିତ । ତରୁଣକାଳରୁ କବିଙ୍କର ମନୁଷ୍ୟତାର ସାଧନାର ସ୍ୱାକ୍ଷର ଏଥିରେ ପରିସ୍ଫୁଟ । ୧୭ ବର୍ଷ ବୟସ ମାତ୍ର ପ୍ରବେଶ କଲାବେଳକୁ କବିଙ୍କ ଜୀବନରେ ଅଦମ୍ୟ ଅତୃପ୍ତି । କବି ସେହି ସମୟରୁ ବ୍ୟାକୁଳ ହୋଇ ଲୋଡ଼ୁଥିଲେ ସଙ୍କୀର୍ଣ୍ଣତାରୁ ମୁକ୍ତି, ସ୍ୱାର୍ଥ ପ୍ରତି ଗଭୀର ବିତୃଷ୍ଣା, ଅତୀତଠାରୁ ଭବିଷ୍ୟତ ପର୍ଯ୍ୟନ୍ତ ସୁଦୂରପ୍ରସାରୀ ଦୃଷ୍ଟିଭଙ୍ଗୀ, ପ୍ରାଣର ଦୀପ୍ତି ଏବଂ ବ୍ୟାପ୍ତି ଓ ଜାତୀୟ କର୍ମ-ପ୍ରବାହରେ ନିଜର କ୍ଷୁଦ୍ର ସସୀମଶକ୍ତିକୁ ମିଶାଇ ଦେବାର ପୁଣ୍ୟ ପ୍ରଚେଷ୍ଟା । ଭାରତର ଚିରବରେଣ୍ୟ ସଂସ୍କୃତି ପରମ୍ପରାକୁ ଜନ-ମନରେ ଉଜ୍ଜୀବିତ କରିବାର ପ୍ରେରଣା ତରୁଣ ପ୍ରାଣକୁ ସେତେବେଳେ କିପରି ପରିସ୍ପନ୍ଦିତ କରୁଥିଲା ଏବଂ କେବଳ ଉତ୍କଳ ନୁହେଁ, ସମଗ୍ର ଭାରତର ଏକ ସୁନ୍ଦର ଓ ପୂର୍ଣ୍ଣତାଭିମୁଖୀ ରୂପ ସେହି ସମୟରୁ ତାଙ୍କ କବି-କଳ୍ପନାକୁ କିପରି ସଜୀବ ଓ ତେଜୋଦ୍ଦୀପ୍ତ କରିଥିଲା, ତାହାର ପରିଚୟ ମିଳେ 'ଅବକାଶ ଚିନ୍ତା'ର ବିଶେଷ ଭାବରେ ଦୁଇଟି କବିତାରୁ । ଏହା ଯେପରି ତାଙ୍କର ଜୀବନ ଲିପି । ଏଥିରେ ଗୋପବନ୍ଧୁଙ୍କର ଆତ୍ମା ଉଜ୍ଜ୍ୱଳ-ଭାବରେ ପ୍ରତିବିମ୍ବିତ । ଏହି କବିତା ଦୁଇଟିରେ ତାଙ୍କର ସମାଜ-ଚିନ୍ତା, ଜୀବନ-ଦର୍ଶନ ଓ ଜନକଲ୍ୟାଣନିଷ୍ଠ ଆଦର୍ଶ ଅଭିବ୍ୟକ୍ତ । ପ୍ରଥମଟି ହେଉଛି 'କୋକିଳ' । 'କୋକିଳ' ବହୁ ଦେଶର ବହୁ କବିଙ୍କୁ ଅନୁପ୍ରେରିତ କରିଛି ଉଚ୍ଛ୍ୱାସମୟୀ କବିତା ରଚନା କରିବାକୁ । ଜଣେ ଜଣେ କବି ବିଭିନ୍ନ ସମୟରେ ସେହି କୋକିଳର ରୂପ କିମ୍ବା ଅରୂପ ଏବଂ ତାହାର ସମ୍ମୋହନକାରୀ କୁହୁତାନକୁ ଆଶ୍ରୟକରି ଏକାଧିକ ରହସ୍ୟାଚ୍ଛନ୍ନକବିତା ରଚନା କରିଅଛନ୍ତି । କେହି କେହି ସେହି କୁହୁତାନରେ ଆକୁଳ ଓ ଉନ୍ମନା ହୋଇ ଅବାସ୍ତବ ସ୍ୱପ୍ନ ରାଜ୍ୟରେ ବିଚରଣ କରି ଅଛନ୍ତି । ମହାନଗରୀର ଅସହ୍ୟ କୋଳାହଳ ମଧ୍ୟରେ ପିଞ୍ଜରାବଦ୍ଧ କୋକିଳର କୁହୁତାନ ଶୁଣି ପରାଧୀନତାର ଗ୍ଲାନିରେ କେଉଁ କବିର ପ୍ରାଣ ମର୍ମାନ୍ତିକ ବେଦନା ଅନୁଭବ କରିଅଛି; କିନ୍ତୁ କବି ଗୋପବନ୍ଧୁଙ୍କ 'କୋକିଳ'ରେ ଏପରି ଭାବାବିଷ୍ଟତା ନାହିଁ କି କଳ୍ପନାର ଆତିଶଯ୍ୟ ନାହିଁ । ମନର ଭାବକୁ କବିତ୍ୱ-ଛଟାରେ ସୌନ୍ଦର୍ଯ୍ୟ ବିମଣ୍ଡିତ କରିବାର ପ୍ରୟାସ ନାହିଁ, କି ଇନ୍ଦ୍ରିୟ ଲୋକରୁ ଅତୀନ୍ଦ୍ରିୟ ରାଜ୍ୟକୁ ଯାଇ ସେଠାରେ ଅନନ୍ତ ଶୂନ୍ୟରେ ନିରାଲମ୍ବ ହୋଇ ବିହାର କରିବାର ଉନ୍ମାଦନା ନାହିଁ । ସେଠାରେ ଦ୍ୟୁଲୋକ ଏବଂ ଭୂଲୋକର ମିଳନଚିତ୍ରର ଅସ୍ପଷ୍ଟ ଆଭାସ ନାହିଁ । ବରଂ ଶିଶୁସୁଲଭ ସାରଲ୍ୟ ଓ

ସ୍ୱଚ୍ଛତାହିଁ ଏହି କବିତାର ପ୍ରାଣ । ଏହି କବିତା ବ୍ୟକ୍ତିଗତ ହୋଇ ସମ୍ପୂର୍ଣ୍ଣ ନୈର୍ବ୍ୟକ୍ତିକ । ଏ ଭାବଧାରା କବିଙ୍କର ନିଜସ୍ୱ ହୋଇମଧ୍ୟ ସର୍ବସାଧାରଣଙ୍କର । ଗୋପବନ୍ଧୁଙ୍କ 'କୋଣାର୍କ' କବି ସ୍ୱପ୍ନର ମୂର୍ତ୍ତିପ୍ରତୀକ ନୁହେଁ । ଏହା ତାଙ୍କ ଜୀବନାଦର୍ଶର ଜୀବନ୍ତ ବିଗ୍ରହ । ପାଶ୍ଚାତ୍ୟ ଶିକ୍ଷା, ସଂସ୍କୃତି ଓ ସଭ୍ୟତାର ମହାପ୍ରବାହରେ ଭାସିଯାଇ ଭାରତୀୟମାନେ ଯେତେବେଳେ ଆତ୍ମବିସ୍ମୃତ, ଜାତୀୟ ଜୀବନର ଆଦର୍ଶ ଯେତେ-ବେଳେ ପାଶ୍ଚାତ୍ୟ ଚିନ୍ତାଧାରାରେ ସମାଚ୍ଛନ୍ନ, ଭାରତର ପ୍ରାଚୀନ ସଂସ୍କୃତିର ଦୀପ୍ତି ମ୍ଳାନମୁଖୀ, ଏବଂ ଯେତେବେଳେ ଭାରତର ଅତୀତଗୌରବର ପୁନରୁତ୍ଥାନ ଏବଂ ଅଭ୍ୟୁଦୟ ନିମନ୍ତେ ଦେଶବାସୀଙ୍କର ବ୍ୟାକୁଳତା, ସେହି ସମୟର ଜାତୀୟ ଜାଗରଣର ଚେତନା 'କୋଣାର୍କ' କବିତାରେ ପରିସ୍ଫୁଟ । ଭାରତୀୟ ସାଧନାର ଉଦାତ୍ତବାଣୀ ତା'ର କୁହୁତାନରେ ପ୍ରକଟିତ । ତାର ଗର୍ବ ନାହିଁ, ଅହଙ୍କାର ନାହିଁ, ସେ ନୀରବ ସାଧନାର ପ୍ରତୀକ । ସେ ସାକ୍ଷାତ୍ ଭାରତର ପ୍ରାଚୀନ ଆର୍ଯ୍ୟମୁନିମାନଙ୍କ ପରି ଏକ ତପସ୍ୱୀ । ଭାରତର ପ୍ରାଚୀନ ମହତ୍-ସଂସ୍କୃତିର ସେ ଧାରକ ଓ ବାହକ । ସେ ଯେପରି ପ୍ରାଚୀନ ଭାରତୀୟ ସଂସ୍କୃତିର ସଂକ୍ଷିପ୍ତ ସାର । ସେ ପୃଥିବୀର ମଙ୍ଗଳ ନିମନ୍ତେ ସତେ ଯେପରି ବୃକ୍ଷଲତାର ଅନ୍ତରାଳରେ ଥାଇ ଯୋଗୀଋଷିମାନଙ୍କପରି 'ଅଦ୍ୱୈତତତ୍ତ୍ୱ' ପ୍ରକାଶ କରୁଛି । ସମାଲୋଚନା ଛଳରେ କେହି କେହି ଏଠାରେ ପ୍ରଶ୍ନ ଉଠାଇ ପାରନ୍ତି, ଏ କବିତାରେ ନୂତନତ୍ୱ କ'ଣ ? ଏହି କବିତାର ଅପରୂପତ୍ୱ କାହିଁ ? ଜନମନର ଅବ୍ୟକ୍ତ କଥା କେଉଁଠାରେ ବ୍ୟକ୍ତକରି ପାଠକର ମର୍ମକୁ କବି ସ୍ପର୍ଶ କରିଅଛନ୍ତି ? ଉତ୍ତରରେ କୁହାଯାଇପାରେ, ପୁରାତନକୁ ନୂତନ ରୂପ-ଦେବାରେ ହିଁ କବିଙ୍କର ବୈଶିଷ୍ଟ୍ୟ । ଚନ୍ଦନକୁ ଯେତେଥର ଘଷିଲେ ତାର ସୁବାସ ଲୋପ ପାଏନାହିଁ । ଭାରତର ପ୍ରାଚୀନ ଆଦର୍ଶ ଓ ପରମ୍ପରା ଇତିହାସରେ ଉଜ୍ଜ୍ୱଳ-ସ୍ୱଳ । ହୋଇ ରହିଛି । ସେ ଆଦର୍ଶରେ ନୂତନ ଅଧ୍ୟାୟ ଯୋଗକରିବାର କାହାର ଶକ୍ତି ନାହିଁ । ଶକ୍ତି ଅଛି କେବଳ ଏହି ଆଦର୍ଶ ଏବଂ ପରମ୍ପରା ଉପରେ ନୂତନ ସଭ୍ୟତା ଓ ସମାଜ ଗଠନ କରିବାରେ । ଆମର ଯାହା ଅଛି, ତାକୁ ସମ୍ପୂର୍ଣ୍ଣରୂପେ ଭୁଲିଯିବା ଜାତିପକ୍ଷରେ ଶ୍ରେୟସ୍କର ନୁହେଁ । ବୈଜ୍ଞାନିକଦୃଷ୍ଟିକୋଣରୁ ତାକୁ ଘଷିମାଜି, ଯୁଗୋପଯୋଗୀ କରାଯାଇପାରେ । ଗୋପବନ୍ଧୁଙ୍କର 'ଅବକାଶ ଚିନ୍ତା'ର 'କୋଣାର୍କ' କବିତାରେ ତାଙ୍କର ରକ୍ଷଣଶୀଳ ଦୃଷ୍ଟିଭଙ୍ଗିର ପରିଚୟ ମିଳିଲେ ସୁଦ୍ଧା, ତାଙ୍କର ପରବର୍ତ୍ତୀ ଶିକ୍ଷାଗତ, ସାମାଜିକ ଓ ରାଜନୈତିକ କାର୍ଯ୍ୟ-କଳାପ ଏବଂ ରଚନାମାନଙ୍କରେ ତାଙ୍କର ପ୍ରଗତିଶୀଳ ଏବଂ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଯେ ପରିପୂର୍ଣ୍ଣ ଭାବରେ ପ୍ରକାଶ ପାଇଛି, ଏଥିରେ ସନ୍ଦେହ ନାହିଁ ; କିନ୍ତୁ 'ଅବକାଶ ଚିନ୍ତା'ରେ କବି ଅତୀତମୁଖୀ, ଭାରତର ଗୌରବମୟ ଅତୀତ ପରମ୍ପରା ଉପରେ ତାଙ୍କର ଅବିଚଳ ବିଶ୍ୱାସ । ତାଙ୍କ ମତରେ, 'ସ୍ୱର୍ଗୀୟ ସରଳ ଭାବ ଓ ପବିତ୍ର ମାଧୁରୀ' ପୂରିରହିଛି ।

ଭାରତର ପ୍ରାଚୀନ ଯୋଗୀଋଷିମାନଙ୍କର ତପଃ ସାଧନାରେ, ସେମାନଙ୍କର ଦିବ୍ୟଦର୍ଶିତାରେ । ସେହି ସାଧନା ଓ ଦିବ୍ୟଦୃଷ୍ଟିର ପୁନର୍ଜାଗରଣରେ ହିଁ ଭାରତର ମୁକ୍ତି । ସେତେବେଳେ କବିଙ୍କର ତରୁଣପ୍ରାଣ ଏ ଯୁଗର ତୁଚ୍ଛତା, କ୍ଷୁଦ୍ରତା, ଅହଂସର୍ବସ୍ୱତା, ଆତ୍ମବଞ୍ଚନା ଓ ସ୍ୱାର୍ଥପରତା ପ୍ରତି ଅତ୍ୟନ୍ତ ବିମୁଖ, କେବଳ ବିମୁଖ ନୁହଁ, ବିଦ୍ରୋହାତ୍ମକ । ସାଧୁ ଓ ସତ୍‌ଲୋକଙ୍କ ପ୍ରତି ଏ ସଂସାର ବାସୋପଯୋଗୀ ନୁହେଁ, ଏହା ତାଙ୍କର ଧାରଣା । ପ୍ରଥମ ଯୌବନରୁ 'ଗୁରୁତର ଭାବ' ନିମନ୍ତେ ତାଙ୍କ ପ୍ରାଣ ପିପାସିତ । ସେ ଭାବ ସେ ସେତେବେଳର ଲୋକ-ସମାଜରୁ ନ ପାଇ କ୍ଷୁବ୍ଧ ପ୍ରାଣରେ ବିଶ୍ୱଚରାଚର ଉପରେ ଓ ପ୍ରକୃତି-ରାଜ୍ୟରେ ବ୍ୟାକୁଳ ଦୃଷ୍ଟି ନିବଦ୍ଧ କରିଅଛନ୍ତି । ସେହି 'ଗୁରୁତର ଭାବ' ସେ ମାନବ-ସମାଜରେ ନ ପାଇ ପକ୍ଷି-ଜଗତରେ ପାଇଛନ୍ତି । କୋକିଳକୁ ତେଣୁ ସ୍ୱାଗତ ସମ୍ଭାଷଣ ଜଣାଇ ସେ ଲେଖିଅଛନ୍ତି—

'କେଉଁ କ୍ଷୁଦ୍ର ଦେହେ କେଉଁ ଗୁରୁତର ଭାବ
ଲାଗଇ ଆଶ୍ଚର୍ଯ୍ୟ ମୋତେ ଦେଖି ତୋ ପ୍ରଭାବ,
ଆରେ ପ୍ରବୀଣ ବିହଙ୍ଗ,
ଲଭିବାକୁ ମୋର ଇଚ୍ଛା ତୋର ସାଧୁସଙ୍ଗ !'

କିନ୍ତୁ ଏ 'ସାଧୁସଙ୍ଗ'ର ଲକ୍ଷ୍ୟ ଭବାର୍ଣ୍ଣବତରଣ ନୁହେଁ, ଏ ସାଧୁ ସଙ୍ଗର ଅନିବାର୍ଯ୍ୟ ପରିଣତି ଧର୍ମଶାସ୍ତ୍ରୋକ୍ତ ମୋକ୍ଷଲାଭ ନୁହେଁ । ଏ ଠିକ୍ କବିଗୁରୁ ରବୀନ୍ଦ୍ରନାଥଙ୍କର ସେହି ଉଦାତ୍ତ ଜୀବନ-ମନ୍ତ୍ର 'ବୈରାଗ୍ୟ ସାଧନେ ମୁକ୍ତି ସେ ଆମାର ନୟ' । ଗୋପବନ୍ଧୁଙ୍କ ଆଦ୍ୟ ଯୌବନର ଏ ସାଧୁସଙ୍ଗର କାମନା ବ୍ୟଷ୍ଟିଗତ ନୁହଁ, ଏହା ସମଷ୍ଟିଗତ-ସାମାଜିକ, ଏ ସାଧୁସଙ୍ଗର ପବିତ୍ର ପ୍ରେରଣା ନ ଆସିଲେ, ବ୍ୟକ୍ତିଗତ କୁତ୍ସିତ ବାସନାର କଳଙ୍କ-କାଳିମାରୁ ଆତ୍ମା ମୁକ୍ତିଲାଭ କରିବ କିପରି ? ବହୁ ସହିତ ଏକର ଆତ୍ମା ସୁଖ ଦୁଃଖରେ ବିଜଡ଼ିତ ରହିବ କିପରି ? ଆଉ ଆତ୍ମପ୍ରସାରଣର ମହିମାରେ ଚିତ୍ତ ଉନ୍ନତ ହେବ କିପରି ? କୋକିଳ ପ୍ରାଚୀନ ମହତ୍ତ୍ୱର ପ୍ରାଣ-ପ୍ରତୀକ ବୋଲି କବି ଶେଷରେ ତା'ର ଯେଉଁ ସ୍ଥାନ ଓ ଗୁଣବାଚକ ବିଶେଷଣ ପ୍ରୟୋଗ କରିଅଛନ୍ତି, ତାହା ଯେପରି 'ଗୁରୁତର ଭାବ'ର ଉଦ୍ଦୀପକ, ସେହିପରି ତାଙ୍କର ସଂସ୍କୃତିସମ୍ପନ୍ନତାର ପରିଚାୟକ ।

'ନାମ ଏହାର କୋକିଳ,
ବସନ୍ତ-ରାଜ୍ୟ-ନିବାସୀ 'ସୁରକ୍ଷଣଶୀଳ' ।

ସେ 'ପ୍ରାଚୀନ ଉଦ୍ୟମ ବିଧି' ସକଳର ରକ୍ଷକ । ତେଣୁ କୋକିଳ ଗୋପବନ୍ଧୁଙ୍କର ଅତି ପ୍ରିୟ-ଜୀବନାଦର୍ଶର ଉତ୍ସ, ଦେଶହିତୈଷିଣାର ଅନୁପ୍ରେରଣା ଏବଂ କର୍ମ-ସାଧନାର ଦିଗଦର୍ଶକ ।

କେହି ଯେପରି ଭୁଲ ନ ବୁଝନ୍ତି, ଏ 'ବାଧ୍ୟ' ଆନୁଷ୍ଠାନିକ ବାଧ୍ୟ, ସାମାଜିକ ଗ୍ଳିଚଳନ, କିମ୍ବା ଧର୍ମର ବହିରଙ୍ଗ ସାଧନା-ଚର୍ଚ୍ଚା, ଚୈତନ୍ୟ ଓ ତିଲକ ପରିପାଟୀ । ଏ 'ବାଧ୍ୟ'ର ଚେର ବହୁତ ଗଭୀରରେ, ଏହା ଆତ୍ମିକ ବାଧ୍ୟ—ଜଗତର ପରମ ଶ୍ରେୟବୋଧର ବାଧ୍ୟ, ସତ୍ୟାନୁସନ୍ଧିତ୍ସାର ବାଧ୍ୟ ଏବଂ ମହାମହିମମୟ ତ୍ୟାଗ, ନିଷ୍ଠା ଓ ଆତ୍ମ-ବିସର୍ଜନର ବାଧ୍ୟ । ଏହା ହେଉଛି ପ୍ରାଚୀନ ଆର୍ଯ୍ୟଋଷିମାନଙ୍କର ସେହି ମୈତ୍ରେୟୀ ନୀତି—'ଯେ ନାହଂ ନା ମୃତାସ୍ୟାଂ କିମହଂ ତେନ କାର୍ଯ୍ୟଂ—ଯାହାଦ୍ୱାରା ଅମୃତତ୍ୱ ଲାଭ କରିହେବ ନାହିଁ, ସେଥିରେ ମୋର କି ପ୍ରୟୋଜନ ?' ଦ୍ୱିତୀୟ କବିତାଟି ହେଉଛି 'ଛବିଶ ବର୍ଷ ପ୍ରବେଶ' । କବିଙ୍କର ଆନ୍ତରିକ ଆକୁଳତା ଓ 'ଅତୃପ୍ତିବେଦନା'ର ରୂପ, ରସ ଓ ଗନ୍ଧର ଏହା ଏକ ଜାଜ୍ଜ୍ୱଲ୍ୟମାନ ପରିଚୟ ଲିପି । କାରୁଣ୍ୟ ଓ ଶାନ୍ତରସର ଏ ଏକ ସୁମନୋଜ୍ଞ ସମନ୍ୱୟ । ଛବିଶବର୍ଷ ବୟସରେ ଯେତେବେଳେ କଲେଜରୁ ଉତ୍ତୀର୍ଣ୍ଣ ଛାତ୍ରମାନେ ପ୍ରଭୂତ ଅର୍ଥାଗମ କିମ୍ବା ପ୍ରତିପତ୍ତିର ଆକାଶକୁସୁମ ଚୟନରେ ବ୍ୟସ୍ତ, ଗୋପବନ୍ଧୁ ସେତେବେଳେ ନିଜ ସିଦ୍ଧିର ସ୍ୱଳ୍ପତାରେ କାତର, ନିରାଶାବିଷରେ ଜର୍ଜରିତ । ଯେତେବେଳେ ଏ ଦେଶର ଶିକ୍ଷିତ ଯୁବକମାନେ ନିଜ ନିଜର କାମନା ବାସନାର ଚରିତାର୍ଥତା ପାଇଁ ଆଗେଇ ଗ୍ଳିଯିବାକୁ ତତ୍ପର, ପଛକୁ ଗୁହିଁବାର ସେମାନଙ୍କର ଅବକାଶ ନାହିଁ, ସେତେବେଳେ ଗୋପବନ୍ଧୁ ନିଜର ଅତୀତ ଉପରେ ଦୃଷ୍ଟି ନିବଦ୍ଧକରି ଚିନ୍ତାକୁଳ । ପଚିଶିବର୍ଷ ବିତିଗଲା । 'କାଳ-ନିରପେକ୍ଷ-ନଦୀ' ବହି ଗ୍ଳିଛି ଅବିଶ୍ରାନ୍ତ ଗତିରେ । ଆଉ ବା ପରମାୟୁ କେତେ ? ସେ ଇତି ମଧ୍ୟରେ କରିଛନ୍ତି କ'ଣ ? ଜୀବନର ମର୍ମଭେଦୀ ହାହାକାରମୟୀ ବାଣୀ ସତେ ଯେପରି ଅନ୍ତରକୁ ବିଦାରିକରି ଆତ୍ମପ୍ରକାଶ କରିଛି ନିମ୍ନଲିଖିତ ଦୁଇଟି ପାଦରେ ।

'ଅତୀତ କେବଳ ମୋର ରୁକ୍ଷ ସଇକତ,
ଦିଶେ ନାହିଁ କାହିଁ ଏକ ଶ୍ୟାମ ଦୂର୍ବାଦଳ'

ଏ ପ୍ରତୀକ ମଧ୍ୟରେ ଅଛି ଅତୀତ ଜୀବନର ରୁକ୍ଷ ମରୁର ବେଦନାବିଜଡ଼ିତ ଚିତ୍ର । ଜୀବନରେ ତାଙ୍କର 'ଅସଂଖ୍ୟ କଳ୍ପନା କଳି' । ସେଥିରୁ ଗୋଟିଏ ମାତ୍ର ଏପର୍ଯ୍ୟନ୍ତ ବିକଶିତ ହୋଇନାହିଁ । ଏ 'କଳ୍ପନା-କଳି' ନିଜକୁ ନେଇ ନୁହେଁ । ସେଥିରେ ନିଜର ଧନଜନ ଗୋପଲକ୍ଷ୍ମୀର ମଧୁର ସ୍ୱପ୍ନ ନାହିଁ । ଏ କଳ୍ପନା ଦେଶ ପାଇଁ, ଜାତି ପାଇଁ, ସମାଜ ଓ ସମଷ୍ଟି ପାଇଁ । କବି ନୈରାଶ୍ୟରେ ଭାଙ୍ଗି ପଡ଼ିଛନ୍ତି—ଜୀବନକୁ ଏକ 'ଦଦରା ନାବ' ବୋଲି କଳ୍ପନା କରିଛନ୍ତି । ନୈରାଶ୍ୟର ଏ ରୂପକଳ୍ପ କେଡ଼େ ସାଧାରଣ, କେତେ ପରିଚିତ, ତଥାପି ଏଠାରେ କି ଅନନ୍ୟସାଧାରଣ ବ୍ୟଞ୍ଜନାରେ ଏହା ବିମଣ୍ଡିତ ! ଜୀବନର ମଧ୍ୟାହ୍ନରେ ଆସି 'ପ୍ରଦୋଷ-ଚନ୍ଦ୍ରା' ଉପସ୍ଥିତ । ଏ ବିଷମ ପରିସ୍ଥିତିରେ ଧୈର୍ଯ୍ୟ ଧରିବ କିଏ ?

'ଏ ଦାଦରା ନାବ ଆଉ ଜୀବନ ସରିତ
ବାହିବ ବା କେତେଦିନ ବାହିମି ବହାନ,
ମଧ୍ୟାହ୍ନେ ପ୍ରଦୋଷ ଚିନ୍ତା ପଡ଼ଇ ମୋ ଚିତ୍ତେ,
ମୋ ଆଶ-ମୁକୁଳରାଜି ବସନ୍ତେ ମଳିନ ।'

ତେବେ କ'ଣ ସବୁ କଳ୍ପନା-ଜଳ୍ପନାରେ ଚିର ଜଳାଞ୍ଜଳିଦେଇ ଦାଦରା ବୋଇତକୁ ସୀମାହୀନ ସାଗରର ମହାଗ୍ରହ ଦରେ ଭସାଇଦେଇ ପୃଥିବୀପୃଷ୍ଠରୁ ନିଷ୍କ୍ରିୟ ହେବାକୁ ପଡ଼ିବ । ଜୀବନର ପରିଣତି କ'ଣ ଏଇଥିପାଇଁ ? ଏଇଥିପାଇଁ ଅତୀତ ସ୍ୱକାଳେ ଏତେ ତୀବ୍ର ଅନୁତାପର ହଳାହଳ ? ତାହା ହୋଇଥିଲେ ଗୋପବନ୍ଧୁଙ୍କ ଗୋପବନ୍ଧୁତ୍ୱ ସେଇଠାରେ ଆତ୍ମ ବିଲୟ ଲଭିଥାନ୍ତା । ଯେଉଁ 'ଅଗଣିତ ଦୀନଦରିଦ୍ରଙ୍କ ପାଇଁ ସେ ଅହରହ ଅଶ୍ରୁପାତ କରୁଥିଲେ, ସେହିମାନଙ୍କ ପରି ବିସ୍ମୃତିର ଅନ୍ଧକାରରେ ବିଲୀନ ହୋଇ ଯାଇଥାନ୍ତେ । ତେଣୁ କ୍ଷଣିକ ନୈରାଶ୍ୟ ମଧ୍ୟରେ ସେ ଆଶାର ଉଜ୍ଜ୍ୱଳ ରଶ୍ମିଚ୍ଛଟା ଦେଖିପାରିଛନ୍ତି । ଏହି ଆଶାର ଆବିର୍ଭାବ ଓ ସଞ୍ଚାର ନିମନ୍ତେ ସେ ପରମେଶ୍ୱରଙ୍କଠାରେ ଶରଣପ୍ରାର୍ଥୀ ହୋଇଛନ୍ତି । ଆଉ ମନୁଷ୍ୟର ପରମ ସହାୟ ଧର୍ମବୋଧ ଏବଂ ପରାତ୍ପର ପରମେଶ୍ୱର । ତେଣୁ ଆଲୋଚ୍ୟ କବିତାର ଉପସଂହାରରେ କବି ବଳିଷ୍ଠ ଆଶା ଓ ବିଶ୍ୱାସରେ ନିଜକୁ ଉଦ୍ଦୀପିତ କରିବାକୁ ଯାଇ ଲେଖିଅଛନ୍ତି—

'ଧର୍ମ ଅନୁକୂଳ ଯେବେ ମୋ କାମନାଚୟ
ସାଧନେ ଶକତି ଦିଅ ପ୍ରଭୁ ଦୟାମୟ ।'

ଏଇ ତ ଉପନିଷଦର ସେହି ମନ୍ତ୍ରର ପୁନରୁଚ୍ଚାର—'ସ ଦେବଃ ସ ନୋ ବୁଦ୍ଧ୍ୟା ଶୁଭୟା ସଂଯୁନକ୍ତୁ ।'

କିମ୍ବା

ବିଶ୍ୱ କବି ରବୀନ୍ଦ୍ରଙ୍କ ଭାଷାରେ—
ଧ୍ୱନିଛେ ତାର ମାନବ ମହିମା
ଉଠିଛେ ଗଗନ ପାନେ
ଝୁଙ୍କିଛେ ମାନବ ଆପନାର ସୀମା
ଅସୀମେରମାଝଖାନେ ।'

'ଅବକାଶ-ଚିନ୍ତା'ରେ ବୁଦ୍ଧି ଓ ହୃଦୟ, ଦ୍ରଷ୍ଟା ଓ ସାଧ୍ୱୀର ସମନ୍ୱୟରେ ମାନବର ମହିମା କପରି ଗଗନସ୍ପର୍ଶୀ ହୋଇ ଉଠିଛି, ସୀମା ମଧ୍ୟରେ ଥାଇ ମନୁଷ୍ୟ କପରି ଆତ୍ମ-ଊର୍ଦ୍ଧ୍ୱାୟନର କୃଚ୍ଛ୍ରସାଧନା ନିମନ୍ତେ ବ୍ୟାକୁଳ ହୋଇଉଠିଛି ଏବଂ

ସେହି ବ୍ୟାକୁଳତାରେ ଜନ-ସମାଜକୁ ଉଦ୍‌ବୋଧନ କରିବାର ପ୍ରୟାସ କବି-ପ୍ରାଣକୁ ଅହରହ କିପରି ମଥିତ କରିଛି, ତା'ର ସୁସ୍ପଷ୍ଟ ଇଙ୍ଗିତ ମିଳେ ।

'ବ୍ରାହ୍ମଣ ସମିତି ଛାତ୍ରାବାସରେ ସମବେତ ବ୍ରାହ୍ମଣ ଛାତ୍ରମାନଙ୍କ ପ୍ରତି' ଶୀର୍ଷକ ଗୋଟିଏ ଅତି ସାଧାରଣ କବିତାରେ ବ୍ରାହ୍ମଣ ଛାତ୍ରମାନଙ୍କୁ ଜୀବନର ପରମ ଶ୍ରେୟବୋଧର ଆଦର୍ଶରେ ଅନୁପ୍ରାଣିତ କରିବାକୁ ଯାଇ ସେ ଯେଉଁ ଉପଦେଶ ବାଣୀ ଶୁଣାଇ ଅଛନ୍ତି, ତାହା ହିଁ ତାଙ୍କ ଜୀବନର ପରମାଦର୍ଶ । ସେ ଆଦର୍ଶରେ ସେ ଜୀବନର ପ୍ରାରମ୍ଭରୁ ନିୟନ୍ତ୍ରିତ । ଅବଶ୍ୟ କେହି କେହି କହିପାରନ୍ତି, ରାଧାନାଥ 'ଦରବାର'ରେ ଏହିପରି ବହୁ ନୀତି ଉପଦେଶ ଦେଇଅଛନ୍ତି । ସାତ୍ତ୍ୱିକଭାବର ପ୍ରସାର ଓ ପ୍ରାଧାନ୍ୟ କାମନା କରିଅଛନ୍ତି; କିନ୍ତୁ ଶିକ୍ଷିତ-ସମାଜକୁ ସେ ସେଥିରେ ଏପରି ନିର୍ମମଭାବରେ ବ୍ୟଙ୍ଗ କରିଅଛନ୍ତି ଯେ ମନେହୁଏ କୌଣସି କାରଣରୁ ସେ ନିଜେ ତତ୍କାଳୀନ ଶିକ୍ଷିତ-ସମାଜର କଠୋର ପ୍ରତିକୂଳ ସମାଲୋଚନାରେ ଜର୍ଜରିତ ଓ କ୍ଷତବିକ୍ଷତ ହୋଇ ପ୍ରତିହିଂସାର ବିଷ ତାଙ୍କର ଶତ୍ରୁମାନଙ୍କ ଉପରେ ଉଦ୍‌ଗାର କରିଯାଇ ଅଛନ୍ତି । ଅନ୍ୟମାନଙ୍କୁ ସେ ଯେଉଁ ଦୋଷରେ ଦୋଷୀ ସାବ୍ୟସ୍ତ କରି ଅଛନ୍ତି, ନିଜେ କ'ଣ ସେ ଦୋଷରୁ ମୁକ୍ତ ? ଅବଶ୍ୟ ଏଥିନିମନ୍ତେ 'ଦରବାର' କାବ୍ୟରେ ତାଙ୍କର ନିଜର କୈଫିୟତ ଅଛି; କିନ୍ତୁ କିଏ ଜାଣେ ଏଥିରେ ତାଙ୍କର ଆତ୍ମ-ପ୍ରବଞ୍ଚନା ନାହିଁ ? ପାଠକର ସମାଲୋଚନାର କଶାଘାତରୁ ନିଜକୁ ବଞ୍ଚାଇବାର ଏ ତାଙ୍କର କ୍ଷୀଣ ପ୍ରୟାସ ନୁହେଁ ? ନିଜେ ରାୟ ବାହାଦୁର ଉପାଧି ଗ୍ରହଣକରି ଅନ୍ୟମାନଙ୍କୁ ସେଥିପାଇଁ ଏତେ ନିର୍ମମ ଆଘାତ ଦେବାର ଆବଶ୍ୟକତା କ'ଣ ? କର୍ମ ଓ କାବ୍ୟ ମଧ୍ୟରେ ଯେଉଁ ନିବିଡ଼ ସାମଞ୍ଜସ୍ୟ ଗୋପବନ୍ଧୁଙ୍କ କବି-ଜୀବନର ପରମ ବୈଶିଷ୍ଟ୍ୟ, ସେ ସମନ୍ୱୟ-ସାଧନାର ପ୍ରତିଛବି 'ଦରବାର'ରେ କାହିଁ ? ବ୍ରାହ୍ମଣ ସମିତିର ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇ ଗୋପବନ୍ଧୁ ଯାହା ଲେଖି ଅଛନ୍ତି—

'ପ୍ରେମେ ଆଲିଙ୍ଗନ କର ସର୍ବଜନେ,
ଉଚ୍ଛୁଳାଅ ପ୍ରେମ-ଉଚ୍ଛ୍ୱାସ ଜୀବନେ,

× × ×

ଲୋକହିତେ ପ୍ରାଣ-ପ୍ରଦାନ-ପ୍ରବଣ—
ଦଧିଚି ଶୋଣିତ କରିଛ ଧାରଣ
ତଥି ସ୍ୱାର୍ଥ ବଳି ଦେଖାଅ ସେ ତ୍ୟାଗ
ଭାରତ ଜାତୀୟ ମହାଯାଗେ ଲାଗ ।।'—

ଏପରି ନିବିଡ଼ ଉପଲବ୍ଧିର ଜୀବନ୍ତ ଅଭିବ୍ୟକ୍ତି ଓ ଓଡ଼ିଶାର ଜାତୀୟ ଜୀବନ ଇତିହାସରେ ଆଉ କେଉଁଠାରେ ଅଛି ? ବ୍ରାହ୍ମଣ-ସମିତିର ଶିଶୁ ଅନୁଷ୍ଠାନ ଏଠାରେ ଏହି କବିତାର କେନ୍ଦ୍ରଭୂମି ହେଲେ ହେଁ, ଏହା କେବଳ ସେହି ଅନୁଷ୍ଠାନରେ ସୀମିତ ହୋଇ ରହିନାହିଁ କିମ୍ବା ଉଦ୍‌ବୋଧନକୁ କେବଳ ବ୍ରାହ୍ମଣଜାତି ମଧ୍ୟରେ ଆବଦ୍ଧ କରିଦେଇ ନିନ୍ଦୁକମାନଙ୍କର କୁତ୍ସା-ରଟନା ପ୍ରବୃତ୍ତିରେ ଇନ୍ଧନ ଯୋଗାଇ ଏହାର ଚିରନ୍ତନ ମୂଲ୍ୟକୁ ହ୍ରାସ କରିଦେଇନାହିଁ । ସ୍ତର ସ୍ତର ଦେଇ ଏ କବିତା ଊର୍ଦ୍ଧ୍ୱଗତି ପଥର ଯାତ୍ରୀ । ଏ କବିତା ସତେ ଯେପରି ବ୍ରାହ୍ମଣ ଯୁବକମାନଙ୍କୁ ଉପଲକ୍ଷ୍ୟ କରି ସମଗ୍ର ଦେଶବାସୀଙ୍କୁ ସଚେତନ କରିଦେଇ କହୁଛି, "ମନୁଷ୍ୟ ଶ୍ରେଷ୍ଠ ନୁହଁ, ସେ ନିରନ୍ତର ବଡ଼ ହେବାକୁ ଚାହେଁ, ଅଳ୍ପରେ ତା'ର ସନ୍ତୋଷ ନାହିଁ । ସେ ସୀମା ମଧ୍ୟରେ ଅସୀମକୁ ପାଇବାକୁ ବ୍ୟାକୁଳ ।" ତେଣୁ ଏବେ ଓଡ଼ିଶାର ଘରେ ଘରେ ଏହି କବିତାର ଦୁଇଟି ପଙ୍‌କ୍ତି ଅତି ସୁପରିଚିତ । ସେ ପଙ୍‌କ୍ତି ଦୁଇଟି ହେଉଛି—

ନିଜ ସୁଖ ଲାଗି ଜାତ ନୁହେଁ ହିନ୍ଦୁ
ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ ।'

ବ୍ରାହ୍ମଣ ଜାତିର ତେଜସ୍ୱିତା, ଜ୍ଞାନସାଧନା ଓ ଆତ୍ମଶୁଦ୍ଧିର ମହତ୍ତ୍ୱ ବର୍ଣ୍ଣନାରେ ଏ କବିତାର ଆରମ୍ଭ, ଅତି ସାଧାରଣ ଶାସ୍ତ୍ରସମ୍ମତ କଥା; କିନ୍ତୁ ସେହିଠାରେ ଏହାର ଶେଷ ନୁହଁ—ତା'ପରେ କବି ହିନ୍ଦୁର ସାର୍ବଜନୀନ ପ୍ରେମର ମହତ୍ତ୍ୱ ପ୍ରକଟନ କରିଅଛନ୍ତି । ଏଠାରେ ମଧ୍ୟ କବିଙ୍କ ହୃଦୟାବେଗ ଓ ସତ୍ୟୋପଲବ୍ଧିର ପୂର୍ଣ୍ଣଚ୍ଛେଦ ଘଟିନାହିଁ । ବିଶ୍ୱପରାୟଣତା ଓ ବିଶ୍ୱଜନୀନତାରେ ଏ କବିତାର ଚୂଡ଼ାନ୍ତ ପରିଣତି ।

'ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ
ସାଧ ବିଶ୍ୱହିତ ତେଜି ଅଭିମାନ ।'

ଏ ବିଶ୍ୱପ୍ରୀତି ଓ ଭଗବତଭାବ ସେ ପ୍ରକୃତି ରାଜ୍ୟରେ ମଧ୍ୟ ଦେଖିବାକୁ ପାଇଅଛନ୍ତି । ଅତି ବାଲ୍ୟାବସ୍ଥାରୁ ଗୋପବନ୍ଧୁଙ୍କର ନଦୀ ପ୍ରତି ଅମୋଘ ଆକର୍ଷଣ । ସେ କେବଳ ନଦୀର ବିଭିନ୍ନ ରୂପ ଦେଖି ମୁଗ୍‌ଧ ହୋଇନାହାନ୍ତି, ସେ ନଦୀର ଜଳ ମୁକୁରରେ ସତେ ଯେପରି ଦେଖିବାକୁ ପାଇଛନ୍ତି ତାଙ୍କରି ଜୀବନ-ସାଧନା ମନ୍ତ୍ରର ପ୍ରତିବିମ୍ବ । ତାଙ୍କରି ଅନୁଭୂତିର ପ୍ରତିଚ୍ଛବି । ନଦୀର ମଧୁର ମୋହନ ଦୃଶ୍ୟରେ ସେ ଯେପରି ଆତ୍ମ-ବିହ୍ୱଳ ହୋଇଅଛନ୍ତି, ତା'ର କୂଳପ୍ଲାବିନୀ

ବାଲ୍ୟାବସ୍ଥାରେ ମଧ୍ୟ ସେହିପରି ବିଚଳିତ ହୋଇ ଅଛନ୍ତି । ସେହି ନଦୀକୁ ଲକ୍ଷ୍ୟକରି ଥରେ ସେ ପ୍ରାୟ ଚଉଦ ବର୍ଷ ବୟସରେ ଲେଖିଥିଲେ—

'ତେଣୁ ତୋ ପଦେ କରେ ବିନତି
ଜୀବ ଥିବାଯାଏ ସ୍ରୋତସ୍ୱତି,
ଭବ ଦୁଃଖ ନାଶି ଭାବ ରାଶି ରାଶି
ଚିତ୍ତେ ଜନ୍ମାଉଥିବୁ ଏହି ମତି, କେ ତଟିନୀ ।'

(ଏଠାରେ ନଦୀକୁ ଅନୁନୟ ବିନୟ କରି କବି କହୁଅଛନ୍ତି, ସେ ଯେପରି ତାଙ୍କ ମନରେ ସଦାବେଳେ ମହତ୍ତ୍ୱଭାବର ଉଦ୍ରେକ କରେ, ସେ ଯେପରି ସ୍ୱଚ୍ଛ ସେହିପରି ସ୍ୱଚ୍ଛତା, ସେ ଯେପରି ସଦା ପ୍ରବାହଶୀଳ, ସେହିପରି କଳାନ୍ତିହୀନ କର୍ମ କର୍ମଚଞ୍ଚଳତା, ସେ ଯେପରି ପରହିତସାଧିନୀ, ସେହିପରି ପରୋପକାରିତା । ଏହି ଭବ-ଦୁଃଖନାଶୀ ଭାବସମ୍ପଦରାଜି ସେ ନଦୀଠାରୁ ଲାଭକରିବାକୁ ଉନ୍ମୁଖ । ) ପୁଣି ସେହି ନଦୀ ଯେତେବେଳେ କରାଳରୂପଧରି ତଟବାସୀଙ୍କ ବାସଚ୍ୟୁତ କରିଛି, ଶସ୍ୟ ଶ୍ୟାମଳା ଧରଣୀକୁ ଜଳପ୍ଲାବିତ କରିଛି, ଉତ୍ପୀଡ଼ିତ ଲୋକଙ୍କର ଦୁଃଖ ଓ ହାହାକାରରେ ଧରଣୀକୁ ବିଦୀର୍ଣ୍ଣ କରିଛି, ସେତେବେଳେ ସେ ନଦୀର ସେହି ବାତ୍ସଲ୍ୟ ଓ କଲ୍ୟାଣମୟୀ ମୂର୍ତ୍ତିକୁ ଅନ୍ତରରୁ ବିଦାୟ ଦେଇ, ତାର ସଂହାରମୂର୍ତ୍ତିର ପ୍ରକୋପ ଉପଶାନ୍ତ କରିବା ନିମନ୍ତେ ଜୀବନର ସର୍ବସ୍ୱ ତ୍ୟାଗ କରିଅଛନ୍ତି । ବନ୍ୟା ପ୍ରପୀଡ଼ିତ ଅଞ୍ଚଳର ଲୋକମାନଙ୍କର ଅଶ୍ରୁ ସହିତ ନିଜର ଅଶ୍ରୁପ୍ରବାହ ମିଶାଇଦେଇ ସେହିମାନଙ୍କ ସେବାରେ ଆତ୍ମନିୟୋଗ କରିଅଛନ୍ତି । ସେଠାରେ ଈଶ୍ୱରପ୍ରୀତି ଓ ମାନବପ୍ରୀତି ମଧ୍ୟରେ କୌଣସି ଭେଦ ନାହିଁ । ବସ୍ତୁତଃ ଓଡ଼ିଶାର ବନ୍ୟା-ସମସ୍ୟା ଦୂରକରିବା ନିମନ୍ତେ ଗୋପବନ୍ଧୁଙ୍କର ଆପ୍ରାଣ ଉଦ୍ୟମ ଇତିହାସରେ ଅବିସ୍ମରଣୀୟ ।

ତାଙ୍କର ଜୀବନ ଯେପରି ଏହି ନଦୀର ସଂସ୍ପର୍ଶରେ ମହୀୟାନ୍ ହୋଇ ଉଠିଛି । ତେଣୁ ତାଙ୍କ କବିତାରେ ନଦୀମାନଙ୍କର ଅବତାରଣାର ଏତେ ପ୍ରାଧାନ୍ୟ ଓ ପ୍ରାଚୁର୍ଯ୍ୟ ।

## ନଦୀକଳ୍ପ

ଗୋପବନ୍ଧୁଙ୍କ କବିତାରେ ନଦୀର ଏ ଅବତାରଣାର ପୃଷ୍ଠଭୂମି କ'ଣ ? ଆର୍ଯ୍ୟ ସଂସ୍କୃତିର ପରମ୍ପରାରେ ତାଙ୍କର ଜୀବନ ଗଢ଼ା । ଗୋପବନ୍ଧୁ ନବୀନ ଯୁଗର ଭାବଧାରାରେ ପୁଷ୍ଟପୋଷକ ହେଲେ ମଧ୍ୟ ଭାରତୀୟ ସଂସ୍କୃତିର ବୈଭବରେ ବିଭବବାନ୍ । ଯାହା ଆମର ଥିଲା, ତାକୁ ସେ ଛାଡ଼ିବାକୁ ଅନିଚ୍ଛୁକ । ଏଥିପାଇଁ

କିଏ କହିବାକୁ ଯାଉନାହିଁ ଯେ ବୈଦିକ ଋଷିମାନେ ସରସ୍ୱତୀ ନଦୀକୁ ସ୍ତୁତି କରୁଥିଲେ ବୋଲି ଗୋପବନ୍ଧୁ ସେହି ପରମ୍ପରାର ପ୍ରରୋଚନାରେ ତାଙ୍କର ନଦୀସମ୍ପର୍କିତ କବିତାଗୁଡ଼ିକ ଲେଖିଅଛନ୍ତି । ନଦୀ ସହିତ କେବଳ ଗୋପବନ୍ଧୁଙ୍କର ନୁହେଁ, ଅନ୍ୟାନ୍ୟ କବି ଓ ଭାବୁକମାନଙ୍କର ଏ ସମ୍ପର୍କର କାରଣ କ'ଣ ? ନଦୀର ଦୁଇଟି ଗୁଣ !—ଏହାର ଚିରନ୍ତନ ସ୍ଥିତି ଓ ଏହାର ପ୍ରବହମାନତା । ସ୍ଥିତି ଓ ଗତି ମଧ୍ୟ ମାନବଜୀବନର ଲକ୍ଷଣ । ମନୁଷ୍ୟ ରହିଛି ଓ ଚିରକାଳପାଇଁ ରହିବ, ଜୀବନ ମରଣ-ସ୍ରୋତର ବିରାମ ନାହିଁ; କିନ୍ତୁ ମାନବ-ଜୀବନ ସ୍ଥାଣୁ ନୁହେଁ, ଏହା ପ୍ରଗତିଶୀଳ । ଏ ଜୀବନ ମଧ୍ୟ କେବଳ ଭୌତିକ ବିକାଶ ଓ ବିବର୍ତ୍ତନରେ ସନ୍ତୁଷ୍ଟ ନୁହେଁ, ବିଶୁଦ୍ଧ ସୌନ୍ଦର୍ଯ୍ୟବୋଧ ମନୁଷ୍ୟର ଏକ ସହଜାତ ପ୍ରବୃତ୍ତି । ସେ ଚିରକାଳ ସୁନ୍ଦରର ଉପାସକ; ତେଣୁ ଯେଉଁଠାରେ ଅଛି ଚିରନ୍ତନ ମଙ୍ଗଳମୟ ସୌନ୍ଦର୍ଯ୍ୟ, ଜୀବନର ପୂର୍ଣ୍ଣତାର ସଙ୍କେତ ଓ ଆତ୍ମାର ପରମ ପରିତୃପ୍ତି ତୀବ୍ର ଅନୁଭୂତିସମ୍ପନ୍ନ କବି ଓ ଭାବୁକମାନେ ଯୁଗ ଯୁଗ ଧରି ସେଥିପ୍ରତି ଆକୃଷ୍ଟ ହୋଇଅଛନ୍ତି । ତାହାକୁ ପୂଜାର ଅର୍ଘ୍ୟ ନିବେଦନ କରିଅଛନ୍ତି । ବୈଦିକ ଯୁଗରେ ସରସ୍ୱତୀ କେବଳ ନଦୀରୂପେ ନୁହେଁ—ଦେବୀରୂପେ ମଧ୍ୟ ପୂଜିତ ହେଉଥିଲେ । ଭାରତୀୟ ଆର୍ଯ୍ୟମାନଙ୍କ ଦୃଷ୍ଟିରେ ସରସ୍ୱତୀ ଗୋଟିଏ ପବିତ୍ର ତୀର୍ଥ । ଗୋଟିଏ ପଟରେ ସରସ୍ୱତୀ, ଅନ୍ୟ ପଟରେ ଦୃଷଦ୍‌ବତୀ ଏହି ଦୁଇ ଦେବନଦୀର ମଧ୍ୟବର୍ତ୍ତୀ ଭୂଖଣ୍ଡକୁ ବ୍ରହ୍ମାବର୍ତ୍ତ କୁହାଯାଉଥିଲା । 'ମନୁସଂହିତା'ରେ ଉଲ୍ଲେଖ ଅଛି "ସ୍ୱଂ ସ୍ୱଂ ଚରିତଂ ଶିକ୍ଷେରନ୍ ପୃଥିବ୍ୟାଂ ସର୍ବମାନବାଃ"—ସେହି ଭୂଖଣ୍ଡର ଅଧିବାସୀମାନେ ପୃଥିବୀର ଲୋକମାନଙ୍କର ଶିକ୍ଷା, ଧର୍ମ ଓ ଆଚାର ବ୍ୟବହାରର ଆଦର୍ଶ ସ୍ୱରୂପ ଥିଲେ । ଏହି ନଦୀର ପବିତ୍ର ତଟରେ କେତେ ଯେ ଯଜ୍ଞ ଅନୁଷ୍ଠିତ ହୋଇଅଛି, ତାହାର କଳନା ନାହିଁ । ଭାରତୀୟ ସଭ୍ୟତାର ଅକ୍ଷୟ କୀର୍ତ୍ତିସ୍ତମ୍ଭ 'ମହାଭାରତ' ଏହି ସରସ୍ୱତୀକୂଳରେ ରଚିତ ହୋଇଥିଲା । ବୈଦିକ ମନ୍ତ୍ରସମୂହର ଆବିର୍ଭାବ ଏହି ପରମ ପବିତ୍ର ସରସ୍ୱତୀତଟରେ । ତେଣୁ ସରସ୍ୱତୀ ନଦୀର ପ୍ରଭାବ ଆମ ସଂସ୍କୃତି ଉପରେ ସୁଦୂରପ୍ରସାରୀ ଓ କଲ୍ୟାଣବାହୀ । ସରସ୍ୱତୀ, ସିନ୍ଧୁ, ବ୍ରହ୍ମପୁତ୍ର ଓ ଗଙ୍ଗା, ଏ ସକଳ ଯେପରି ଭାରତବର୍ଷର ଅତୀତ, ସଂସ୍କୃତି ଓ ଜୀବନଧାରାର ମୂର୍ତ୍ତିପ୍ରବାହ । କବିପାଣି ଜଓ୍ୱାହରଲାଲ ନେହେରୁଙ୍କ ସ୍ମୃତି-କୋଷର ଏହି ନଦୀଗୁଡ଼ିକ ପ୍ରତ୍ୟେକ ଗୋଟିଏ ଗୋଟିଏ ଅମୂଲ୍ୟ ଅକ୍ଷୟ ମୁକ୍ତାଫଳ । ଗଙ୍ଗାନଦୀ ସମ୍ବନ୍ଧରେ ସେ ଲେଖିଅଛନ୍ତି, ଅବଶେଷରେ ଗଙ୍ଗା, ଅନ୍ୟାନ୍ୟ ସମସ୍ତ ନଦନଦୀଠାରୁ ଗଭୀରତରଭାବରେ ଭାରତର ହୃଦୟକୁ ଜୟ କରିଅଛି । ଇତିହାସର ବ୍ରାହ୍ମମୁହୂର୍ତ୍ତରୁ ଅଗଣିତ ନରନାରୀଙ୍କୁ ଏହା ତୀବ୍ରଭାବରେ ଆକର୍ଷଣ କରିଅଛି । ଗଙ୍ଗାର କାହାଣୀ ଗୋମୁଖୀଠାରୁ ସାଗରସଙ୍ଗମ ଅବଧି, ପ୍ରାଚୀନ କାଳରୁ ଅର୍ବାଚୀନ କାଳ ଅବଧି, ଭାରତବର୍ଷର ସଭ୍ୟତା ଓ ସଂସ୍କୃତିର

କାହାଣୀ, ସାମ୍ରାଜ୍ୟର ଉତ୍ଥାନ ପତନର କାହାଣୀ, ମହତୀ ନଗରସମୂହର କାହାଣୀ, ଭାରତୀୟ ଋଷିମାନଙ୍କର ଆଧ୍ୟାତ୍ମ-ଯାତ୍ରାର କାହାଣୀ, ପତନ ଅଭ୍ୟୁଦୟ ବନ୍ଧୁର ପଥର କାହାଣୀ, ଜରା ଓ ଜୀବନର ଏବଂ ଜନ୍ମ ଓ ମୃତ୍ୟୁର କାହାଣୀ ।" ତେଣୁ ନିଜ ଶରୀରର ଭସ୍ମାବଶେଷରୁ ମୁଠିଏ ସେ ଗଙ୍ଗାବକ୍ଷରେ ବିସର୍ଜନ କରିବାକୁ ମୃତ୍ୟୁ ପୂର୍ବରୁ ଦେଶବାସୀଙ୍କୁ ନିବେଦନ କରି କହିଥିଲେ "......as my last homage to India's cultural inheritance, I am making the request that a handful of my ashes be thrown into the Ganges at Allahabad to be carried to the great Ocean that washes India's shore" ଭାରତର ଧାତ୍ରୀପୃଷ୍ଠରେ ନିଜକୁ ନିବିଡ଼ଭାବରେ ମିଶାଇଦେବା ନିମନ୍ତେ ମୃତ୍ୟୁପୂର୍ବରୁ ନେହରୁଙ୍କର ଏହି ଯେଉଁ ବ୍ୟାକୁଳ କାମନା ତାହା ବହୁ ପୂର୍ବରୁ ହଜାରିବାଗ ଜେଲରେ ଗୋପବନ୍ଧୁଙ୍କର ହୃଦୟକୁ ଉଦ୍‌ବେଳିତ କରି ଆତ୍ମପ୍ରକାଶ କରିଥିଲା । ସ୍ୱାଧୀନତା-ଯଜ୍ଞରେ ନିଜକୁ ବଳିଦେଇ ଅନ୍ୟମାନଙ୍କୁ ସେହିପରି ଆତ୍ମୋତ୍ସର୍ଗର ମନ୍ତ୍ରରେ ଦୀକ୍ଷିତ କରିବା ଉଦ୍ଦେଶ୍ୟରେ ସେ ବନ୍ଦୀର ଆତ୍ମକଥାରେ ଲେଖିଥିଲେ ।

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।"

ନେହରୁଙ୍କ ସମଧର୍ମୀ ଓ ଦେଶସମର୍ପିତଚିତ୍ତ ସେହି ଗୋପବନ୍ଧୁଙ୍କ ଉପରେ ସରସ୍ୱତୀ, ଓଡ଼ିଶାର କାଠଯୋଡ଼ି ଓ ମହାନଦୀ ଭାରତୀୟ ତଥା ଉତ୍କଳୀୟ ସଂସ୍କୃତି ଓ ଜୀବନଧାରାର ମୂର୍ତ୍ତି-ପ୍ରବାହରୂପେ ସୁଦୂରପ୍ରସାରୀ ପ୍ରଭାବ ବିସ୍ତାରକରି-ଅଛନ୍ତି । ଯୌବନର ଆଦ୍ୟ ଉନ୍ମେଷରେ ସେ ଯେପରି ପ୍ରାଚୀନ ଭାରତର ପୁଣ୍ୟତୋୟା ସରସ୍ୱତୀଙ୍କୁ ଆବାହନ କରି ଲେଖିଅଛନ୍ତି—

"ଅନଳେ ଆହୁତିଧାରା କରି ବରଷଣ
ପୂତନୀରା ସରସ୍ୱତୀ ପୁଳିନ ପ୍ରଦେଶେ
ଗାଇଲେ ସଙ୍ଗୀତ ଯେବେ ଆର୍ଯ୍ୟ ଋଷିଗଣ
ଚୁମ୍ବିଥିଲୁ ତହିଁ ମାତଃ କି ଶୁଦ୍ଧ ସୁବେଶେ" ।

ସେହିପରି ରାଜନୈତିକ ଜୀବନର ଜଞ୍ଜାଳରେ ଜଡ଼ିତହୋଇ ହଜାରିବାଗ ଜେଲର ପ୍ରାଚୀର ଚତୁଷ୍କୋଣର ନିର୍ମମ ବେଷ୍ଟନୀ ମଧ୍ୟରେ ମଧ୍ୟ 'କଲ୍ଲୋଳଦୋହଳା ଗଙ୍ଗା' ମହାନଦୀକୁ ସ୍ତୁତିର ନୈବେଦ୍ୟ ଅର୍ପଣ କରିବାକୁ ଯାଇ ଲେଖିଅଛନ୍ତି:—

"ଉଦ୍‌ବେଗ ବାଧାନା . କରିଥିବ ସିନା
ଉପେକ୍ଷି ନ ଥିବ, ତା ସମାଦର
ଯେ ଯେତେ କର୍ମଠ କରେ କ୍ଷଣେ ମଠ
ପ୍ରେମପାଶୁଁ ହେବାବେଳେ ଅନ୍ତର ।
ଫୁଲି ଉଠିଥିବ ମହାନଦୀ ବକ୍ଷ
ଜମି ଉଠିଥିବ ଲହରୀହାର,
ପଠା ଝଡ଼ପନ୍ତ ଥିବେ ମଥା ପୋତ
ମୃଦୁହାସେ ଦେଖି ଅଙ୍ଗ ବିକାର ।"

କୈଶୋରରେ ସେହି ନଦୀପ୍ରକୃତି ମଧ୍ୟ ଦେଖା ଦେଇଥିଲା ବାଲ୍ୟ-ଜୀବନର ମମତାମୟୀ ସଙ୍ଗିନୀରୂପେ ।

"ଦେଖି ନାହିଁ ମୁଁ ମାତୃବଦନ
ପାନ କରି ନାହିଁ ମାତୃସ୍ତନ
ହୋଇଣି ସଦୟ ଦେଇ ନିଜ ପୟ
ବଞ୍ଚାଇଲୁ ମୋ ଶିଶୁ-ଜୀବନ, ଲୋ ତଟିନୀ ।"

ଗୋପବନ୍ଧୁଙ୍କ ସୌନ୍ଦର୍ଯ୍ୟସ୍ପୃହା ତାଙ୍କର ସହଜାତ ଧର୍ମ । ଏ ସୌନ୍ଦର୍ଯ୍ୟବୋଧ ସତ୍ୟ ଓ ଶିବ ସହିତ ନିବିଡ଼ଭାବରେ ଜଡ଼ିତ । କେବଳ ନଦୀର ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖି ସେ ବିମୁଗ୍ଧ ନୁହନ୍ତି । କେବଳ ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଆଶ୍ରୟ-କରି କୌଣସି ଦେଶର ସାହିତ୍ୟରେ ଉଚ୍ଚକୋଟିର ନିସର୍ଗ କବିତା ସୃଷ୍ଟି-ହୋଇନାହିଁ । ଯେଉଁଠାରେ କେବଳ ପ୍ରକୃତିର ବିଚିତ୍ର ସୌନ୍ଦର୍ଯ୍ୟର ବର୍ଣ୍ଣନା କବିଙ୍କର ଏକମାତ୍ର ଲକ୍ଷ୍ୟ, ତାହା ବିଚିତ୍ରଧର୍ମୀ, ଭାବଧର୍ମୀ ନୁହେଁ । ପ୍ରକୃତି ଯଦି କବିପ୍ରାଣରେ ନବ ନବ ମହାସ୍ୱାନ କଲ୍ୟାଣଧର୍ମୀ ଭାବର ଉଦ୍ରେକ ନ କଲା, କବି ଯଦି ନିଜର ଭାବ-ଭାବନା ଆବେଗ ଉଚ୍ଛ୍ୱାସ ଓ ପ୍ରାଣର ସୁକୁମାର ସ୍ପନ୍ଦନର ପ୍ରତିଛବି ପ୍ରକୃତି ମଧ୍ୟରେ ଦେଖି ନ ପାରିଲା, ପ୍ରକୃତି ସହିତ ସେ ଯଦି ନିବିଡ଼ ଏକାତ୍ମତା ଲାଭ ନ କଲା, ଜଡ଼-ପ୍ରକୃତିରେ ଯଦି ମାନବହୃଦୟର ପ୍ରତିକୃତି ନ ଦେଖିଲା ଏବଂ ସର୍ବଶେଷରେ ନିଜ ମନର ମାଧୁରୀରେ ଯଦି ଏ ବର୍ଣ୍ଣନା ଅନୁରଞ୍ଜିତ ନ ହେଲା ତେବେ ସେ ନିସର୍ଗ କବିତାର ମୂଲ୍ୟ କ'ଣ ?

ଗୋପବନ୍ଧୁ କାଠଯୋଡ଼ି ନଦୀକୁ କେନ୍ଦ୍ରକରି ତିନୋଟି ନିସର୍ଗ କବିତା ରଚନା କରିଅଛନ୍ତି । କାଠଯୋଡ଼ିର ସାୟଂକାଳୀନ ଓ ନିଶୀଥ ଦୃଶ୍ୟ ତାଙ୍କ କବିପ୍ରାଣକୁ ସମ୍ମୋହିତ କରିଅଛି । ସେ କାଠଯୋଡ଼ିର ସାନ୍ଧ୍ୟ ସୌନ୍ଦର୍ଯ୍ୟରେ

ଯେତେ ବିମୋହିତ ନୁହନ୍ତି, ତାହାଠାରୁ ଅଧିକ ବିସ୍ମିତ ଓ ଉଲ୍ଲସିତ ଏହାର ବିଶାଳପ୍ରାଣତାରେ, ଏହାର ହୃଦୟର ପ୍ରସାରଶୀଳତାରେ, ଏହାର ପ୍ରଶାନ୍ତ ଓ ଗମ୍ଭୀର ରୂପରେ, ଯାହା ତାଙ୍କ ଜୀବନସାଧନାର ଏକ ମହାମନ୍ତ୍ରରେ ଅଭିମନ୍ତ୍ରିତ କରିଛି । ସେ ନିଜେ କାଠଯୋଡ଼ିରେ ଦେଖିଛନ୍ତି, ନିଜ ଜୀବନର ଆଦର୍ଶ ଏବଂ ନିଜ ଜୀବନର ଦର୍ଶନକୁ ସ୍ଥିରତର ଓ ଦୃଢ଼ତର କରିଛି ଏହି କାଠଯୋଡ଼ି; ଏଠାରେ କାଠଯୋଡ଼ି ଓ କବି ଗୋପବନ୍ଧୁଙ୍କ ମାନସମଧ୍ୟରେ କୌଣସି ବ୍ୟବଧାନ ନାହିଁ । କାଠଯୋଡ଼ି ତାଙ୍କର ଆଧ୍ୟାତ୍ମିକ ଚେତନାକୁ ଯେପରି ଉଦ୍ଦୀପିତ କରିଅଛି, ସେହିପରି ତାଙ୍କର ସାର୍ବଜନୀନ ମାନବତାଧର୍ମକୁ ପରିପୁଷ୍ଟ କରିଅଛି । ବ୍ରାହ୍ମଣ, ଚଣ୍ଡାଳ, ଧନେଶ ଓ ଭିଖାରି ଏ ସମସ୍ତେ ଯେ ସମାନ ଏହା କେବଳ ଗୋପବନ୍ଧୁଙ୍କର ଏକ ସାମାଜିକ କିମ୍ବା ରାଜନୈତିକ ଚିନ୍ତା ନୁହେ—ଏହାହିଁ ତାଙ୍କର ବ୍ୟାପକ ଧର୍ମଭାବ । ଏ ଧର୍ମଭାବ ସେ କାଠଯୋଡ଼ିଠାରୁ ଶିକ୍ଷା କରିନାହାନ୍ତି । ଏହା ତାଙ୍କର ଯେପରି ପ୍ରାକ୍ତନ ବିଭବ, ପୂର୍ବଜନ୍ମସଞ୍ଚିତ ଗୌରବପରମ୍ପରା । ସେହି ଧର୍ମଭାବ ମନୁଷ୍ୟର ମଙ୍ଗଳ-ସାଧନର ଅଦମ୍ୟ ପ୍ରବୃତ୍ତି ସହିତ ଯାହା ଅବିଚ୍ଛେଦ୍ୟଭାବରେ ସମ୍ପୃକ୍ତ, ସେହି ମହତ୍ତମ ଭାବର ପ୍ରତିବିମ୍ବ ସେ ଦେଖିପାରିଛନ୍ତି, କାଠଯୋଡ଼ିର ସାୟଂକାଳୀନ ସୌନ୍ଦର୍ଯ୍ୟମଧ୍ୟରେ । ମହତ୍ ଜନର ପ୍ରଭାବକୁ ଉପେକ୍ଷା କରିବାର ଶକ୍ତି କାହାରି ନାହିଁ; ଯେଉଁ ହୃଦୟରେ ମହତ୍ତ୍ୱର ବୀଜ ଶୈଶବରୁ ଉପ୍ତ, ମହତ୍ତ୍ୱ ଚିନ୍ତା ବ୍ୟତୀତ ଅନ୍ୟ ସାଂସାରିକ ତୁଚ୍ଛାତିତୁଚ୍ଛ ଚିନ୍ତା ଯାହାକୁ ସ୍ପର୍ଶ କରିନାହିଁ, ସେହିପରି କବି କେବଳ କାଠଯୋଡ଼ିକୁ ଲକ୍ଷ୍ୟ କରି ଲେଖିପାରେ—

> "କୃଷ୍ଣମେଘେ ପଡ଼ି କନକ କିରଣ
> ସୃଜିଛି ଆହା କି ବିଚିତ୍ର ବରଣ
> ଏପରି ମହତ ଜନର ପ୍ରଭାବ
> ଜନ୍ମାଏ ଅପର ପ୍ରାଣେ ନିଜଭାବ ।"

ସାନ୍ଧ୍ୟ ଗଗନର ବିଚିତ୍ର ଶୋଭା ପ୍ରତିଫଳିତ ହେଲା କାଠଯୋଡ଼ି ବକ୍ଷରେ । କବି ଏହି ଅପରୂପ ବର୍ଣ୍ଣନା ବିସ୍ତାରିତଭାବରେ ଏଠାରେ ଦେଇନାହାନ୍ତି । କବି ଚିତ୍ର-ଧର୍ମୀ ନୁହନ୍ତି, ସଙ୍ଗୀତଧର୍ମୀ ନୁହନ୍ତି, ଭାବଧର୍ମୀ । ଗଗନର ବିଚିତ୍ର ଶୋଭା ନଦୀଜଳରେ ପ୍ରତିବିମ୍ବିତ ହେବାର ଦେଖି ସେ ଭାବରେ ବିହ୍ୱଳ ହୋଇପଡ଼ିଛନ୍ତି, ଭାବ ଉଦ୍ବୁଦ୍ଧ ହୋଇଛନ୍ତି, ଗୋଟିଏ ହୃଦୟରେ ଏତେ ବିଚିତ୍ର ଭାବ-ରାଜିର ସମନ୍ୱୟ ଦେଖାଯାଏ କିପରି ? ଜଣେ କିପରି ଶତଶତ ଲୋକଙ୍କର କଥା ଭାବିପାରେ, କେବଳ ଭାବେ-ନାହିଁ, ସେମାନଙ୍କର ସୁଖ ଦୁଃଖ, ଆଶା-ନୈରାଶ୍ୟ ସହିତ ନିଜକୁ ଏକାକାର କରି-ଦିଏ, ଏହା ହୁଏ ସମ୍ଭବ କେବଳ ତାହାରିଠାରେ, ଯାହାର ଅନ୍ତର ପ୍ରେମଭାବରେ

ପରିପୂରିତ, ଯେ ଉଦାରଦର୍ଶୀ ଯେ ସ୍ଥିତପ୍ରଜ୍ଞ, ଓ 'ସର୍ବଭୂତହିତେରତଃ' ଯେ ବିଶ୍ୱକୁ ନିଜ ମଧ୍ୟରେ ଦେଖେ ଏବଂ ନିଜକୁ ବିଶ୍ୱମଧ୍ୟରେ ଦେଖେ, ଯେ ବିଭକ୍ତହୋଇ ମଧ୍ୟ ଅବିଭକ୍ତ, ଯେ ଏକ ହୋଇ ମଧ୍ୟ ବହୁ, ଯେ ସୀମା ମଧ୍ୟରେ ଥାଇ ମଧ୍ୟ ଅସୀମର ଉପାସକ । ଏହାହିଁ ଅବକାଶ ଚିନ୍ତାରେ ଗୋପବନ୍ଧୁଙ୍କ ଜୀବନର ମର୍ମବାଣୀ, ତେଣୁ ସାହିତ୍ୟଗଗନର ବିଚିତ୍ର ଛବିରେ ମୁଗ୍ଧମାନବ ତା କାଠଯୋଡ଼ିକୁ ଲକ୍ଷ୍ୟକରି ସେ ଲେଖି ଅଛନ୍ତି —

'ମହତ ଜନର ହୃଦେ ଏହି ମତି
ଆହେସେ ସତତ ଶାନ୍ତି-ପ୍ରତିକୃତି
ପ୍ରେମ-ନୀରେ ଯାର ଅନ୍ତର ପୂରିତ
ସର୍ବ-ପ୍ରାଣିବୃନ୍ଦ ତା ହୃଦେ ଅଙ୍କିତ,
ସର୍ବ-ଅନୁଭୂତ ସର୍ବଭୂତେ ତା'ର,
ତା ଦୃଷ୍ଟିରେ ବିଶ୍ୱ ଏକ ପରିବାର ।
ସେହି ନିଜେ ବିଶ୍ୱ ବିଶ୍ୱମଧ୍ୟେ ସେହି,
ଅନ୍ୟ ହୋଇ ତା'ର ଆଉ କେହି ନାହିଁ ।'

ନବଯୌବନର ଆବିର୍ଭାବ ମାତ୍ର । ସେହି ଚପଳ ଚଞ୍ଚଳ ଲୋଲ ବୟସରେ ସଂସାରର ଶତ ସହସ୍ର କାମନା ବାସନାକୁ ଦୂରକୁ ଠେଲିଦେଇ, ବିଶ୍ୱପ୍ରୀତିରୂପକ ମହାର୍ଣ୍ଣବରେ ଉଦ୍‌ବେଳ ହେବା, ଏବଂ ଜଳ, ସ୍ଥଳ, ଆକାଶ ଓ ପବନ ସର୍ବତ୍ର ସେହି ଭାବର ପ୍ରତିରୂପ ଦେଖି ଜୀବନର ଆଦର୍ଶକୁ ଅଟଳ ଓ ଧ୍ରୁବ କରି ରଖିବାର ଏ ଯେଉଁ କଳ୍ପନା କିମ୍ବା ଭାବ-ପ୍ରବଣତା, ତାହା ଗୋପବନ୍ଧୁଙ୍କ ସମସାମୟିକ କେଉଁ କବିଙ୍କ ଲେଖନୀରେ ଏପରି ପ୍ରକାଶ ପାଇଥିଲା ? ଏ କ'ଣ କେବଳ କେତେକ ନୀତି ଉପଦେଶର ଶୁଷ୍କ ସମାରୋହ ? ଏ କ'ଣ ନିଜର ଶ୍ରେଷ୍ଠତ୍ୱ କିମ୍ବା ଅହମିକା ପ୍ରଦର୍ଶନର ଛଳନା ? ଏହା ଯଦି କେବଳ କାବ୍ୟ-ଜଗତରେ ସୀମାବଦ୍ଧ ହୋଇ ରହିଥାନ୍ତା, ତେବେ ଆମେ ଧରିନିଅନ୍ତୁ, ଏ କେବଳ ଯୁବଜନ-ସୁଲଭ ଚପଳତା । ନିଜକୁ ଖୁବ୍ ବଡ଼ ମନେକରି ଅନ୍ୟମାନଙ୍କ ସମ୍ମୁଖରେ ନିଜର ଉତ୍କର୍ଷ ପ୍ରତିପାଦନ କରିବାର ଅପଚେଷ୍ଟା; କିନ୍ତୁ ତାଙ୍କର ଭବିଷ୍ୟତ ଜୀବନର କର୍ମ-ଧାରା ସହିତ ଏହି ସାର୍ବଜନୀନ ପ୍ରେମତତ୍ତ୍ୱକୁ ମିଳାଇ ମିଶାଇ, ପରୀକ୍ଷା ନିରୀକ୍ଷା କରି ଦେଖିଲେ କିଏ ଅସ୍ୱୀକାର କରିବ, ଏହି ବିଶ୍ୱପ୍ରୀତିହିଁ ତାଙ୍କର ମୌଳିକ ଜୀବନ-ଧର୍ମ ? ଏ ଉପଲବ୍ଧି ତାଙ୍କର ସହଜାତ ? ଏହି ଉପଲବ୍ଧିର ସେତେବେଳେ ବିକାଶୋନ୍ମୁଖ ଅବସ୍ଥା । ଯାହାହିଁ ଉପଲବ୍ଧି ତାହାର ସରଳ ସୁନ୍ଦର ଅନାଡ଼ମ୍ବର ଅଭିବ୍ୟକ୍ତି ଏଠାରେ ଲକ୍ଷ୍ୟକରିବାର କଥା । ଆହୁରି ଲକ୍ଷ୍ୟ କରିବାର କଥା, ଏହା କବିଙ୍କର ବ୍ୟକ୍ତିଗତ ଭାବ-ବିଳାସ ମାତ୍ର ନୁହେଁ ।

ବ୍ୟଷ୍ଟି ଓ ସମଷ୍ଟିର ଅଚ୍ଛେଦ୍ୟ ମିଳନରେ ଏହି 'କାଠଯୋଡ଼ିତୀରେ ସାୟଂକାଳ' କବିତାଟି ଅପରୂପ, 'ଅନବଦ୍ୟ' ସର୍ବଜନଗ୍ରାହ୍ୟ ଓ ଚିତ୍ତୋଦ୍ଦୀପକ । ଏହା ସହୃଦୟ-ହୃଦୟାହ୍ଲାଦକାରୀ, ଏହା ଆନନ୍ଦମୟ, ତେଣୁ ଅମୃତମୟ ।

ସୂର୍ଯ୍ୟଙ୍କର ଅସ୍ତାଚଳଗମନରେ କବି ସଂସାରର କ୍ଷଣଭଙ୍ଗୁରତା ଦେଖି ଦୁଃଖ ପ୍ରକାଶ କରିଛନ୍ତି; କିନ୍ତୁ ସେ ଅନ୍ଧାରରେ ବୁଡ଼ି ରହିବାପାଇଁ ଜନ୍ମ ହୋଇନାହାନ୍ତି । ଶ୍ରୀହରିଙ୍କୁ ଜୀବନର ଏକମାତ୍ର ଶରଣ କରି ସେ କର୍ମମୟ ଜୀବନପଥରେ ଅଗ୍ରସର ହେବାକୁ ସଙ୍କଳ୍ପବଦ୍ଧ ।

'କାଠଯୋଡ଼ିତୀରେ ସାୟଂକାଳ' ଶୀର୍ଷକ ଦ୍ୱିତୀୟ କବିତାରେ କବିଙ୍କର ବର୍ଣ୍ଣନାପରିପାଟୀ ପ୍ରକୃତିର ଚିତ୍ରକର ଯେ କୌଣସି ନିପୁଣ ଓ ପ୍ରବୀଣ କବିଙ୍କୁ ଧିକ୍କାର ଦେବ । କାଠଯୋଡ଼ିର ଏହି ଅବସ୍ଥା ଦେଖି କବିଙ୍କର ଧର୍ମଭାବ ଉଚ୍ଛ୍ୱସିତ ହୋଇ ଉଠିଛି । ବିଶ୍ୱ-ବିଧାତାଙ୍କର ବିଚିତ୍ର ଲୀଳା ଚିନ୍ତାକରି ତାଙ୍କ ମନରେ ପବିତ୍ର ଭାବର ଉଦ୍ରେକ ହୋଇଅଛି । ପ୍ରାଣରେ ଗମ୍ଭୀର ଔଦାର୍ଯ୍ୟ ପ୍ରକଟିତ ହୋଇଅଛି ।

କିନ୍ତୁ ବିଶ୍ୱବିଧାତାଙ୍କର ଏହି ବିଚିତ୍ର ଲୀଳା କବିଙ୍କୁ କେବଳ ଭକ୍ତିବିହ୍ୱଳ କରିନାହିଁ । ସେ ଏହି ସବୁ ଦୃଶ୍ୟ ଦେଖି ସଂସାରକୁ ସମ୍ପୂର୍ଣ୍ଣ ଭୁଲିଯାଇନାହାନ୍ତି । କାଠଯୋଡ଼ିର ନବ ନବ ରୂପ ଓ ଚପଳତା ଦେଖି ତାଙ୍କ ସମୟର ନାରୀମାନଙ୍କ କଥା ତାଙ୍କ ମନକୁ ଆସିଛି ।

> 'ନିତି ନିତି ଦେଖି ତୋ ତୀରେ ନବ ଛବି ପଟଳ
> ଜାଣିଲି ସ୍ୱଭାବେ କାମିନୀ-ହୃଦ ଅତି ଚପଳ ।
> ହେଉ ପଛେ ଯେତେ ମାନିନୀ ଗୁଣବତୀ ଯୁବତୀ
> ନବ ନବ ବେଶଭୂଷଣେ ସଦା ବଳାଏ ମତି ।
> ସୁଦୃଢ଼ ଗମ୍ଭୀର ନୁହଇ ଯେଣୁ ନାରୀ ହୃଦୟ,
> ତେଣୁ ସିନା ନରେ ଅଟନ୍ତି ନାରୀ ଜାତିଆଶ୍ରୟ ।'

ନାରୀଜାତିସମ୍ବନ୍ଧରେ ଗୋପବନ୍ଧୁଙ୍କର ଏ ଧାରଣାକୁ ଏ ଯୁଗର ଅତ୍ୟାଧୁନିକା ନାରୀମାନେ କିପରିଭାବରେ ସ୍ୱାଗତ କରିବେ, ତାହା ଭିନ୍ନ କଥା । ଯୁଗ ଅନୁସାରେ ରୁଚି ବଦଳେ । ଏହି ପରିବର୍ତ୍ତିତ ରୁଚିବୋଧ ଦେଇ ନିକଟ କିମ୍ବା ସୁଦୂର ଅତୀତରେ କବିମାନଙ୍କର ଚିନ୍ତାଧାରାକୁ ସମାଲୋଚନା କରିବା କେତେଦୂର ସମୀଚୀନ ତାହା ବିଚାରିବାର କଥା । ନର ନାରୀଙ୍କର ପ୍ରକୃତି ଭିନ୍ନ । ଏ ଭିନ୍ନତାକୁ ନିଶ୍ଚିହ୍ନ କରିବାର

ଶକ୍ତି ମନୁଷ୍ୟର ନାହିଁ । ଗୋପବନ୍ଧୁଙ୍କର ଏ ମତବାଦ ଏ ପର୍ଯ୍ୟନ୍ତ ସତ୍ୟ ଓ ଅବିଚଳିତ ରହିଛି । ଏ ଭିନ୍ନତା କିମ୍ବା ବ୍ୟବଧାନ ଦୂରକରିବା ନିକଟ ଭବିଷ୍ୟତରେ ସମ୍ଭବ ନୁହେଁ । ଏବେ ମଧ୍ୟ ବହୁ ଉଚ୍ଚ ଶିକ୍ଷିତା ଅତ୍ୟାଧୁନିକା ଏବଂ ପ୍ରଗତିଶୀଳା ନାରୀ ଅଛନ୍ତି, ଯେଉଁମାନେ ଆମ୍ଭମାନଙ୍କ ପରିବାରରେ ଦାମ୍ପତ୍ୟ-ଜୀବନର ବହୁ ବିଡ଼ମ୍ବନାମୟ ବିପର୍ଯ୍ୟୟ ଓ ବିଶୃଙ୍ଖଳା ଦେଖି ଗୋପବନ୍ଧୁଙ୍କର ନିମ୍ନଲିଖିତ ପଙ୍‌କ୍ତିମାନଙ୍କ ଏହାର ଯଥାର୍ଥ ମୂଲ୍ୟ ଦେବେ—

'କୁଳକାମିନୀର ଏବେ ସିନା ମନ୍ଦଗତି
ଲଜ୍ଜାବତୀ ହୋଇ କେତେ କାନ୍ତେ ଆଚରେ ପ୍ରୀତି;
ପ୍ରେମ ମଧୁରତା ବୈଦାଦ୍ଧ ସ୍ନିଗ୍ଧଭାବ ସକଳ
ତୋ ସ୍ୱଚ୍ଛ ଜୀବନେ ଦେଖାଇ ଜାଣନେଣ କେବଳ ।'

କିନ୍ତୁ 'କାଠଯୋଡ଼ିରେ ଚନ୍ଦ୍ରାଲୋକ' କବିତାର ଗଠନ-ଶିଳ୍ପ, ଭାବୋଚ୍ଛ୍ୱାସ ଓ ଚିନ୍ତା ପୂର୍ବ କବିତା ଦୁଇଟିରୁ ସମ୍ପୂର୍ଣ୍ଣ ପୃଥକ୍ । ନିଶୀଥର ନିସ୍ତବ୍ଧତା କବିଙ୍କୁ ଭାବ-ବିହ୍ୱଳ କରିପକାଇଅଛି । କ୍ଷୁଦ୍ରଚେତା ମାନବର ଅଭିମାନ, ଅହମିକା ଓ ଜାତୀୟ ବିବାଦ ଏହି ଚନ୍ଦ୍ରିକାସ୍ନାତ ନିଶୀଥରେ ତାଙ୍କ ପ୍ରାଣରେ ଗଭୀର ବେଦନାର ରେଖା ଅଙ୍କିତ କରିଦେଇଛି । ଏହି ଶୁଭ୍ର ସ୍ନିଗ୍ଧ ପରମଶାନ୍ତିମୟ ପରିବେଶ ମଧ୍ୟରେ ସେ ମାନବ-ସମାଜର ହିଂସା ଓ ଦ୍ୱେଷର ପୈଶାଚିକ ଲୀଳା ଦେଖି ବ୍ୟଥିତ ହୋଇଉଠିଛନ୍ତି । ଏହି କବିତାରେ କବି ଧ୍ୟାନ-ନିବିଷ୍ଟ । କବି ଏଠାରେ ଚିନ୍ତାଶୀଳ ଓ ଦାର୍ଶନିକ । ଯୌବନର ଉଦ୍ଦୀପନା ଓ ଚପଳତାରୁ ସେ ବହୁ ଊର୍ଦ୍ଧ୍ୱରେ । ସଂସାର ଓ ସମାଜସମ୍ବନ୍ଧରେ କବିଙ୍କର ଯେଉଁ ତିକ୍ତ ଅନୁଭୂତି, ତାହା ଏଠାରେ ରୂପାୟିତ ହୋଇଅଛି ଅତି ଗମ୍ଭୀରଭାବରେ । ଏହିଠାରେ କବି ଉପଲବ୍ଧି କରିଅଛନ୍ତି, ମାନବହୃଦୟ ସହିତ ଭଗବାନ୍ ବିଚିତ୍ର ସମ୍ବନ୍ଧ ସ୍ଥାପନ କରିଅଛନ୍ତି; କିନ୍ତୁ ମୂଢ଼ ମନୁଷ୍ୟ ସେ ସମ୍ପର୍କ ଛିନ୍ନକରିବାକୁ ନିତାନ୍ତ ବ୍ୟାକୁଳ । ନୀଚ ପ୍ରବୃତ୍ତିର ଦାସତ୍ୱ ସ୍ୱୀକାର କରିବାକୁ ସେ ଜୀବନର ପରମ ଶ୍ରେୟ ବୋଲି ମନେକରେ । ପ୍ରକୃତି ଜଡ଼ ନୁହେଁ, ସଜୀବ, ଈଶ୍ୱରଙ୍କ ମହାଶକ୍ତିରେ ପୃଥିବୀର ବାଲୁପୁଞ୍ଜ ସଂଜୀବିତ । ବିଶ୍ୱବିଧାତାଙ୍କ ଅଙ୍ଗୁଳିର ସଜୀବ ସ୍ପର୍ଶ କବି ସହଜେ ଅନୁଭବ କରିପାରିଛନ୍ତି । ତେଣୁ ଏ ସଂସାରରେ ଯେତେବେଳେ ସେ ଲଜ୍ଜା, ଘୃଣା ଓ ପ୍ରବଞ୍ଚନାର ନୀଚ ପ୍ରବୃତ୍ତିରେ ମନୁଷ୍ୟକୁ ପ୍ରପୀଡ଼ିତ ହେବାର ଦେଖିଛନ୍ତି, ସେତେବେଳେ ସେ ପ୍ରକୃତି-ରାଜ୍ୟକୁ ଚାଲି ଆସିଛନ୍ତି ପ୍ରଶାନ୍ତି ଓ ଆନନ୍ଦ ଉପଭୋଗ କରିବା ନିମନ୍ତେ; କିନ୍ତୁ ଗୋପବନ୍ଧୁ ଏପରି ପଳାୟନପନ୍ଥୀ ହେବାକୁ ଚେଷ୍ଟାକରି ମଧ୍ୟ କ'ଣ ସଂସାରବିମୁଖ ହୋଇପାରିଛନ୍ତି ?

ସେ କ'ଣ ତେବେ ଜଣେ କେବଳ କଳ୍ପନା-ବିଳାସୀ ଆତ୍ମସୁଖ-ଶାନ୍ତିପ୍ରୟାସୀ କବି ? ଏ ପଳାୟନ ଗୋପବନ୍ଧୁଙ୍କ ଚରିତ୍ରର କ୍ଷଣିକ ବିକ୍ଷେପ । ଏ ମନୋବୃତ୍ତିକର ଅବସାଦ । ସଂସାରକ୍ଷେତ୍ରରୁ ପ୍ରକୃତିର ସୁଷମା-ରାଜ୍ୟକୁ ଗୋପବନ୍ଧୁଙ୍କର ଏ ଯେଉଁ ପଳାୟନ, ତାହା ସଂସାରର ଦୁଃଖ-ଦୈନ୍ୟରେ ବିଷଣ୍ଣ ଓ ବିକ୍ଷୋଭିତ ଦୁର୍ବଳମନା ଲୋକର ପଳାୟନ ନୁହେଁ । ଏ ପଳାୟନ ଜନମଙ୍ଗଳ-ବ୍ରତର ଏକ ସାଧନମାର୍ଗ ମାତ୍ର । ଏ ବୁଡ଼ିବା ଅର୍ଥ ସକଳ ତେଜ ଓ ଶକ୍ତି ଅର୍ଜନ କରି ଅମିତ ବଳପରାକ୍ରମରେ ଉପରକୁ ଉଠିବା । ଏ ଯେପରି ଗଭୀର ଜଳରେ ବୁଡ଼ି ମୁକ୍ତା ସଂଗ୍ରହ କରିବାର କଠୋର ପ୍ରୟାସ ! ଭାବ ନ ଥିଲେ ଭାବନା କାହିଁ । ଚିନ୍ତା ନ ଥିଲେ କାର୍ଯ୍ୟ କାହିଁ । ଯାହାର ନିଜର ଚିତ୍ତଶୁଦ୍ଧି ନାହିଁ, ଆତ୍ମାର ଯୋର ନାହିଁ, ହୃଦୟରେ ସମ୍ବେଦନଶୀଳତା ନାହିଁ, କାଗରରେ ଶାନ୍ତି ନାହିଁ, ଆଦର୍ଶର ତେଜ ନାହିଁ, ସେ ସଂସାରର କି ହିତ ସାଧନ କରିବ ? ଜନମଙ୍ଗଳବ୍ରତରେ କି ସିଦ୍ଧି ଲାଭକରିବ ? ଏ ସାଧନାର ପଥ କ୍ଷୁରଧାର ପରି ଶାଣିତ ଓ ବିପଦମୟ, ଏ ପଡ଼ି ଦୁର୍ଗମ । ଏଥିପାଇଁ ମନ୍ତ୍ରର ସନ୍ଧାନ କରିବାକୁ ହେବ । ଗୀରବତାର ଉପାସନା କରିବାକୁ ହେବ । ଧ୍ୟାନତତ୍ପର ହେବାକୁ ପଡ଼ିବ । ସଂସାରରୁ ଟିକିଏ ଦୂରକୁ ଚାଲି-ଯାଇ ନିସ୍ପୃହ ନିରାସକ୍ତ ଚିତ୍ତରେ ମନୁଷ୍ୟ-ସମାଜର ଦୁଃଖ, କ୍ଳେଶ, ଅଶାନ୍ତି ଓ ଅବସାଦର କଥା ଭାବିବାକୁ ହେବ । ଦିବ୍ୟ ପ୍ରେରଣାରେ ପ୍ରେରିତ ଓ ଅନୁପ୍ରାଣିତ ହେବାକୁ ହେବ । ତେଣୁ କବି ନୀରବ ନିଶୀଥରେ କରଯୋଡ଼ି ପ୍ରତି କୃତଜ୍ଞତା ଅର୍ପଣ କରି ଲେଖିଅଛନ୍ତି—

> "ନିଭୃତେ ତୋ ତୀରେ ଆସି କଲେ ବିଚରଣ,
> କି ମୋହନମନ୍ତ୍ରେ କରୁ ସକଳ ହରଣ ।
> ବିବିଧ ସ୍ୱର୍ଗୀୟ ଚିନ୍ତା ନାନା ପ୍ରିୟଭାବ,
> କଳୁଷିତ ହୃଦେ ମୋର କରାଉ ଉଦ୍ଭବ ।
> ତୋର ପାଦମୂଳେ ମୁହିଁ ଚିରକାଳ ଋଣୀ,
> ଏକ୍ଷୁ ଭବ ଥାଉ ନିତି ହେ ସୁରତରୁଣି !"

କୈଶୋରରେ ଭାର୍ଗବୀ କବିଙ୍କର ଜନନୀ ସ୍ୱରୂପିଣୀ । ଯୌବନରେ କାଟ-ଯୋଡ଼ି ଜୀବନର ଅନ୍ତରଙ୍ଗ ବାନ୍ଧବୀ—ମହତ୍ତ୍ୱଭାବର ଉଦ୍ରେକକାରିଣୀ ଏବଂ ପ୍ରେରଣା-ଦାୟିନୀ—ଚିତ୍ତର କଳୁଷହାରିଣୀ—ସାର୍ବଜନୀନ ପ୍ରୀତିର ଆଧାରରୂପିଣୀ; କିନ୍ତୁ ମହାନଦୀ ସମଗ୍ର ଉତ୍କଳର ଧାତ୍ରୀ ଓ ଜନନୀ । ଉତ୍କଳଭୂମିକୁ ସୁଜଳା ସୁଫଳା କରିଛି ଏହି ପବିତ୍ରତୋୟା ମହାନଦୀ । ତେଣୁ ମହାନଦୀଠାରେ କବିଙ୍କର ସବୁ ଅଳଝଳ, ସବୁ ମାନ-ଅଭିମାନ । 'ବିଂଶଶତାବ୍ଦୀର ପ୍ରଥମ ଦିନରେ ବାରବାଟୀ

ଦର୍ଶନ' କବିତାରେ କବିଙ୍କର ସ୍ୱଦେଶପ୍ରୀତି ପରିସ୍ଫୁଟ । ବାରବାଟୀର ଭଗ୍ନାବଶେଷ ଦେଖି କବି-ଚିତ୍ତ ଦୁଃଖରେ ମୂହ୍ୟମାନ । ଓଡ଼ିଶାର ଅତୀତ ଗୌରବର ମୂକସାକ୍ଷୀର ଏ ଦୁର୍ଗତି ଦେଖି କବି କୈଫିୟତ-ଜର୍ଜରିତ ; କିନ୍ତୁ ବାରବାଟୀର ଏ ଦୁର୍ଦ୍ଦଶାପାଇଁ ଦାୟୀ କିଏ ? ସ୍ନେହମୟୀ ଜନନୀର ଆଖି ଆଗରେ ତା ପୁଅମାନଙ୍କର ଏ ଦୁଃଖ ଦୁର୍ଗତି ଦେଖି କବି ସ୍ତମ୍ଭୀଭୂତ ହୋଇ ପଡ଼ିଛନ୍ତି, ଜନନୀର ହୃଦୟ ଏତେ ମମତା-ବର୍ଜିତ ହୋଇପାରେ, କବି ଏହା କଳ୍ପନା କରି ପାରିନାହାନ୍ତି । ଦୁଃଖ ସହିତ ଆସିଛି କ୍ରୋଧ । କବିଙ୍କର ଆତ୍ମା ଏଠାରେ ବିଦ୍ରୋହରେ ସତେ ଯେପରି ଗର୍ଜନ କରି ଉଠିଛି । ମହାନଦୀ କାହିଁକି ଏକ ପ୍ରବଳ ଜଳୋଚ୍ଛ୍ୱାସ ସୃଷ୍ଟିକରି ବାରବାଟୀର ଧ୍ୱଂସକାରୀ ଶତ୍ରୁମାନଙ୍କୁ ସଂହାର ନ କଲା ? କିମ୍ବା ବାରବାଟୀ ଦୁର୍ଗକୁ ଉଚ୍ଛ୍ୱସିତ ଜଳ-ପ୍ରବାହରେ କାହିଁକି ସେ ନିଶ୍ଚିହ୍ନ କରି ନ ଦେଲା ? ଗୋପବନ୍ଧୁ ଚିର-ବିଦ୍ରୋହୀ । ଚେତନ ଓ ଅଚେତନ ସର୍ବତ୍ର ବିଦ୍ରୋହର ଅଗ୍ନିକଣା ସେ ବିକୀର୍ଣ୍ଣ କରିବାକୁ ଚାହୁଁଥିଲେ । ବ୍ୟକ୍ତିଗତ କିମ୍ବା ସମଷ୍ଟି ଗତ ଦୋଷ, ଦୁର୍ବଳତା ଓ କଳୁଷ ସେ ଯେଉଁ-ଠାରେ ଦେଖିଅଛନ୍ତି, ସେଠାରେ ସେ ବିଦ୍ରୋହ ପ୍ରକାଶ କରି ଅଛନ୍ତି । ତାଙ୍କର ରକ୍ଷଣ-ଶୀଳତାରେ ମଧ୍ୟ ଏହି ବୈପ୍ଳବିକ ଭାବର ଦ୍ୟୋତନା ଦେଖିବାକୁ ମିଳେ । ପ୍ରାଚୀନ ସଂସ୍କୃତି ଓ ସାମାଜିକ ଅନୁଷ୍ଠାନମାନଙ୍କରେ ସାଧୁଭାବ ଓ ସତ୍ୟନିଷ୍ଠାର ଅଭାବ ଦେଖିଲେ ସେ ମର୍ମାହତ ହେଉଥିଲେ । ପଲ୍ଲୀଜୀବନର ସରଳତା, କର୍ତ୍ତବ୍ୟ-ନିଷ୍ଠା ଓ ଧର୍ମବୋଧର କ୍ରମବିଲୋପ ଲକ୍ଷ୍ୟକରି ସେ କ୍ଷୁଣ୍ଣ ହେଉଥିଲେ । ସେହିପରି ଓଡ଼ିଶାର ଅତୀତ ଗୌରବର ଅବସାନରେ ସେ କ୍ଷୁବ୍ଧହୋଇ ମହାନଦୀକୁ ଉତ୍ତେଜନା, କ୍ରୋଧ ଓ ଅଭିମାନପୂର୍ଣ୍ଣ ସ୍ୱରରେ କହି ଅଛନ୍ତି—

"ପିଆଇ ଆପଣା ସୁଧା ସମ ପୟ,
ବଢ଼ାଇଥିଲୁ ଯେ ବୀର ଶୂରଚୟ ।
କିପରି ଦେଖିଲୁ ତାହାଙ୍କ ନିଧନ ?
ଦେଖି ପୁଣି ସତେ ପାଇଲୁ ଜୀବନ ।
ଦେଖିଲୁ କିପରି କହ ସେ ଦୁର୍ଦ୍ଦିନ !
ବାରବାଟୀ ଯେବେ ହେଲା ଶିରିହୀନ ।"

ମହାନଦୀକୁ ଅବଲମ୍ବନକରି କବିଙ୍କର ପ୍ରଗାଢ଼ ଅତୀତ ପ୍ରୀତି ତଥା ଦେଶାତ୍ମବୋଧ ଅତି ଆବେଗ-ଉଚ୍ଛ୍ୱସିତ ଭାଷାରେ ଏଠାରେ ପ୍ରକାଶ ପାଇଛି ।

ଏହି ମହାନଦୀ ପୁଣି ସମୟେ ସମୟେ କବିଙ୍କର ବିଶ୍ୱଜନୀନ ବିଶାଳ-ମନୋଭାବର ରୂପକଳ୍ପ କିମ୍ବା ପ୍ରତୀକରୂପେ ଉପସ୍ଥାପିତ ହୋଇଅଛି । ମହାନଦୀର

ମହାପ୍ରବାହ କବିଙ୍କୁ ପ୍ରେରଣା ଦେଇଛନ୍ତି ଉତ୍କଳକୁ ବିଶ୍ୱ-ଜନନୀଙ୍କ ଉଦାର ଉତ୍ସଙ୍ଗରେ ଅଧିଷ୍ଠିତ କରି ଜନ୍ମଭୂମିର ଗୌରବ ବର୍ଦ୍ଧନକରିବା ନିମନ୍ତେ । 'ସତ୍ୟବାଦୀ'ର ୧ମ ଖଣ୍ଡ ୧ମ ସଂଖ୍ୟାରେ 'ପଲ୍ଲୀପ୍ରସଙ୍ଗ' ଶୀର୍ଷକ ଆଲୋଚନାରେ ସେ ଲେଖିଥିଲେ, "ଏ ଦେଶର ସକଳ ପ୍ରକାର ଉନ୍ନତି ଓ ଅଭ୍ୟୁଦୟ ମୂଳରେ ତ୍ୟାଗୀ ସନ୍ନ୍ୟାସୀ-ମାନଙ୍କର ଶକ୍ତି ଓ ଆତ୍ମୋତ୍ସର୍ଗ ରହିଅଛି । ନିଜ ପ୍ରାଣକୁ ଅନୁଷ୍ଠାନରେ ଢାଳିଦେଇ କେତେଜଣ କର୍ମୀ ତନ୍ମୟ ନ ହେଲେ ଅନ୍ୟମାନେ ସହଜରେ ଅନୁପ୍ରାଣିତ ହେବେ-ନାହିଁ । ଗ୍ରାମେ ଗ୍ରାମେ ଏହିପରି ସନ୍ନ୍ୟାସୀ ଆବିର୍ଭୂତ ହୋଇ ଆପଣାର ଆଦର୍ଶ, ଉଦ୍‌ବୋଧନ ଏବଂ ଅନୁଷ୍ଠାନଦ୍ୱାରା ଆମ୍ଭମାନଙ୍କର କ୍ଷୀଣ ଜାତୀୟ ଜୀବନ-ସ୍ରୋତକୁ ବିଶାଳ ସ୍ରୋତସ୍ୱତୀ ମହାନଦୀରେ ପରିଣତକରି ଅନନ୍ତ ବିଶ୍ୱମହାପ୍ରାଣତା-ସମୁଦ୍ରରେ ମିଶାନ୍ତୁ ।"

ତୀ

## ଐତିହାସିକ ଗୌରବ

'ଅବକାଶ-ଚିନ୍ତା'ର ଅବିସ୍ମରଣୀୟ ଅବଦାନ ଏହାର ଐତିହାସିକ ଗୌରବସନ୍ଦୀପ୍ତ କବିତାପୁଞ୍ଜ । ବସ୍ତୁ ଓ ବ୍ୟକ୍ତି ଏ ଉଭୟଙ୍କୁ ନେଇ ଏହି କବିତା-ଗୁଚ୍ଛିକ ରଚିତ । ଏଠାରେ କବିଙ୍କର ଦୃଷ୍ଟିଭଙ୍ଗୀ ଅତୀତ-ପ୍ରସାରୀ । ବର୍ତ୍ତମାନ ଓ ଭବିଷ୍ୟତ ଉତ୍କଳ ଉପରେ ଯାହାଙ୍କର ଦୃଷ୍ଟି ନିବଦ୍ଧ, ତାଙ୍କର ଏ ଅତୀତମୁଖିତାର କାରଣ କ'ଣ ? ଏ କ'ଣ କେବଳ ଅଶୋଭନୀୟ ଓ ଅବାଞ୍ଛନୀୟ ବାସ୍ତବ ପରିସ୍ଥିତିରୁ ମନକୁ ପ୍ରତ୍ୟାହାର କରିନେଇ ଅତୀତର ନିର୍ଦ୍ଦ୍ୱନ୍ଦ୍ୱ ଆଶ୍ରୟ ଗ୍ରହଣକରି ଆନନ୍ଦ ଓ ଶାନ୍ତି ଉପଭୋଗ କରିବାର ଏକ ପନ୍ଥା ? ଏ କ'ଣ, ଅମର ଧନେ ଯାହା ଗୌରବର ସାମଗ୍ରୀ ଥିଲା, ଆଜି ତାହା ଅବଲୁପ୍ତ, ତାହାର ରୋମନ୍ଥନ ଓ ଅସାର ଚର୍ବିତଚର୍ବଣ ମାତ୍ର ? ଏହି ଅତୀତ-ପ୍ରୀତିର ଭାବ-ଜଗତ କିମ୍ବା ବ୍ୟାବହାରିକ କ୍ଷେତ୍ରରେ କି ପ୍ରୟୋଜନ ଅଛି ? କେବଳ ଯୌବନରେ ନୁହେଁ, ଓଡ଼ିଶାର କ୍ଷୀଣ ଜାତୀୟ ସ୍ରୋତକୁ ଭାରତର ବିଶାଳ ଜାତୀୟ ମହାସମୁଦ୍ରରେ ମିଶାଇଦେବା ପରେ ମଧ୍ୟ ରାଜନୈତିକ ଓ ସାମାଜିକ ଏ ଉଭୟ ଦିଗରୁ ଉତ୍କଳକୁ ଭାରତ ସହିତ ସମକକ୍ଷକରି ଗଢ଼ିବା ନିମନ୍ତେ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଲାବେଳେ ବି ଗୋପବନ୍ଧୁ ଓଡ଼ିଶାର ଅତୀତକୁ ଭୁଲିନାହାନ୍ତି । ଅତୀତର ଗୌରବଗରିମା ତାଙ୍କ ପ୍ରାଣକୁ ସେହିପରି ଉଦ୍‌ବୁଦ୍ଧକରି ରଖିଛି । ସାମ୍ୟ ଓ ମୈତ୍ରୀଭାବର ପ୍ରତିଷ୍ଠାପାଇଁ ସେ ଉତ୍କଳର ଅତୀତ ଉପରେ ଗୁରୁତ୍ୱ ଦେଇଅଛନ୍ତି । ହଜାରିବାଗ ଜେଲରେ ଆବଦ୍ଧ ଥିବାବେଳେ ଦେଶବାସୀଙ୍କୁ କାତରକଣ୍ଠରେ ନିବେଦନ କରିଅଛନ୍ତି—

"ପୂର୍ବ ପୁରୁଷର ପବିତ୍ର ଶ୍ମଶାନ
ଦେଶର ଜାତିର ଗରିମା ଗାନ
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁକ୍ଷୟ
ମାନବ-ଜନମ ହୁଅଇ ସଫଳ
ଏ ମହାଦୀକ୍ଷା କି ବୁଝିବ ଉତ୍କଳ ?"

ହୃତଗୌରବ ଉତ୍କଳର ମହିମୋଜ୍ଜ୍ୱଳ ଅତୀତ ଉଦ୍ଧାରିବା ଥିଲା ତାଙ୍କ ଜୀବନର ପରମ କାମ୍ୟ । ଅତୀତ ସହିତ ବର୍ତ୍ତମାନକୁ ତୁଳନାକରି ସେ ସର୍ବଦା ମିୟମାଣ ହୋଇ ପଡ଼ୁଥିଲେ; କିନ୍ତୁ ମିୟମାଣତାରେ ଏହା ସୀମାବଦ୍ଧ ନ ଥିଲା । ମିୟମାଣ ହେଉଥିଲେ ଜାଗରଣ ପାଇଁ, ନିଜକୁ ପ୍ରସ୍ତୁତ କରିବା ନିମନ୍ତେ, ଜାତିର ଅଭ୍ୟୁଦୟ ନିମନ୍ତେ ପାଥେୟ ଆହରଣ କରିବା ପାଇଁ । ପୂର୍ବପୁରୁଷର ଆତ୍ମା ସହିତ ନିଜର ଆତ୍ମାକୁ ମିଶାଇ ନ ଦେଲେ, ନିଜର ଶୋଣିତ-ପ୍ରବାହରେ ଜାତୀୟ ଗୌରବ, ସଂସ୍କୃତି ଓ କୀର୍ତ୍ତିକଳାପର ନିରବଚ୍ଛିନ୍ନ ସ୍ରୋତ-ପରମ୍ପରାକୁ ଢାଳି ନ ଦେଲେ, ଦେଶବାସୀଙ୍କ ଭାବ-ରାଜ୍ୟରେ ସେ କିପରି ଆଲୋଡ଼ନ ସୃଷ୍ଟି କରିବେ ? ଜଡ଼ ପ୍ରାଣରେ ଶୃଙ୍ଖଳା ଆଣିବେ କିପରି ? କିନ୍ତୁ ଅନେକ ସମୟରେ ଦେଖିବାକୁ ମିଳେ, ଅତୀତର ଏ ଉଦ୍‌ବୋଧନ, ଓଡ଼ିଶାର ଐତିହାସିକ କୀର୍ତ୍ତିକଳାପର ଏ ମହତ୍ତ୍ୱ ପ୍ରଖ୍ୟାପନ, ଗୋପବନ୍ଧୁଙ୍କର ସ୍ୱେଚ୍ଛାକୃତ ନୁହେ । ଏ ତାଙ୍କ ଜୀବନର ଯେପରି ଏକ ଦିବ୍ୟ ଉନ୍ମାଦ, ଏକ ଦୈବବାଣୀ—ଏ ଯେପରି ଯୌବନର ଆରମ୍ଭରୁ ତାଙ୍କର ଗଭୀର ଜୀବନ-ବେଦ, ଏବଂ ହୃଦୟ-ବୀଣାତନ୍ତ୍ରୀର ସୁମଧୁର ଝଂକାର; କିନ୍ତୁ ଏହି ସ୍ୱତଃସ୍ଫୂର୍ତ୍ତି ଭାବାବେଗ ମଧ୍ୟରେ ଅନ୍ୟମାନଙ୍କୁ ଏ ଦୈବୀ ଉନ୍ମାଦନାରେ ଉଦ୍ଦୀପିତ କରିବା ନିମନ୍ତେ କି ସଫଳ ପ୍ରୟାସ !

'କଟକର ଶିଳାସେତୁ'ର ବସ୍ତୁସ୍ୱରୂପ ଅତି ସାମାନ୍ୟ । କାଠଯୋଡ଼ି କିମ୍ବା ମହାନଦୀର ପଥରବନ୍ଧ ଏ କବିତାର ଭିତ୍ତିଭୂମି; କିନ୍ତୁ ଏ ଭଙ୍ଗାରୁଜା ପ୍ରାଚୀନ ପଥରବନ୍ଧରେ କବି ଉତ୍କଳର ଗୌରବ ଉପଲବ୍‌ଧି କରିଅଛନ୍ତି । ଅତୀତର ଗୌରବ-ଗାଥା ତା'ଠାରୁ ଶୁଣିବା ନିମନ୍ତେ ଉତ୍କଣ୍ଠ ହୋଇ ରହିଛନ୍ତି । ଏହି ପଥରବନ୍ଧକୁ ଆଶ୍ରୟକରି ସେ ଓଡ଼ିଶା ଇତିହାସର କେତୋଟି ଗୌରବ-ଦୀପ୍ତ ପୃଷ୍ଠା ଆମ ଆଗରେ ମିଟାଇବାର ପ୍ରୟାସ କରିଅଛନ୍ତି । ସର୍ବଜ ସେହି ଦେଶହିତ ବ୍ରତର ମୋହନ ଇଙ୍ଗିତ ସେ ଦେଖିପାରିଛନ୍ତି । ଜଡ଼, ରୁକ୍ଷ, କଠିନ ପ୍ରସ୍ତରପୃଷ୍ଠରେ ମଧ୍ୟ ପୂର୍ବପୁରୁଷମାନଙ୍କର ମହିମ୍ପର୍ଶୀ ବାଣୀ ସେ ଶୁଣିବାକୁ ପାଇଅଛନ୍ତି ଏବଂ ଉତ୍କଳବାସୀଙ୍କୁ ତାହା ଶୁଣାଉଛନ୍ତି

ନିମନ୍ତେ ସେ ସେତୁକୁ ସତେ ଯେପରି କୃତାଞ୍ଜଳିପୁଟରେ ନିବେଦନ କରି କହୁଅଛନ୍ତି—

"ଆଜିଯାଏ ଯେତେ ଏପରି ଘଟଣା
ଅନୁଭବେ ସବୁ ଅଛୁ ତୋତେ ଜଣା ।
କହ କହ ସେତୁ, ସମସ୍ତ ବିସ୍ତାର
ଶୁଣନ୍ତୁ ଉତ୍କଳ ସର୍ବ-ନରନାରୀ ।
ଯାନବଳେ ଏବେ ଉତ୍କଳ ସନ୍ତାନ,
ହରାଇ ଅଛନ୍ତି ଆତ୍ମଶକ୍ତି-ଜ୍ଞାନ ।
ଜାଣିବେ ବା ଶୁଣି ପୂର୍ବ ବଡ଼ପଣ
ସାଧୁ ଅନୁଷ୍ଠାନେ ଦେବେ ପ୍ରାଣମନ ।"

ଏହି ସ୍ୱଚ୍ଛ ଓ ନିରାଭରଣ ଉଦ୍‌ବୋଧନ ମଧ୍ୟରେ କେହିକେହି କବିତା କଳ୍ପନା-ଲତାର ବିଳୋଳ ବଙ୍କିମଭଙ୍ଗୀ ଓ ସୌକୁମାର୍ଯ୍ୟ ନ ଦେଖି ନିରାଶ ହୋଇ-ପାରନ୍ତି, କିନ୍ତୁ ଗୋପବନ୍ଧୁ ଭଙ୍ଗୀର ସାଧକ ନ ଥିଲେ । ତାଙ୍କର କବିତ୍ୱରୂପୀ ହେଉଛି, ପାଠକର ମନପ୍ରାଣରେ ଅଲକ୍ଷିତଭାବରେ ଜାତିର ପରମଶ୍ରେୟବୋଧର ବାଣୀ ସଞ୍ଚାର କରିବାର ଗୁରୁତ୍ୱ, ଦୁଃସ୍ଥ ଜାତୀୟ ଜୀବନର ଉଦ୍‌ଗତି ଓ ଉଜ୍ଜୀବନ ସାଧନ କରିବା ନିମନ୍ତେ ପ୍ରାଣର ଅସୀମ ଆକୁଳତାର ଗୁରୁତ୍ୱ ।

ଖଣ୍ଡଗିରିଶିଖରରେ କବିଙ୍କ ପ୍ରାଣକୁ ଯେଉଁ ଭାବସମୂହ ଆଲୋଡ଼ନ କରିଛି, ତାହା କ'ଣ କେବଳ କବିଙ୍କର ବ୍ୟକ୍ତିଗତ ମାନସ ଉଚ୍ଛ୍ୱାସ ? ଶୂନ୍ୟରୁ ତା'ର ଉଦୟ ଏବଂ ଶୂନ୍ୟରେ ତା'ର ବିଲୟ ? ଏ କବିତାଟି କ'ଣ କବିଙ୍କର କେବଳ କେତୋଟି ଆନନ୍ଦମୟ ରସଘନ ମୁହୂର୍ତ୍ତର ବର୍ଣ୍ଣାନୁଲେପନ ? ଏହା କ'ଣ କେବଳ ଗୋଟିଏ ଉପସମ୍ମୋହିନୀ ବାଙ୍ମୟୀ ମୂର୍ତ୍ତି ? ସୁକୁମାର ରସ-ଶିଳ୍ପ ?

ଗୋପବନ୍ଧୁ ଯେପରି ଇତିହାସ-ପ୍ରିୟ ଏବଂ ଉତ୍କଳର ଆଧୁନିକ ଇତିହାସରେ ତାଙ୍କର ସ୍ଥାନ ଯେପରି ଚିର-ଭାସ୍ୱର, ସେହିପରି ତାଙ୍କର ପ୍ରତ୍ୟେକ କବିତାର ପଶ୍ଚାତ୍ତରେ ଗୋଟିଏ ଗୋଟିଏ କ୍ଷୁଦ୍ର ଐତିହାସିକ ଘଟଣା ଆତ୍ମ-ଗୋପନ କରି ରହିଛି । ଗୋପବନ୍ଧୁ ଦାଶ ତାଙ୍କର ଆତ୍ମ-ଚରିତ ଲେଖିଥିଲେ, ଏ ଘଟଣାସବୁ ଆଲୋକକୁ ଆସିଥାନ୍ତା; କିନ୍ତୁ ତାଙ୍କର ସହକର୍ମୀ ଓ ସମସାମୟିକ ବ୍ୟକ୍ତିମାନଙ୍କର ଲେଖା ଓ କଥା ଏ ଦିଗରେ ଆମର ପରମ ସମ୍ବଳ ।

ହଜାରିବାଗ ଜେଲରେ ଯେଉଁ ଖଣ୍ଡଗିରି କଥା ସ୍ମରଣ କରି ସେ ପୁଲକ ବିହ୍ୱଳ ହୋଇ ଲେଖିଥିଲେ—

"ପଡ଼େ ଏବେ ମନେ ପ୍ରଥମ ଯୌବନେ
ସୁଷମା ପିପାସା ଭାବତନ୍ମୟାଦେ
ଖଣ୍ଡଗିରି ଶିରୀ ଦେଖି ନେତ୍ର ଭରି
ଚନ୍ଦ୍ରା ନଭ ଗଗନେ ବସିଲି ପାଦେ ।
କଳ୍ପନାର ପୋତେ କାଳ ପ୍ରତିସ୍ରୋତେ
ଭାସି ଦେଖିଲି ମୁଁ ଉଜ୍ଜ୍ୱଳ ଛବି
ଇତିହାସ ଯା'ର ନ କରେ ପ୍ରଚାର
ଚିନ୍ତି ନାହାନ୍ତି ଯା କାବ୍ୟରେ କବି ।"

ଖଣ୍ଡଗିରିର ଇତିହାସ ଲିପିବଦ୍ଧ ହୋଇନାହିଁ ବୋଲି କବିଙ୍କ ମନରେ କି ଦାରୁଣ ଆଘାତ ! କାବ୍ୟରେ କୌଣସି କବି ସେହି ବୀର କୀର୍ତ୍ତିବଳୀ ଚିନ୍ତି ନାହାନ୍ତି ବୋଲି ଯେଉଁ ଦୁଃଖ, ସେ ଦୁଃଖ ଉପଶମନର ଆଶା ଥିଲା ସହକର୍ମୀ ନୀଳକଣ୍ଠଙ୍କ 'ଖାରବେଳ' କାବ୍ୟରେ; କିନ୍ତୁ ସେ କାବ୍ୟ ଅସମ୍ପୂର୍ଣ୍ଣ ।

୧୯୦୪ କିମ୍ବା ୧୯୦୫ ମସିହାର କଥା । ଗୋପବନ୍ଧୁ ସେତେବେଳେ ରେଭେନ୍‌ସା କଲେଜରୁ ବି. ଏ. ପାସ୍ କରି କଲିକତାରେ ଓକିଲାତି ପଢ଼ୁଥାନ୍ତି; ଥରେ ଏହି ସମୟରେ ସେ ଗ୍ରୀଷ୍ମଛୁଟିରେ ଭୁବନେଶ୍ୱର ଆସିଥିଲେ । ସେତେବେଳେ ଭୁବନେଶ୍ୱରର ବିଦ୍ୟାଭୂଷଣ ଟୋଲ୍‌ର ପଣ୍ଡିତ ବାସୁଦେବ ରଥ । ଏହି ବାସୁଦେବ ରଥଙ୍କ ସହିତ ଗୋପବନ୍ଧୁଙ୍କର ଘନିଷ୍ଠ ବନ୍ଧୁତା । ମୁକ୍ତ୍ୟାର ରାମଚନ୍ଦ୍ର ଦାସ ମଧ୍ୟ ଭୁବନେଶ୍ୱରକୁ ଆସିଥାନ୍ତି । ତିନହେଁ ମିଶି ଭୁବନେଶ୍ୱରର ବିଭିନ୍ନ ମନ୍ଦିରମାନଙ୍କର କାରୁକାର୍ଯ୍ୟ ଦେଖି ମୁଗ୍ଧ ହେଉଥାନ୍ତି । ଏହି ସମୟରେ ଗୋପବନ୍ଧୁ ଦିନେ ଖଣ୍ଡଗିରି ଦର୍ଶନରୁ ପ୍ରେମ ଭାବବିହ୍ୱଳ ହୋଇ ସେହି ଭୁବନେଶ୍ୱରଠାରେ 'ଖଣ୍ଡଗିରିଶିଖରେ' କବିତାଟି ଏକ ନିଃଶ୍ୱାସରେ ଲେଖି ପକାଇଥିଲେ । କେବଳ ଖଣ୍ଡଗିରି ତାଙ୍କର ସ୍ୱର୍ଣ୍ଣକାତର କବିପ୍ରାଣକୁ ଆଲୋଡ଼ିତ କରି ନ ଥିଲା—ଏହାକୁ ନିଜର କର୍ମକ୍ଷେତ୍ର କରିବାକୁ ସେ ସେଦିନ ସଙ୍କଳ୍ପ କରିଥିଲେ । ଇତିହାସ ସ୍ମୃତିବିଜଡ଼ିତ ସ୍ଥାନରେ କର୍ମକ୍ଷେତ୍ର ପ୍ରତିଷ୍ଠାକଲେ ଏଠାରୁ ଯେପରି ପୁଣ୍ୟ ପ୍ରେରଣା ମିଳିବ, ଅନ୍ୟତ୍ର ସେପରି ସମ୍ଭବ ନୁହେଁ । ଗୋପବନ୍ଧୁଙ୍କ ଉତ୍ସାହ ଓ ଉଦ୍ୟମରେ ଭୁବନେଶ୍ୱରରେ ଏକାମ୍ର ଏକାଡେମି ନାମରେ ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟର କାର୍ଯ୍ୟ ଆରମ୍ଭହେଲା; କିନ୍ତୁ ଅର୍ଥାଭାବରୁ ଏ ଅନୁଷ୍ଠାନ ବେଶି ଦିନ ତିଷ୍ଠି ପାରି ନ ଥିଲା ।

'ଖଣ୍ଡଗିରିଶିଖରେ' କବିତାର ଏହାହିଁ ହେଲା ପୃଷ୍ଠଭୂମି; ଖଣ୍ଡଗିରି ଦେଖିବାର ଗଭୀର ଉତ୍କଣ୍ଠା ଅନେକଦିନ ହେଲା ତାଙ୍କ ପ୍ରାଣକୁ ଯେପରି ଅସ୍ଥିର କରିପକାଉଥିଲା । ଆଜି ଏତେକାଳପରେ ଚକ୍ଷୁକର୍ଣ୍ଣର ଦ୍ୱନ୍ଦ୍ୱ ଦୂରହେଲା । ସୌନ୍ଦର୍ଯ୍ୟବୋଧ ଓ ଐତିହ୍ୟବୋଧର ସମନ୍ୱୟରେ ଏହି କବିତାଟି ଯେପରି ତାତ୍ପର୍ଯ୍ୟପୂର୍ଣ୍ଣ, ସେହିପରି ଆବେଗସ୍ପନ୍ଦିତ, ବୁଦ୍ଧି ଓ ବୋଧିର ମଣିକାଞ୍ଚନ ସଂଯୋଗ ଏଥିରେ ଘଟିଛି । ଏହି କବିତାରେ ଜଡ଼ ଖଣ୍ଡଗିରି ପାହାଡ଼ କବିଙ୍କ ଲେଖନୀରେ ବ୍ୟକ୍ତିଭୂତ ଓ ଚୈତନ୍ୟଶୀଳ । ଭବିଷ୍ୟତରେ ଓଡ଼ିଶାର ଯେଉଁ ଶୁଭଦିନ ସେ ଜାଗରଣ ଓ ସ୍ୱପ୍ନରେ କଳ୍ପନାକରି ନିଜକୁ ଯୌବନରୁ ସେ ଦିଗରେ ପ୍ରସ୍ତୁତ କରୁଥିଲେ, ସେହି ଶୁଭଦିନର ମୂକସାକ୍ଷୀ ସତେ ଯେପରି ଏହି ପୁରାଣ ପ୍ରବୀଣ ଖଣ୍ଡଗିରି, ସତେ ଯେପରି ଜାତୀୟ ଜୀବନର ଲୁପ୍ତ ରତ୍ନ କବି ମାନସଯାତ୍ରାରେ ଏବଂ ପଶ୍ଚାତ୍ ଦିବ୍ୟ ଦୃଷ୍ଟିରେ ଏହିଠାରେ ଉଦ୍ଧାର କରି-ଅଛନ୍ତି ! ଜାତିର ପୁନର୍ଜାଗରଣର ଉପାୟ ତାଙ୍କର ହସ୍ତଗତ ହୋଇଅଛି ! ଏହାକୁ ଆଶ୍ରୟ କରି ଜାତୀୟପୋତ ବାହିନେବାକୁ ହେବ । ଲକ୍ଷ୍ୟ ବହୁଦୂରରେ । ଧ୍ରୁବ ନ ଥିଲେ କର୍ମର ପ୍ରେରଣା ଆସିବ କାହୁଁ ? ଆଦର୍ଶ ନ ଥିଲେ ଜୀବନର ଗତିକୁ ନିୟନ୍ତ୍ରିତ କରିବ କିଏ ? ତେଣୁ ପ୍ରାଚୀନ ଉତ୍କଳର ଶୁଭଦିନର ମୂକସାକ୍ଷୀ ଖଣ୍ଡଗିରିକୁ ସମ୍ବୋଧନ କରି କବି ଲେଖିଛନ୍ତି—

'ଆହେ ବୃଦ୍ଧ ଖଣ୍ଡଗିରି ପୁରାଣ ପ୍ରବୀଣ,
ଦେଖିଅଛ ଉତ୍କଳର କେତେ ଶୁଭ ଦିନ ।
ଉତ୍ସାହ ଉଦ୍ୟମ, ଶକ୍ତି, ପ୍ରତିଭା-ବିଭବ
ସାହସ, ବିକ୍ରମ ଧୈର୍ଯ୍ୟ ଜାତୀୟ ଗୌରବ
ଉତ୍କଳର କେତେ କେତେ ଗୌରବକାହାଣୀ
ଅତୀତ ଘଟନା ଦେଖି ସବୁ ଅଛ ଜାଣି ।"

ଗୋପବନ୍ଧୁଙ୍କ କବିତା ମ୍ଳାନ ହେବାର ନୁହେଁ । ତାଙ୍କ କବିତାର ଓଜ ଓ ତେଜ ଏବେ ମଧ୍ୟ ଆମ ଦେଶର ନେତାମାନଙ୍କ ଉଦ୍‌ବୋଧନ ଓ ଉପଦେଶରେ ଦେଖିବାକୁ ମିଳେ । ସ୍ୱାଧୀନ ଭାରତର ଅର୍ଥନୈତିକ ପୁନର୍ଗଠନରେ ଜନସାଧାରଣଙ୍କର ଅକୁଣ୍ଠ ସାହାଯ୍ୟ, ସହଯୋଗ ଓ ସହାନୁଭୂତି ଲାଭକରିବା ନିମନ୍ତେ ଲୋକନେତା-ମାନଙ୍କ ମୁଖରୁ ଏବେ ସେହି କଥା ମଧ୍ୟ ଶୁଣିବାକୁ ମିଳେ, "ଆମର ବର୍ତ୍ତମାନ ଲୋଡ଼ା ସଂଗଠିତ ଜନଶକ୍ତି—ଲୋଡ଼ା ଜନସାଧାରଣଙ୍କର ଉତ୍ସାହ, ଉଦ୍ୟମ, ଶକ୍ତି, ପ୍ରତିଭା ଓ ବଳିଷ୍ଠ ଗୌରବବୋଧ" । ଗୋପବନ୍ଧୁ ଖଣ୍ଡଗିରିକୁ ଭକ୍ତିକରି ସେହି ଭାବରେ ଉତ୍କଳୀୟମାନଙ୍କୁ ଅନୁପ୍ରାଣିତ କରିବାକୁ ପ୍ରୟାସ କରୁଥିଲେ । ଜାତିର ପରମଶ୍ରେୟବୋଧ ହୃଦୟର ଆନନ୍ଦମୟ ଅନୁଭୂତିରେ ରୂପାନ୍ତର ଲାଭ

କରିଥିଲ । ତେଣୁ ତାଙ୍କର ଏହି ଐତିହ୍ୟବୋଧସମ୍ବଳିତ କବିତାଗୁଡ଼ିକ ଏତେ ସ୍ପନ୍ଦନମୟ ଓ ପ୍ରାଣବନ୍ତ । ଦ୍ଵେଷ, ବାଦ-ବିବାଦ ଓ ଅହଙ୍କାରରୁ ମୁକ୍ତ ହେବାକୁ ଏବେ ଭାରତର ଲୋକମାନଙ୍କୁ ଜାତୀୟ ସଂହତି ରକ୍ଷାକରିବା ଉଦ୍ଦେଶ୍ୟରେ ନାନା ଉପଦେଶ ଦିଆଯାଉଛି । ଭାରତର ଐକ୍ୟର ପ୍ରତିଷ୍ଠାପାଇଁ ଆଚରଣବିଧି ପ୍ରଣୟନ କରାଯାଉଛି । ଏ ସମସ୍ୟା ବର୍ତ୍ତମାନ ଯେପରି ଜଟିଳ, ଗୋପବନ୍ଧୁଙ୍କ ସମୟରେ ବି ସେହିପରି ଥିଲ । 'ଖଣ୍ଡଗିରିଶିଖରେ' କବିତାର ଭାଷାନ୍ତର ଏହି ଭାରତର ସଂହତି ରକ୍ଷାରେ ଯେ ସହାୟକ ନ ହେବ, ତାହା କହିହେବ ନାହିଁ । ଉତ୍କଳର ସାମ୍ୟ ମୈତ୍ରୀ ଓ ଉଦାରତାର ପରିଚୟ ଦେବାକୁ ଯାଇ ଏହି କବିତାରେ ସେ ଲେଖି-ଅଛନ୍ତି ।

"ବୌଦ୍ଧ ମହାଧର୍ମ ଏଥି ସାମ୍ୟ ମୈତ୍ରୀ ଭାବେ
ସମ୍ମିଳିତ ପରସ୍ପର ଅଦ୍ଭୁତ ପ୍ରଭାବେ ।
ଧର୍ମେ ଧର୍ମେ ଈର୍ଷା ଦ୍ଵେଷ ବାଦ ଅହଙ୍କାର
ଅଜ୍ଞାତ ଉତ୍କଳ ଆହା କି ମହା ଉଦାର ।"

ବାରବାଟୀ ଦୁର୍ଗର ଭଗ୍ନାବଶେଷ ଦେଖି କବି-ପ୍ରାଣରେ ମଧ୍ୟ ଏହି ମର୍ମନ୍ତୁଦ ଦୁଃଖ । ଏହି ଦୁର୍ଗର ଗୌରବ ବର୍ଣ୍ଣନା କରିବାବେଳେ ସେ ଆଉ ବିଂଶଶତାବ୍ଦୀର ପ୍ରଥମ ଦିନରେ ନ ଥିଲ ପରି ମନେହୁଏ । ସେତେବେଳେ ସେ ଓଡ଼ିଶାର ସେହି ଗୌରବମୟ କାଳର ସତେ ଯେପରି ଜଣେ ବୀର ପୁରୁଷ, ବୀର ଧମନୀରେ ସତେ ଯେପରି ତାଙ୍କର ଶିରା ପ୍ରଶିରାରେ ଆଗ୍ନେୟ ସ୍ରୋତ ପ୍ରବାହିତ । ଦେଶ ସକାଶେ ପ୍ରାଣ ଉତ୍ସର୍ଗ କରିବାକୁ ଦୃଢ଼ଚିତ୍ତ; କିନ୍ତୁ କଳ୍ପନାରୁ ବାସ୍ତବରାଜ୍ୟକୁ ଫେରି ଆସିଲେ ଜାତିର ବର୍ତ୍ତମାନ ଦୁର୍ଦ୍ଦଶା ଦେଖି ସେ କି ବ୍ୟସ୍ତ ଓ ବିକଳ ! ଗୋପବନ୍ଧୁ ନିରାଶ ହେବାର ବ୍ୟକ୍ତି ନୁହନ୍ତି । କର୍ମବୀର ନୈରାଶ୍ୟର ଦାସତ୍ୱ ସ୍ୱୀକାର କରେ ନାହିଁ । ତେଣୁ ବାଲିଯାତ୍ରା ସନ୍ଧ୍ୟାରେ ମହାନଦୀ ତୀରରେ ସଂକୀର୍ତ୍ତନ-ଦଳର ପ୍ରାଣହୀନ ସଂକୀର୍ତ୍ତନ ଶୁଣି ଏବଂ ସେଥିରେ ଧର୍ମବୋଧର ଅଭାବ ଦେଖି କବି କ୍ଷୁଣ୍ଣ ହୋଇ ପଡ଼ିଛନ୍ତି । ଯେଉଁ ମହାନଦୀକୂଳରେ ସଗୌରବରେ ଦଣ୍ଡାୟମାନ ହୋଇ ବାରବାଟୀ ଦୁର୍ଗ ଦିନେ ଏପରି ପ୍ରାଣବନ୍ତ ଓ ବୀରତ୍ୱର ରଙ୍ଗଭୂମି ଥିଲା, ଆଜି ସେହି ମହାନଦୀକୂଳରେ ଅନୁଷ୍ଠିତ ହେଉଥିବା ବାଲିଯାତ୍ରାରେ କାହିଁ ପ୍ରାଣର ସ୍ପନ୍ଦନ ଦେଖିବାକୁ ମିଳୁନାହିଁ । ସବୁ ଯେପରି ନିର୍ଜୀବ ନିସ୍ତେଜ, ଉତ୍ସାହହୀନ ଓ ଅବସାଦଗ୍ରସ୍ତ । ତେବେ କ'ଣ ଏ ମୃତ ଜାତିର ଆଉ ପୁନର୍ଜୀବନ ଘଟିବନାହିଁ ? ଆଉ କ'ଣ ବାରବାଟୀ ପୁଣି ଏଠାରେ ମୁଣ୍ଡଟେକି ଠିଆହେବନାହିଁ ? ବାରବାଟୀକୁ କବି ଏଠାରେ ନବ-ଜାଗ୍ରତ ଉତ୍କଳର ପ୍ରତୀକରୂପେ ଉପସ୍ଥାପିତ କରିଅଛନ୍ତି । ଯାହାର

ପତନ ଅଛି, ତେବେ ତା'ର ନିଶ୍ଚୟ ଉତ୍ଥାନ ହେବ। ପତନ ଅଭ୍ୟୁଦୟ ବାରୁର ପନ୍ଥା, କବି ଏଥିରେ ଆସ୍ଥାବାନ୍। ବାରବାଟୀ ପରି ସେ ଆଶାହୀନ ହେବାର ବ୍ୟକ୍ତି ନୁହନ୍ତି। କ୍ଷଣିକ ଅବସାଦର ବିଷାଦ-ରେଖା କମେ ଅନ୍ତରରୁ ଲିଭି ଲିଭି ଆସିଛି, ତା ସ୍ଥାନରେ ଦେଖା ଦେଇଛି, ଆଶାର ଉଜ୍ଜ୍ୱଳ ରଶ୍ମିଚ୍ଛଟା; ସେ ଆଶାକୁ ପ୍ରକାଶ କରିବାକୁ ଯାଇ କବି ଲେଖିଛନ୍ତି—

> "ବାରବାଟୀ ଦଶା ଲିଭି କେତେ ରଜାଙ୍କଲେ
> ଉଠି ଅଛନ୍ତି କି ସ୍ଥାନ ଅଣ୍ଟନବ ବଲେ।
> ତେବେ କି ଁପା ବାର୍‌ବାଟୀ ହେବ ଆଶାହୀନ ?
> ତେବେ କି ଁପା ବାରବାଟୀ ବଦନ ମଳିନ ?
>
> × × ×
>
> ମଞ୍ଚରୁ ଏ ସଙ୍କୀର୍ତ୍ତନ ପବନ ଉଚ୍ଛ୍ୱାସ
> କର୍ମବୀର, ଧର୍ମବୀର, ହୁଅନ୍ତୁ ପ୍ରକାଶ !"

ଗୋପବନ୍ଧୁଙ୍କର ଏ ଐତିହ୍ୟବୋଧ ଜଳ ବୁଦ୍‌ବୁଦ୍ ପରି କ୍ଷଣିକ ନୁହେଁ। ଭୂମାରଖଣ୍ଡ ପରି ଭକ୍ତ ରବରଶ୍ମିରେ ଏ ବିଗଳିତ ହୋଇ ତରଳ ଚଞ୍ଚଳ ହେବାର ପଦାର୍ଥ ନୁହେଁ। ଏହା ତାଙ୍କ ଜୀବନର ପ୍ରତିଷ୍ଠିତ ଭାବ। ଐତିହାସିକ କୀର୍ତ୍ତିକଳାପରେ ସେ କେବଳ ଗୌରବ ଅନୁଭବ କରିନାହାନ୍ତି। ଜାତିସ୍ଥ ଜୀବନ ଗଠନ ନିମନ୍ତେ ସେ କେବଳ ପ୍ରକୃତ କମ୍ଭା ଜଡ଼ବସ୍ତୁପୁଞ୍ଜରୁ ପୁଣ୍ୟ ଉଚ୍ଛ୍ୱାସ ପାଇନାହାନ୍ତି, ଐତିହାସିକ ମହାପୁରୁଷମାନେ, ଯେଉଁମାନଙ୍କର ସ୍ମୃତି ପରବର୍ତ୍ତୀ ବଂଶଧରମାନଙ୍କ ହୃଦୟରେ ଚିରକାଳ ନିମନ୍ତେ ଅଙ୍କିତ ହୋଇ ରହିବାର କଥା, ସେହି ବୀର ପୁରୁଷ-ମାନଙ୍କୁ ଗୋପବନ୍ଧୁ ନିଜ ଜୀବନର ଆଦର୍ଶରୂପେ ଗ୍ରହଣ କରିଅଛନ୍ତି। ସେ ଓଡ଼ିଆ-ଜାତିର ବହୁମୁଖୀ ଉନ୍ନତିର ସ୍ୱପ୍ନ ଦେଖୁଥିଲେ, ସାହିତ୍ୟ, ସଙ୍ଗୀତ, କର୍ମ, ଧର୍ମ, ଶିଳ୍ପ, ସଂସ୍କାର ଏ ସକଳ ଦିଗରେ ସେ ଉତ୍କଳର 'ସର୍ବୋଦୟ' କଳ୍ପନା କରୁଥିଲେ, ଏବଂ ଏ ପ୍ରତ୍ୟେକ ଦିଗରେ ମଧ୍ୟ ତାଙ୍କର ଅକ୍ଳାନ୍ତ ସାଧନାର ସ୍ୱାକ୍ଷର ସେ ରଖିଯାଇ ଅଛନ୍ତି। ତାଙ୍କର ସାଧନା ପୂର୍ଣ୍ଣତାମୁଖୀ। ଗୋଟିଏ ଦିଗରେ ଓଡ଼ିଶାର ଉନ୍ନତି ହୋଇଗଲେ, ତାଙ୍କର ଆତ୍ମାର ପରିତୃପ୍ତି ନାହିଁ। ତେଣୁ ତାଙ୍କର ଆଦ୍ୟ ଯୌବନରେ ଆମ୍ଭେମାନେ ଦେଖିବାକୁ ପାଉ, ସେ ଭକ୍ତକବି ଜଗନ୍ନାଥ ଦାସଙ୍କଠାରୁ ସ୍ୱର୍ଗୀୟ ପଣ୍ଡିତ ହରିହର ଦାସଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ସ୍ୱର୍ଗରୁ ଆବାହନ କରିଅଛନ୍ତି, ଉତ୍କଳ ଉପରେ ଶୁଭାଶିଷ ବର୍ଷଣ କରିବାକୁ, ଦେଶବାସୀଙ୍କୁ ସେମାନଙ୍କ ଆଦର୍ଶରେ ଉଜ୍ଜୀବିତ ଓ ତନ୍ମୟ କରିବାକୁ।

ପଣ୍ଡିତ ହରିହର ଦାଶଙ୍କ କଥା ପୂର୍ବେ ଉଲ୍ଲେଖ କରାଯାଇଛି । ସେ ଥିଲେ ନବୀନ ଓ ପ୍ରାଚୀନର ସମନ୍ୱୟର ମୂର୍ତ୍ତିପ୍ରତୀକ । ସମାଜର କୁସଂସ୍କାର ଦୂରକରିବା-ନିମନ୍ତେ ସେ ବଦ୍ଧପରିକର ଥିଲେ । ସେହି ଋଷିକଳ୍ପ ମହାପୁରୁଷଙ୍କର ସ୍ମୃତି-ତର୍ପଣ କରିବାକୁ ଯାଇ ଗୋପବନ୍ଧୁ ଲେଖି ଅଛନ୍ତି—

'ଉତ୍କଳ-ମଣ୍ଡଳେ ନବ୍ୟ ସଭ୍ୟଦଳେ
ସର୍ବେ ଆଜ ସ୍ୱାର୍ଥପର ।
ଆସ ହରିହର ପଣ୍ଡିତପ୍ରବର
ସମାଜ ସଂସ୍କାର କର ।'

କବି-ସମ୍ରାଟ୍ ଉପେନ୍ଦ୍ରଭଞ୍ଜଙ୍କ ପ୍ରତି ସମ୍ମାନ ଓ ଶ୍ରଦ୍ଧା ନିବେଦନ କରି ଯାହା ଲେଖିଥିଲେ, ସେଥିମଧ୍ୟରୁ ପଦେ ଦୁପଦ ଏପରି ପ୍ରାଣସ୍ପର୍ଶୀ ଓ ଚିତ୍ତ-ଚମତ୍କାରକାରୀ ଯେ ଏବେ ଭଞ୍ଜ-ସାହିତ୍ୟର ସମାଲୋଚକମାନଙ୍କ ମଧ୍ୟରୁ ଅଧିକାଂଶ ସେହି ପଙ୍‌କ୍ତି-ଗୁଡ଼ିକ ଉଦ୍ଧାର କରି ଭଞ୍ଜ-ତିରୋଭାବରେ ନିଜ ନିଜର ଲେଖା କିମ୍ବା ବକ୍ତୃତା ଆରମ୍ଭ କରିଥାନ୍ତି । ଓଡ଼ିଶାର ଘରେଘରେ ସେଥିମଧ୍ୟରୁ ଗୋଟିଏ ପଙ୍‌କ୍ତି ଅତି ବ୍ୟାପକଭାବରେ ସୁପରିଚିତ । କବିଙ୍କର ମହତ୍ତ୍ୱର ପରିଚୟ ତ ଏହିଠାରେ । ଏହା ହିଁ କବିଙ୍କର ଲୋକପ୍ରିୟତାର ପ୍ରମାଣ । ସେହି ପଦମାନଙ୍କ ମଧ୍ୟରୁ ଗୋଟିଏ ହେଉଛି—

'ଗାଏ ରୁମ୍ଭ ଗୀତ ସଭାରେ ପଣ୍ଡିତ
ପଥେ ଯାନ୍ତି ହୃଷ୍ଟମନା;
ବାଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ।'

ଅନଙ୍ଗଭୀମଦେବଙ୍କ ଉଦ୍ଦେଶ୍ୟକରି କବି ଯାହା ଲେଖିଅଛନ୍ତି ତାହା ହିଁ ତାଙ୍କ ଇତିହାସ-ଦର୍ଶନର ମୂଳସୂତ୍ର । ଅତୀତ ଗୌରବସ୍ମୃତିର ତାତ୍ପର୍ଯ୍ୟ ସେ ଏହିଠାରେ ସ୍ପଷ୍ଟଭାବରେ ପ୍ରକାଶ କରିଅଛନ୍ତି । ତେଣୁ ତାଙ୍କ ସାହିତ୍ୟରେ ଜଡ଼ ବସ୍ତୁ କିମ୍ବା ପ୍ରକୃତିଠାରୁ ପୁରୁଷର ପ୍ରାଧାନ୍ୟ ଓ ପ୍ରତିପତ୍ତି ବେଶି । ଅତୀତର ପ୍ରେରଣାରେ ବର୍ତ୍ତମାନ ଓ ଭବିଷ୍ୟତ ମାନବସମାଜର କଲ୍ୟାଣସାଧନ ତାଙ୍କ ଜୀବନର ଚରମ ଲକ୍ଷ୍ୟ । ଏ ଲକ୍ଷ୍ୟ ପୁଣି ସ୍ଥୂଳ କିମ୍ବା ପାର୍ଥିବ ପ୍ରୟୋଜନରେ ପର୍ଯ୍ୟବସିତ ନୁହେଁ । ଏ ଲକ୍ଷ୍ୟ-ସାଧନ ମୂଳରେ ଅଛି ବଳିଷ୍ଠ ଧର୍ମବୋଧ ଏବଂ ସେହି ଧର୍ମବୋଧରେ ମାନବସମାଜର ସେବା ଗୋପବନ୍ଧୁଙ୍କ ଜୀବନର ଚରମ

ବାସ୍ତବତା ଥିଲା । ଅନଙ୍ଗଭୀମଦେବଙ୍କ କୀର୍ତ୍ତିସ୍ତମ୍ଭ କବିଙ୍କ ପ୍ରାଣରେ କି ସ୍ମୃତିର ଦ୍ବନ୍ଦ୍ବ ଜାଗାଇଦେଇଛି ତା'ର ଆଭାସ ଏହି ପଙ୍କ୍ତିମାନଙ୍କରେ ଦେଖିବାକୁ ମିଳେ—

'ମୀରବ ତାଡ଼ନା ପଛେ ଥିବା ପ୍ରେରଣା
ବିଏ ନାହିଁଛି ଉତ୍କଳେ;
ଅତୀତ ବିଭୂତି ଗଉରବ ସ୍ମୃତି
ଜଗାଏ ହୃଦେ ଉତ୍କଳେ ।
ସ୍ମୃତିବଳେ କୃତୀ ହୋଇ କେତେ ଜାତି
ଜଗତେ ଟେକନ୍ତି ମଥା
କର୍ମୀ ସେ ପ୍ରଧାନ ପୂର୍ବ-ପ୍ରଧାନ
ଉତ୍କଳପକ୍ଷେ ଅନ୍ୟଥା ।'

## ( ୪ ) ପରିଚିତରୁ ଅପରିଚିତର ଇଙ୍ଗିତ

କବି-ଚିତ୍ତର ରହସ୍ୟ ଦୁର୍ଭେଦ୍ୟ । ଏହା ଯେପରି ସଂବେଦନଶୀଳ, ସ୍ପର୍ଶକାତର, ସେହିପରି ଘୋର ପ୍ରତିକ୍ରିୟାଶୀଳ । ସେ ଚିତ୍ତ କେତେବେଳେ ଆନନ୍ଦ-ରସରେ ପରିପ୍ଲୁତ ତ, ପୁଣି କେତେବେଳେ ବିଷାଦ-କାଳିମାରେ ଆଚ୍ଛନ୍ନ । ନଦୀ, ପାହାଡ଼ ଓ ଅରଣ୍ୟଠାରୁ ଆରମ୍ଭକରି ଖଣ୍ଡିଆ ବରଗଛ ଏବଂ କାଙ୍କଣ ଗଛ ପର୍ଯ୍ୟନ୍ତ ଅତି ତୁଚ୍ଛ ପଦାର୍ଥ ତା ଚିତ୍ତରେ ଆଲୋଡ଼ନ ସୃଷ୍ଟି କରିପାରେ । କେତେବେଳେ ଚିତ୍ତର ଏ ସ୍ପନ୍ଦନ ପରିଦୃଶ୍ୟମାନ ପଦାର୍ଥ ପ୍ରତି ଅନୁକୂଳ ଓ ସହାନୁଭୂତିସମ୍ପନ୍ନ, କେତେବେଳେ ପୁଣି ତାହା ପ୍ରତିକ୍ରିୟାମୂଳକ ଏବଂ ବିଦ୍ରୋହମୂଳକ । ଭାବର ଅନୁରଣନ ଚିତ୍ତ-ବୀଣାକୁ ଝଙ୍କାରିତ କଲେ, କବିର ପ୍ରକାଶ-ବେଦନା ଅସହ୍ୟ ହୋଇଉଠେ । କବି ସେତେବେଳେ କେବଳ ଦୃଶ୍ୟବସ୍ତୁର ସାମ୍ପ୍ରାତିକସୁଲଭ ବର୍ଣ୍ଣନା କିମ୍ବା ବିବରଣୀ ଦେଇ ତୃପ୍ତ ହୁଏନାହିଁ । ଏହି ଦୃଶ୍ୟବସ୍ତୁର ଅନ୍ତରାଳରେ ଥିବା ଇନ୍ଦ୍ରିୟାତୀତ ରହସ୍ୟାଲୋକ ସେ ଉଦ୍‌ଘାଟନ କରିବାକୁ ବ୍ୟାକୁଳ ହୋଇପଡ଼େ । କବି ପ୍ରାଣର ବିମୂର୍ତ୍ତ ଉପଲବ୍ଧି ବୁଦ୍ଧି ଜାତ ନୁହେଁ, ବୋଧିଜାତ । ଏଥିପାଇଁ ସେ ଯୁକ୍ତି-ତର୍କର ଅବତାରଣା କରେନାହିଁ । ଅନ୍ତରର ଆଲୋକକୁ ସେ ପ୍ରକାଶ କରିବାକୁ ଖୋଜେ ଗୋଟିଏ ପ୍ରତୀକ, ବ୍ୟଞ୍ଜନା କିମ୍ବା ସଙ୍କେତଦ୍ୱାରା; ଗୀତିକବିତାର ଏହି ପ୍ରତୀକ ହିଁ ପରମ ବୈଶିଷ୍ଟ୍ୟ । ଭାବ ଲୋଡ଼େ ଗୋଟିଏ ସୂକ୍ଷ୍ମ ଅବଲମ୍ବନ, କେତେ-ବେଳେ ତାହା ରୂପକ ଆକାରରେ ଅଭିବ୍ୟକ୍ତ ହୁଏ, ପୁଣି କେତେବେଳେ ତାହା ପ୍ରତୀକର ଆଶ୍ରୟ ନିଏ । କବିପ୍ରାଣରେ ପ୍ରତିଦୃଶ୍ୟମାନ ଜଗତ କିମ୍ବା ଶଶ୍ବତସ୍ରଷ୍ଟାଙ୍କର ଅଚିନ୍ତ୍ୟ ଲୀଳା-ରହସ୍ୟ ଯେଉଁ ଭାବ-ତରଙ୍ଗ ସୃଷ୍ଟିକରେ, କବି ସେହି ଭାବରସ ପାଠକପ୍ରାଣରେ ସଞ୍ଚାରିତ କରିବା ଉଦ୍ଦେଶ୍ୟରେ ଆଶ୍ରୟ ନିଏ ଗୋଟିଏ ପ୍ରତୀକର ।

ଯେପରି ଗୋପବନ୍ଧୁଙ୍କର ଗୋଟିଏ 'କାଙ୍କଣ ଗଛ'। ଏହାର ଅନ୍ତର୍ନିହିତ ଭାବ ହେଲା—ସ୍ୱାଧୀନତା ହେଉଛି ମନୁଷ୍ୟର ଜନ୍ମଗତ ଅଧିକାର, ମନୁଷ୍ୟର ଚିରକାମ୍ୟ ଅଲୌକିକ ସମ୍ପଦ। ପରାଧୀନତା କିମ୍ବା ପରନିର୍ଭରତାରେ ହିଁ ମନୁଷ୍ୟର ମୃତ୍ୟୁ। ଅନ୍ୟ ଉପରେ ନିର୍ଭର କରିବାଠାରୁ କାଙ୍କଣ ଗଛ ମରଣକୁ ଶ୍ରେୟସ୍କର ମନେକଲା, ଏବଂ ପରାଧୀନତାଠାରୁ ସ୍ୱାଧୀନତାର ଉତ୍କର୍ଷ ଜଗତକୁ ଦେଖାଇ ଦେଇ ଆତ୍ମବିସର୍ଜନ କଲା। କବି ଗୋପବନ୍ଧୁଙ୍କ ସମ୍ବେଦନଶୀଳ ଚିତ୍ତରେ ଏହି କରୁଣ ଦୃଶ୍ୟ ଯେଉଁ ମହାଭାବର ଉଦ୍ରେକ କଲା, ତାହା ହେଉଛି:—

'ସ୍ୱାଧୀନତା ପ୍ରିୟେ, ଧରି ଅପର ଚରଣ
ଭାଗ୍ୟ ଅରଜନୁଁ . ଶ୍ରେୟ ମଣିଲୁ ମରଣ।'

ସତେ ଯେପରି ଗୋପବନ୍ଧୁ ସ୍ୱାଧୀନତାର ମହତ୍ତ୍ୱ ଏ ପର୍ଯ୍ୟନ୍ତ ହୃଦୟଙ୍ଗମ କରି ନ ଥିଲେ, କାଙ୍କଣ ଗଛର ଅକାଳ ମୃତ୍ୟୁ ତାଙ୍କ ହୃଦୟରେ ଏହି ଭାବର ବୀଜ ବପନ କଲା। ଏପରି ଭାବିବା ବଡ଼ ବିଭ୍ରାନ୍ତିକର। କବିଙ୍କ ପ୍ରାଣରେ ସେ ଭାବ ଆଗରୁ ଅଛି। ପରାଧୀନ ଭାରତରେ ରହି କବି ସେ ବେଦନାରେ ଅହରହ ପୀଡ଼ିତ। ଏହି ପରାଧୀନତାର ନିଗଡ଼-ନିବନ୍ଧନରୁ ଭାରତ ମୁକ୍ତିଲାଭ ନ କଲେ, ଦେଶର ଭବିଷ୍ୟତ ଅନ୍ଧକାରମୟ, ସେତେବେଳକୁ ଗୋପବନ୍ଧୁଙ୍କ ପ୍ରାଣକୁ ଏହି ଭାବ ଆଲୋଡ଼ନ କରି ସାରିଲାଣି। ହୃଦୟର ସେହି ନିଗୂଢ଼ ଅନୁଭୂତି, ସ୍ୱାଧୀନତା ପାଇଁ ସେହି ପ୍ରାଣର ବ୍ୟାକୁଳତାକୁ ସେ ପ୍ରକାଶ କରିବାକୁ ଉତ୍କଣ୍ଠିତ। ଭାବ-ଜଗତରେ ଯାହା, ପ୍ରକୃତି-ଜଗତରେ ସେହି ଭାବର ପ୍ରତିଛବି ଦେଖି କବି-ପ୍ରାଣର ଯେଉଁ ଦୁଃଖାନୁଭୂତି, ଏବଂ ଆତ୍ମଗ୍ଲାନି, ତାହା ହିଁ ଏହି କବିତାରେ ପ୍ରକାଶ ପାଇଛି, ଗୋଟିଏ କାଙ୍କଣ ଗଛର ପ୍ରତୀକରେ। ଏହା ହିଁ କବି-ଚିତ୍ତର ପ୍ରତିକ୍ରିୟାଶୀଳତା। କବି କାଙ୍କଣ ଗଛର ଅକାଳ ମୃତ୍ୟୁରେ ତାହା ପ୍ରତି ସହାନୁଭୂତିଶୀଳ; କିନ୍ତୁ ସଙ୍ଗେସଙ୍ଗେ କବିଚିତ୍ତ ବିଦ୍ରୋହୀ ଓ ପ୍ରତିକ୍ରିୟାଶୀଳ, ହୋଇଉଠିଛି ମନୁଷ୍ୟର 'ଅବିବେକିତା' ଏବଂ 'ବଡ଼ପଣ' ଅଭିଳାଷ ବିରୁଦ୍ଧରେ ଏବଂ ପରାଧୀନତାର ଦୁର୍ବିସହ ଲାଞ୍ଛନା ଓ ତାଡ଼ନା ବିରୁଦ୍ଧରେ। କବିର ମନ ଏହିପରି ଦ୍ୱୈତ ଉପାଦାନରେ ଗଠିତ; କିନ୍ତୁ ସେଥିରେ ସଂଘର୍ଷ କିମ୍ବା ଦ୍ୱନ୍ଦ୍ୱ ନାହିଁ। କବିର ଶିଳ୍ପୀମନ ଏହି ଦ୍ୱୈତ ମଧ୍ୟରେ ସମନ୍ୱୟ ସମ୍ପାଦନ କରିପାରେ। ସ୍ଥୂଳତଃ 'ଗୋଟିଏ କାଙ୍କଣ ଗଛ' କବିତା କବିଙ୍କର ସ୍ୱାଧୀନତାପିପାସୁ ମନର ଏକ ପ୍ରତୀକ। କବିଙ୍କର ଭାବାଭିବ୍ୟକ୍ତି ଏଠାରେ ବ୍ୟଞ୍ଜନାଧର୍ମୀ ଓ ସଙ୍କେତମୟ, ତେଣୁ ଭାବୋଦ୍ଦୀପକ। ଗୋପବନ୍ଧୁଙ୍କ ମତରେ ପରାଧୀନତା କେବଳ ଦୁଃଖଦାୟକ ନୁହେଁ, ଏହା ଏକ ମହାପାପ। ପରାଙ୍ଗପୁଷ୍ଟତା ଜୀବନର ଏକ ମହାକଳଙ୍କ। ଫଳ-ଅଭିଳାଷରୂପକ ସ୍ୱାର୍ଥଲିପ୍ସା ମନୁଷ୍ୟ-ସମାଜର ଏକ ଅନ୍ତର୍ଘାତୀ ନୀଚ ପ୍ରବୃତ୍ତି। କାଙ୍କଣ ଗଛଟି ସ୍ୱାଧୀନଭାବରେ ପ୍ରକୃତିକୋଳରେ

ଅତ ସୁନ୍ଦରଭାବରେ ବଢ଼ି ଆସୁଥିଲା, ରାଶି ରାଶି ଫଳ ନଷ୍ଟ ହୋଇଗଲେ ମଧ୍ୟ ତା'ର ଚିନ୍ତା ନ ଥିଲା. କିନ୍ତୁ 'ଫଳାଭିଳାଷୀ' ଓ 'ଅବିବେକୀ' ମନୁଷ୍ୟ ହାତରେ ରଞ୍ଜା ଝଞ୍ଜା ହେଲାଷଣି ସ୍ୱାଧୀନତା ହରାଇ ସେ ଦୁଃଖରେ ମୁହ୍ୟମାନ ହୋଇପଡ଼ିଲା । ମନୁଷ୍ୟ ହାତର ଏ 'ରଞ୍ଜାଝଞ୍ଜା' ଓ ସ୍ୱାର୍ଥ-ପ୍ରଣୋଦିତ ପାପସ୍ପର୍ଶ ତା'ର ସରଳ ନିଷ୍ପାପ ଓ ସ୍ୱାଧୀନ ଜୀବନରେ ଦେଲା ଦାରୁଣ ଧକ୍କା । ତେଣୁ ସ୍ୱର୍ଣ୍ଣକାନ୍ତର କବି ବେଦନାହତ ଓ କ୍ରୋଧ-ବିକ୍ଷୁବ୍ଧ ହୋଇ ଲେଖିଛନ୍ତି :—

> 'କିନ୍ତୁ ଫଳ-ଅଭିଳାଷୀ ଦୁରାଗ୍ରହ୍ୟ ନର,
> ଲଗାଇଲେ ତୋ ଦବ୍ୟ ଶୁଦ୍ଧ କଳେବରେ କର,
> ହୋଇଲ ପଡ଼ିଲୁ ସିନା ପାପର ପରଶେ
> ସ୍ୱାଧୀନତା ହରାଇଣ ରହିଛୁ ବରଷେ ।
> ରଞ୍ଜାଝଞ୍ଜା ହେଲା ତୋର ଅଙ୍ଗ ବୃଦ୍ଧିଲାଗି
> କହ ତା ସଂଯୋଗେ କମା ହେଲୁ ଦୁଃଖଭାଗୀ ?
> ଅନ୍ୟର ଆଗ୍ରହ ପାଇ ଉଚ୍ଚେ ଶିର ଟେକ
> ବଡ଼ପଣ ଅଭିଳାଷେ ନର-ଅବିବେକୀ ।
> ସ୍ୱାଧୀନତାପ୍ରିୟେ ଧରି ଅପର ଚରଣ
> ଭାଗ୍ୟ ଅରଜନୁଁ ଶ୍ରେୟ ମଣିଲୁ ମରଣ ।'

ଏହି କବିତାରେ ଅନ୍ତର୍ନିହିତ ପରାଧୀନତାର ବେଦନା, ଏବଂ ସ୍ୱାଧୀନତାର ଶୁଭକାମନା ଗୋପବନ୍ଧୁଙ୍କର, କିନ୍ତୁ ଏହା ଆରୋପିତ ହୋଇଛି ଅକାଳ ମୃତ୍ୟୁ ବରଣ କରିଥିବା କାଙ୍କଣି ଗଛ ଉପରେ । ଅନ୍ତରର ଆଲୋକରେ ବହିର୍ଜଗତ ଉଦ୍ଭାସିତ ହୋଇଅଛି । ଅତ ପରିଚିତ ଓ ତୁଚ୍ଛ କାଙ୍କଣିଗଛ ଆମକୁ ପରାଧୀନତାର ଆତ୍ମ-ସଙ୍କୋଚରେ ଜର୍ଜରିତ କରିଅଛି । ସ୍ୱାଧୀନତାର ମହନୀୟତାରେ ଅନୁପ୍ରାଣିତ କରିଅଛି ।

ଏହି କବିତାଟି ପଢ଼ି ଜଣେ ଉଚ୍ଚଶିକ୍ଷିତ ବ୍ୟକ୍ତିଙ୍କ ମନରେ ଯେଉଁ ଆଲୋଡ଼ନର ସୃଷ୍ଟି ହୋଇଥିଲା, ତାହା ସେ ନିଜେ ଅତ ଜୀବନ୍ତଭାବରେ ବର୍ଣ୍ଣନା କରିଅଛନ୍ତି । ଉଚ୍ଚ ସରକାରୀ କର୍ମରୁ ଅବ୍ୟାହତି ନେଇଥିବା ଶ୍ରୀ ଭରତଚନ୍ଦ୍ର ନାୟକ ତାଙ୍କର 'ପୂର୍ବସ୍ମୃତି' ପ୍ରବନ୍ଧରେ (ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା ସମାଜ, ୧୯୬୮, ଜୁଲାଇ ୧୬ ତାରିଖ) ଲେଖି ଅଛନ୍ତି 'ଗୋପବନ୍ଧୁଙ୍କ ସଙ୍ଗେ ମୋର ପ୍ରଥମ ସାକ୍ଷାତ୍ ହୁଏ ୫୭ ବର୍ଷ ପୂର୍ବେ ୧୯୦୪ ମସିହାରେ × × × × ଶୁଣିଥିଲି ସେ କବି, ଛାତ୍ରାବସ୍ଥାରୁ ସେ କବିତା ରଚନା କରୁଥିଲେ । ତାଙ୍କ ରଚିତ 'ଅବକାଶ-ଚିନ୍ତା' କବିତା-ପୁସ୍ତକଟିଏ ହସ୍ତଗତ କଲି । ପଢ଼ୁଁ ପଢ଼ୁଁ 'ଗୋଟିଏ କାଙ୍କଣିଗଛ' କବିତାଟି ପାଠରେ ମୋର

କ୍ଷୁଦ୍ର ହୃଦୟ ସ୍ପନ୍ଦିତ ହେବାକୁ ଲାଗିଲା । ବର୍ଷକପୂର୍ବେ ତାଙ୍କର ଗ୍ରନ୍ଥାବସ୍ଥା ଥିଲା । ପୂର୍ବବର୍ଷ (୧୯୦୬) ସେ ବି. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । କବିତାର ଦୁଇଟି ପଙ୍କ୍ତି ମର୍ମସ୍ପର୍ଶୀ ।

"ସ୍ୱାଧୀନତାପ୍ରିୟେ ! ଲଭି ଅପରିଚରଣ,
ଭାଗ୍ୟ ଅରଜନୁ ଶ୍ରେୟ ମଣିଲୁ ମରଣ ।"

ବୁଝିଲି, କଟକରେ କଲେଜ ବୋର୍ଡ଼ିଂରେ ରହୁଥିବା ସମୟରେ ସେ ଅଙ୍ଗନରେ ସ୍ୱହସ୍ତରେ ଗୋଟିଏ କାଙ୍କଣଗଛ ରୋଇଥିଲେ ଓ ତହିଁରେ ରଞ୍ଜାଦେଇ ସ୍ୱହସ୍ତରେ ପାଣି ଦେଇ ବଢ଼ାଇଥିଲେ; କିନ୍ତୁ ରଞ୍ଜାରେ ମାଡ଼ିବାର କେତେଦିନ ପରେ ସେ ଗଛଟି ହଠାତ୍ ମରି ଶୁଷ୍କ ହୋଇଗଲା ଏବଂ ଏହା ଦେଖି ସେ ବ୍ୟଥିତ ହୋଇଥିଲେ । ପଙ୍କ୍ତିଦ୍ୱୟରେ ସେ କାଳର ତାଙ୍କ ହୃଦୟର ଅନ୍ତରତମ ଭାବ ପ୍ରତିଫଳିତ । ଯେତେବେଳେ ଶ୍ୱେତାଙ୍ଗ ଶାସକଙ୍କଦ୍ୱାରା ଶୃଙ୍ଖଳାବଦ୍ଧ କୁକୁର ତୁଲ୍ୟ ଦାସତ୍ୱ ଶୃଙ୍ଖଳବଦ୍ଧ ଉଚ୍ଚଶିକ୍ଷା ପ୍ରାପ୍ତ ଯୁବକବୃନ୍ଦ ମୂର୍ଚ୍ଛିତ, ସେତେବେଳେ ଗୋପବନ୍ଧୁଙ୍କ ଉଦାର ହୃଦୟରେ ସ୍ୱାଧୀନତା-ବହ୍ନି ପ୍ରଦୀପ୍ତ । ଏହାର ବହୁକାଳ ଉତ୍ତାରେ ଭାରତ ବାସୀ ସ୍ୱାଧୀନତା ସ୍ୱପ୍ନ ଦର୍ଶନ କଲେ ।"

'ଗୋଟିଏ କାଙ୍କଣ ଗଛ' କବିତାର ଏ ପ୍ରାଣସ୍ପନ୍ଦନ ଓ ପ୍ରତିକ୍ରିୟା ଏହି ୧୯୭୫ ମସିହାରେ କ'ଣ ସ୍ୱାଧୀନତାପ୍ରାପ୍ତ ଆଧୁନିକ ପାଠକର ପ୍ରାଣକୁ ଉଦ୍‌ବେଳିତ କରେନାହିଁ ? ଏବେ କ'ଣ ଆମେ ସବୁ ବିଷୟରେ ସ୍ୱାଧୀନ ଓ ଆତ୍ମନିର୍ଭରଶୀଳ ? ମନୁଷ୍ୟର ପାପସ୍ପର୍ଶରେ ଏବେ ମଧ୍ୟ କ'ଣ ମନୁଷ୍ୟ ଆତଙ୍କିତ ନୁହେଁ ? ଏବେ କ'ଣ ପୃଥିବୀରେ ପରମୁଖାପେକ୍ଷୀ ଓ ପଦାଙ୍ଗପୁଷ୍ଟ ମାନବ-ସମାଜ ନାହିଁ ? ?

ସେହିପରି 'ଅବକାଶଚିନ୍ତା'ର ଆଉ ଦୁଇଟି ଆବେଦନଶୀଳ ପ୍ରତୀକଧର୍ମୀ କବିତା ହେଉଛି, 'ଅନାଥକଳିକା' ଓ 'ଗ୍ରୀଷ୍ମେ ଖୁଣ୍ଟା ବରଗଛ' । 'ଗୋଟିଏ କାଙ୍କଣ ଗଛ' ଯେପରି ତାଙ୍କର ସହଜାତ ସ୍ୱାଧୀନତା ପ୍ରୀତିର ପ୍ରତିଚ୍ଛବି, 'ଅନାଥକଳିକା, ସେହିପରି ତାଙ୍କର ତ୍ରାଣ-ପ୍ରାଚୁର୍ଯ୍ୟ ଏବଂ ପରର ଦୁଃଖପ୍ରତି ବିସ୍ତୃତ ସହାନୁଭୂତି-ଶୀଳତାର ଜ୍ୱଳନ୍ତ ପ୍ରତୀକ । ସାହିତ୍ୟସମାଲୋଚକ କହେ, "ସାହିତ୍ୟର ଅସଲ ଫଳ, ଚିତ୍ତର ପରିଶୋଧନ ନୁହେଁ, ଚିତ୍ତର ସମ୍ପ୍ରସାରଣ ଏବଂ ଅନୁଭୂତିର ଗଭୀରତା ସମ୍ପାଦନ । ସାହିତ୍ୟର ପ୍ରଧାନଗୁଣ ତୀବ୍ର ଅନୁଭୂତି ଓ ବିସ୍ତୃତ ସହାନୁଭୂତି । ଏହି ଅର୍ଥରେ ଶିଳ୍ପ ଓ କାବ୍ୟ ଵ୍ୟକ୍ତିତ୍ୱର ବିକାଶାତ୍ମକ । ଏଥିରେ ଚିତ୍ତ ବିଗଳିତ ହୁଏ ଏବଂ ତାହା ବ୍ୟକ୍ତିଗତ ଭୂମିକା ପରିତ୍ୟାଗକରି ଅସୀମ ଓ ଚିରନ୍ତନର ଦିଗକୁ ଧାବିତ ହୁଏ । ବାହାରର ଘଟନା ମାନବ-ଜୀବନର ଅଂଶମାତ୍ର ଏବଂ ତାହା

ସେତିକିବେଳେ ସମ୍ପୂର୍ଣ୍ଣ ମୂଲ୍ୟ ପାଏ, ଯେତେବେଳେ ଆମେ ତାହାକୁ ଆମର ଅନ୍ତରଲୋକ ସହିତ ଯୁକ୍ତକରି ଦେଖୁଁ, ଶିଳ୍ପ ଓ ସାହିତ୍ୟ ଏହି ଅନ୍ତର ଲୋକକୁ ହିଁ ଉଦ୍ଭାସିତ କରେ ।"

ଏ ବଙ୍ଗ ସମାଲୋଚକ ଯେଉଁ ଦେଶର କମ୍ବା କାଳର ହୁଅନ୍ତୁ ପଛକେ, ସାହିତ୍ୟର ଏହି ସ୍ୱରୂପ ନିର୍ଣ୍ଣୟରେ କାହାର ମତଦ୍ୱୈଧ ରହି ନ ପାରେ ଏବଂ ସେ ଯେଉଁ ଗଭୀର ଅନୁଭୂତି, ବିସ୍ତୃତ ସହାନୁଭୂତି ଏବଂ ଅନ୍ତରଲୋକର ଉଦ୍ଭାସନ କଥା କହିଅଛନ୍ତି, ଗୋପବନ୍ଧୁଙ୍କ 'ଅନାଥା କଳିକା' ପ୍ରତି ସେ ସବୁ ଉକ୍ତି କେତେଦୂର ପ୍ରଯୁଜ୍ୟ, ତାହାର ପ୍ରମାଣ କେବଳ ସହୃଦୟ ପାଠକମାନଙ୍କର ହୃଦୟ । କବି ନିର୍ଜନମଲ୍ଲିକାର କୋରକରେ ଯେଉଁ ସ୍ୱର୍ଗୀୟ ସରଳ ଭାବ ଓ ପବିତ୍ର ମାଧୁରୀ ଦେଖିଅଛନ୍ତି ତାହି ହିଁ ତାଙ୍କ ଜୀବନର ସାରଲ୍ୟ ଓ ପବିତ୍ରତା । ସମଗ୍ର 'ଅବକାଶ-ଚିନ୍ତା' କବିତା ପୁସ୍ତକଟି ମଧ୍ୟ ଏହିପରି ସ୍ୱର୍ଗୀୟ ସରଳ ଭାବରେ ପ୍ଲାବିତ ।'

'ସ୍ୱର୍ଗୀୟ ସରଳ ଭାବ ପବିତ୍ର ମାଧୁରୀ
ଏ ନବ କୋରକେ ଅଛି ଅପ୍ରକାଶ୍ୟେ ପୂରି ।'

କବିଙ୍କ ଜୀବନର ମଧ୍ୟ ସେତେବେଳେ କୋରକିତ ଅବସ୍ଥା; କିନ୍ତୁ ଏ କୋରକିତ ଅବସ୍ଥାରେ ମାନବିକତାର ଏ ସୁବିପୁଳ ସୌରଭ ଆମ୍ଭମାନଙ୍କର ଅନ୍ତର-ଲୋକକୁ ଏପରିଭାବରେ ସୁବାସମୟ କରିଦିଏ ଯେ ଚିତ୍ତ ତା'ର ସୀମିତ ପରିସରରୁ ମୁକ୍ତ ହୋଇ ବୃହତ୍ତର ବ୍ୟାପ୍ତିର ମହିମାରେ କୃତାର୍ଥତା ଲାଭକରେ । ଗୋଟିଏ ହୃଦୟର ଉଜ୍ଜ୍ୱଳ ଶିଖା ସହସ୍ର ହୃଦୟକୁ ଦୀପ୍ତ ଆଲୋକରେ ଉଦ୍ଭାସିତ କରେ । ଜଣେକର ଦୁଃଖ ସହସ୍ର ନୟନରେ ଅଶ୍ରୁ-ପ୍ରସ୍ରବଣ ସୃଷ୍ଟିକରେ । କବି ପ୍ରାଣର ଏହି ସମ୍ବେଦନଶୀଳତା, ଯାହାକି ଜୀବନର ଅନ୍ତିମ ନିଃଶ୍ୱାସ ପର୍ଯ୍ୟନ୍ତ ତାଙ୍କୁ ଅଶ୍ରୁ-ପ୍ଲାବିତ କରି ରଖିଥିଲା, ତାହାହିଁ 'ଅନାଥାକଳିକା'ର ମର୍ମବାଣୀ । ବୋଧହୁଏ ଯୌବନରେ ପତିବିରହିତା ଓ ବୈଧବ୍ୟ ବେଦନାକ୍ଲିଷ୍ଟା କୌଣସି ନାରୀର ଦୁଃଖ ତାଙ୍କ ପ୍ରାଣକୁ ଏପରି ସ୍ପର୍ଶକରିଛି ଯେ, ସେ ଦୁଃଖ ସେ ଭୁଲି ପାରିନାହାନ୍ତି । ସେହି ଅଶ୍ରୁମୟୀ ବିଧବା ପ୍ରତି କେହି ଟିକିଏ ସ୍ନେହ ସହାନୁଭୂତି ଦେଖାଉନାହାନ୍ତି । ତା ପାଖରେ ବସି କେହି ତାକୁ ପଦେ 'ଆହା' ବୋଲି କହୁନାହାନ୍ତି । ମନୁଷ୍ୟ ଏତେ ସ୍ୱାର୍ଥପର, ପରର ଦୁଃଖ ପ୍ରତି ଏତେ ଉଦାସୀନ, ଏତେ ମମତାହୀନ, ତାହାହିଁ ତାଙ୍କର ସୁକୁମାର ଦରଦଭରା ଭାବପ୍ରବଣ ମନକୁ ପୀଡ଼ିତ କରିଛି । ତେଣୁ 'ମୋ ନାମ' କବିତାରେ ସ୍ୱତଃ ଯେପରି ବୈଧବ୍ୟସନ୍ତାପିତା ନାରୀମାନଙ୍କ ପ୍ରତି ସମବେଦନା ଜଣାଇ ନିଜେ ଦୁଃଖର ଉପଶମ ଲୋଡ଼ିଛନ୍ତି ଏବଂ ବୈଧବ୍ୟକୁ ମହିମାର ଦୀପ୍ତି ଓ ପ୍ରଶାନ୍ତି ଦେବାକୁ ଯାଇ ଲେଖିଅଛନ୍ତି—

'ସଦାଶୟା ସ୍ନେହମୟୀ ପରମପାବନୀ,
ଜୀବନ-ମହତ-ଲକ୍ଷ୍ୟ ସାଧୁଛ ନୃପତେ ।
ତୁମ୍ଭ ରୀତ ଆଚରିଲେ ସକଳ କାମିନୀ,
ଓହ୍ଲାଇ ଆସନ୍ତା ସ୍ୱର୍ଗ ଏ ମର୍ତ୍ତ୍ୟ ଜଗତେ ।'

କିନ୍ତୁ 'ଅନାଥାକଳିକା'ର ଜୀବନର ବ୍ୟର୍ଥତାରେ କବିଙ୍କର ଯେଉଁ ସୁଗଭୀର ଦୁଃଖ, ସେ ଉପଶାନ୍ତ ହେବାର ନୁହଁ । ବାଳିକା-କଳିକା ଯୌବନର ଆଦ୍ୟ ପ୍ରସ୍ଫୁଟନରେ ପ୍ରଣୟର କେତେ ମଧୁର ସ୍ୱପ୍ନ ଦେଖୁଥିଲା; କିନ୍ତୁ ତା' ଜୀବନର ପ୍ରେମିକ ଭ୍ରମରକୁ କେଉଁ ପାନ୍ଥ ନିର୍ମମରେ ପାଦରେ ଦଳିଦେଇଗଲା । ସେ ବର୍ତ୍ତମାନ ଅନାଥା । ନିରାଶ୍ରୟା ଓ ନୈରାଶ୍ୟଜର୍ଜରିତା । ଏହି ଅନାଥା ପ୍ରତି କବିଙ୍କର ସମବେଦନା କି ନିଷ୍କପଟ କାରୁଣ୍ୟରେ ଅନୁରଞ୍ଜିତ ହୋଇ ପ୍ରକାଶିତ ହୋଇଛି !

'ବନ-ନିବାସିନୀ ମଲ୍ଲୀ ଏ ନବ ଯୌବନେ,
ଏକାକିନୀ ଅନାଇଛୁ ଅନନ୍ତ ଗଗନେ ।
ନୀରବେ ଶିଶିର-ଅଶ୍ରୁ ଗଳାଇ ନୟନୁ
କମ୍ପେ ବିଧୁରାର ଆହା ନିରାଶ୍ରୟ ତନୁ ।
ଚୁପଚେ ବାହୁନି କି ସେ କରଇ ବିଳାପ,
ପାଷାଣ-ମାନବ-ହୃଦ ଜାଣେ କି ସେ ତାପ ?
ସହୃଦୟେ କେହି ଥରେ ନ ପକାଏ ଦୃଷ୍ଟି,
ଧରାଧାମେ ଅକାରଣ ହେଲା କି ତା ସୃଷ୍ଟି ?'

ଦୁଃଖ ତ ସଂସାରରେ ଅଛି, ରହିବ । 'ଆହ୍ଲାଦ' ସହିତ ଅପାର କଷଣ ଏହା ତ ବିଶ୍ୱ ନିୟନ୍ତାଙ୍କର ସୃଷ୍ଟିର ବିଧାନ; କିନ୍ତୁ ସେ ଦୁଃଖର ଭାର ଲଘୁକରେ, ସହୃଦୟ ବ୍ୟକ୍ତିର ଆନ୍ତରିକ ଆଶ୍ୱାସନା, ସ୍ନେହ, ସହାନୁଭୂତି । ସେତିକି ନ ଥିଲେ ଏ ସଂସାର କେବଳ ମରୁଭୂମି ତୁଲ୍ୟ ଏବଂ ମନୁଷ୍ୟସମାଜ ପଶୁସମାଜ ସହିତ ସମାନ । ତଥାପି ଅନାଥାର ଦୁଃଖ କରିବାର କୌଣସି କାରଣ ନାହିଁ । କାରଣ—

'ପ୍ରଣୟର ସ୍ଥାନ ନୁହେଁ ଏ ସଂସାର ଏକା,
ପ୍ରେମେ ପ୍ରଣୟୀ ସଙ୍ଗତେ ହେବ ସ୍ୱର୍ଗେ ଦେଖା ।'

ବୃହତ୍ତର ପରିମଣ୍ଡଳରେ ପ୍ରେମର ଏହି ଯେଉଁ ବିଶ୍ୱବ୍ୟାପୀ ପ୍ରସାର, ଏହା ହିଁ ଇଙ୍ଗିତ ଦିଏ, ଏହି କବିତା 'ଦ୍ରୁତ ବିସ୍ତାର ବିକାଶାତ୍ମକ' । ଏହା ଆମ୍ଭମାନଙ୍କର ଚିତ୍ତକୁ କରୁଣ ରସରେ ଯେପରି ବିଗଳିତ କରୁଅଛି, ସେହିପରି ଏହା ବ୍ୟକ୍ତିଗତ

ଭୂମିକା ତ୍ୟାଗକରି ଚରନ୍ତନ ଦଗକୁ ଧାବିତ ହୋଇଅଛୁ । ଅନନ୍ତର ଅନୁପ୍ରେରଣାରେ ଚିତ୍ତଭୂମି ଉଦ୍ଭାସିତ ହୋଇଉଠୁଛୁ । ମାନବତାର ଐଶ୍ୱର୍ଯ୍ୟ ଆମ ଆତ୍ମାର ଉଦ୍‌ଗତି ବିଧାନ କରୁଛୁ ।

'ଖୁଣ୍ଟା ବରଗଛ' କବିତାରେ କବିପ୍ରାଣରେ ସେହି ସମବେଦନା ଓ ଭାବ-ପ୍ରବଣତା ପରିସ୍ଫୁଟ । 'ଖୁଣ୍ଟା ବରଗଛ' ଯେପରି ଜରାଜୀର୍ଣ୍ଣ ଓ ଅସ୍ଥିକଙ୍କାଳସାର, କୌଣସି ନିଃସହାୟ ଓ ନିଃସଙ୍ଗ ବ୍ୟକ୍ତିର ପ୍ରତୀକ । ଦିନେ ଏହା ଯୌବନଶ୍ରୀରେ ମଣ୍ଡିତ ଥିଲା, ପ୍ରାଣର ସଜଳ ଐଶ୍ୱର୍ଯ୍ୟରେ ବିଭବବନ୍ତ ଥିଲା, ଆଜି ତା'ର ସେ ସବୁ ନାହିଁ । କେବଳ ଅତୀତ ଗୌରବର କାରୁଣ୍ୟପୂର୍ଣ୍ଣ ସ୍ମାରକସ୍ୱରୂପ ସେ ନୀରବ ନିଷ୍ଚଳରେ ଠିଆହୋଇ ରହିଛୁ । ପ୍ରଚଣ୍ଡ ଦୁଃଖର ଦାବଦାହରେ ସେ ଯେପରି ଜଳି ଯାଉଛୁ୍ । ଯୌବନର ଅବସାନ ଏବଂ ଜରାର ଆକ୍ରମଣ ଦେଖି ଗୋପବନ୍ଧୁ ଯେ କୌଣସି ସାଧାରଣ କବି ପରି କେବଳ ମନୁଷ୍ୟ ଜୀବନର କ୍ଷଣଭଙ୍ଗୁରତାରେ ମର୍ମାହତ ହୋଇନାହାନ୍ତି । କବିଙ୍କର କଳ୍ପନା ଏଠାରେ ଅତୀତର ସୁଦୂର ଦିଗ୍‌ବଳୟସୀମା ପର୍ଯ୍ୟନ୍ତ ପ୍ରସାରିତ ହୋଇଅଛୁ । ସ୍ମୃତିରେ ଆଲୋଡ଼ନ ଆସିଛୁ । ଚର୍ମଚକ୍ଷୁ ମର୍ମ-ଚକ୍ଷୁରେ ପରିଣତ ହୋଇଅଛୁ । ବହିର୍ଜଗତରୁ କବି ଅନ୍ତର୍ଜଗତକୁ ଫେରିଯାଇଅଛନ୍ତି । ଭାରତର ଅତୀତ ଗୌରବର ସ୍ମୃତି ପ୍ରାଣରେ ଢାଳି ଦେଇଛୁ ବିଷାଦର ମସୀ । ଭାରତର ବର୍ତ୍ତମାନକୁ ସେ ଅତୀତ ସହିତ ତୁଳନାକରି ଭାରତୀୟମାନଙ୍କର ନୈତିକ ଓ ଆଧ୍ୟାତ୍ମିକ ଅଧଃପତନ ଚିନ୍ତାକରି ଦୁଃଖରେ ଆକୁଳ ହୋଇପଡ଼ିଛନ୍ତି । ଏ ଯୁଗରେ କେବଳ 'ଗୃହସ୍ଥାଶ୍ରମ'ହିଁ ସାର । ଲୋକମାନଙ୍କର ଅନ୍ୟ ଚିନ୍ତା ନାହିଁ । ଗୃହସ୍ଥାଶ୍ରମ ଯେ ଅପାଙ୍‌କ୍ତେୟ, ସମସ୍ତେ ଯେ କେବଳ ବ୍ରହ୍ମଚାରୀ କିମ୍ବା ବୈରାଗୀ ହୋଇ ବନକୁ ଯିବେ, ଏ କଥା ସେ କହୁନାହାନ୍ତି; କିନ୍ତୁ ଖୁଣ୍ଟା ଗଛକୁ ପ୍ରତୀକକରି ସେ ଆମ୍ଭମାନଙ୍କୁ ଜୀବନର ଯେଉଁ ମହତ୍ ଆଦର୍ଶ ପ୍ରତି ସଚେତନ ହେବାକୁ ପ୍ରୟାସୀ ହୋଇଅଛନ୍ତି, ତାହା ହେଉଛୁ—

> "ଗୃହସ୍ଥାଶ୍ରମ ଏକା ଏ ଯୁଗେ ସାର
> ନ ତୁଟେ ମଲାଯାଏ ମାୟା-ସଂସାର ।
> ଗୃହସ୍ଥାଶ୍ରମେ ପୁଣି ନାହିଁ ସେ ନୀତି
> ଧର୍ମକର୍ମ-ସାଧନେ ସରଳ ପ୍ରୀତି ।
> ସ୍ୱାର୍ଥ-ସାଧନେ ରତ ସର୍ବେ ନିରତେ
> କେତେକାଳ ଏପରି ହେବ ଭାରତେ ?"

ବିଶୁଦ୍ଧ ସୌନ୍ଦର୍ଯ୍ୟୋପାସକ ସାହିତ୍ୟ ସମାଲୋଚକ ଏଠାରେ ପ୍ରଶ୍ନ ଉଠାଇବେ ଏ ତ କେବଳ ନୈତିକ ନୀତି ଉପଦେଶ, ଏଥିରେ କବିତ୍ୱଛଟା କାହିଁ ? କଳ୍ପନା

ଓ ଆବେଗର ପ୍ରବାହ କାହିଁ ? କିନ୍ତୁ ସମଗ୍ର କବିତାଟି ଆଲୋଚନା କଲେ ସମାଲୋଚକଙ୍କର ଏ ଉକ୍ତି କେବଳ ଧୂମ କୁଣ୍ଡଳୀରେ ପରିଣତ ହୁଏ । ସେଥିରେ ପୁଣି ଏପରି ଉପଦେଶର ଆବଶ୍ୟକତା ବର୍ତ୍ତମାନ ଭାରତରେ ବିଶେଷଭାବରେ ଉପଲବ୍ଧି କରାଯାଏ । 'ଧର୍ମକର୍ମ ସାଧନାରେ ସରଳ-ପ୍ରୀତି'ର ଅଭାବରୁ ଏବଂ ସ୍ୱାର୍ଥ ସାଧନର ବିକଟ ପୈଶାଚିକ ପ୍ରବୃତ୍ତିର ପ୍ରାଦୁର୍ଭାବରୁ ତ ଆମର ଆଜି ଏହି ନୈତିକ ଦୁର୍ଦ୍ଦଶା । ଚତୁର୍ଦ୍ଦିଗରେ 'ଦୁର୍ନୀତିର ହୁରି', ସଦାଗ୍ରହ, ସମିତିଗଠନ ଓ ଆଚରଣବିଧି ପ୍ରଣୟନର ଆୟୋଜନ । କବି ପରା 'Unacknowledged Legislator of the world' ସମାଜର ସଗଠକ, ନିୟାମକ ଓ ଭବିଷ୍ୟଦ୍ରଷ୍ଟା, ସେ ଯଦି ଏପରି ଉପଦେଶ ନିଜର କଳ୍ପନାରଙ୍ଗରେ ରଞ୍ଜିତକରି ନ ଦେବ, ଅଉ ଦେବ କିଏ ? ସେ ସରସ ସୁନ୍ଦର ଉପଦେଶ ଯଦି ଏପରି ଜଣେ ବ୍ୟକ୍ତିତ୍ୱବାନ ଓ ସ୍ୱାର୍ଥ-ତ୍ୟାଗୀ ମହାପୁରୁଷଙ୍କ ଲେଖନୀରୁ ନିଃସୃତ ହୁଏ, ଯାହାଙ୍କୁ ମୁକ୍ତକଣ୍ଠରେ ଏ ଦେଶର ଲୋକେ 'ଦଧୀଚି' ଆଖ୍ୟା ଦେଇଅଛନ୍ତି ଏବଂ ଯାହାର ସ୍ମୃତି-ତର୍ପଣ ଏ ପର୍ଯ୍ୟନ୍ତ ସରିନାହିଁ, କି କେବେ ସରିବ ନାହିଁ, ତେବେ କ'ଣ ସେ ଉପଦେଶକୁ ଆମେ ସାହିତ୍ୟ-ଜଗତରୁ ନିର୍ବାସିତ କରି ତାକୁ ଅପାଙ୍‌କ୍ତେୟ କରି ନିଶ୍ଚିନ୍ତ ହୋଇ ରହିବା ?

ଯାହାକୁ କୁହାଯାଏ ବିଶୁଦ୍ଧ ସରଳ କବିତା, ଯେଉଁଠାରେ କବିଙ୍କର ପ୍ରତୀକ ପ୍ରୟୋଗର ପ୍ରୟାସ ନାହିଁ କି ଅତୀତର ସ୍ମୃତି-ରୋମନ୍ଥନର ଦୁଃଖ ନାହିଁ, କିବା ଯେଉଁଠାରେ ତତ୍ତ୍ୱଜିଜ୍ଞାସୁ ନୁହନ୍ତି, କି ନିଜ ଜୀବନର ପ୍ରତିଷ୍ଠିତ ଭାବାଦର୍ଶ ଓ ଭବିଷ୍ୟତର ଅଭିଳାଷ ପୋଷଣ କରିନାହାନ୍ତି, ସେପରି ବିଶୁଦ୍ଧ ନିଃସର୍ଗ କବିତା ବି ଅବକାଶ ଚିନ୍ତାରେ ଅଛି । ଏକ ଅସହ୍ୟ ବର୍ଷାର ଅବ୍ୟବହିତ ପରେ ସେ ନଭଃକୁ ଦର୍ଶନ କରି ଏହାର ପ୍ରଶାନ୍ତ ଓ ସ୍ନିଗ୍ଧ ସୌନ୍ଦର୍ଯ୍ୟରେ ବିମୁଗ୍ଧ ଓ ବିଭୋର ହୋଇ ଲେଖି ଅଛନ୍ତି—

> 'ଦେଖ ଦେଖ ବନ୍ଧୁଗଣ ପୂରାଇ ନୟନ
> ଏ ଯୋଗ ଜୀବନେ ଘଟେ ଅତି ଅଳ୍ପକ୍ଷଣ ।'

କିମ୍ବା ମନ ଯେତେବେଳେ ବିଷାଦରେ ଭାରାକ୍ରାନ୍ତ, ଆଶାର କ୍ଷୀଣ ଆଲୋକର ଆଭାସ ପର୍ଯ୍ୟନ୍ତ ନାହିଁ, ଜୀବନଯନ୍ତ୍ରର ତାର ଯେତେବେଳେ ଅତ୍ୟନ୍ତ ସ୍ୱରହୀନ, ସେତେ-ବେଳେ କବିଙ୍କର ଶେଷ ଆଶ୍ରୟ ଓ ଆଶ୍ୱାସନା—

> "ଶୁଣି ଖଗ-ମଧୁର କାକଳୀ
> ଜୀର୍ଣ୍ଣ ବୀଣା ରଖିବ ସମ୍ଭାଳି
> ପକ୍ଷିଗୀତେ ଦେବ କରତାଳି
> କେହି ମୋର ନ ଥିବେ ବିବାଦୀ ।

ତରୁଲତା ନବ କିଶଳୟେ
ବିରଚିଛି କୋମଳ ଆସନ
ଶୋଇଛି ମୁଁ ବିତାନ ହୃଦୟେ
ଶୁଣିବାକୁ ବାୟୁ ସନସନ !"

## (୫) 'ନିଜ ଅଭ୍ୟନ୍ତର'

ରାମକୃଷ୍ଣ ପରମହଂସଙ୍କର ଉପଦେଶାମୃତ, "ତୁଷାର ଯେପରି ସ୍ଥିତ ଥାଏ ବିଗଳିତ ନଦୀସ୍ରୋତରେ, ଜ୍ଞାନ ସେପରି ଆଶ୍ରୟ ପାଏ ଭାବର ତରଳୀଭବନରେ । ଭକ୍ତି ଛଡ଼ା ଜ୍ଞାନର ଠିଆହେବାର ସ୍ଥାନ କାହିଁ ? ସର୍ବଭୂତେ ଭଗବାନ ଏ କଥା ଜାଣି ମୋର କି ଲାଭ ଯଦି ମୁଁ କାହାକୁ ଭଲ ନ ପାଏ ? କାହାର ଦୁଃଖ ଦେଖି ନ କାନ୍ଦେ ? ଜ୍ଞାନକୁ କାର୍ଯ୍ୟରେ ଲଗାଇପାରିଲେ ହିଁ ଭକ୍ତି । ଦ୍ରବୀଭୂତ ହୋଇପାରିବାର ନାମ ସିଦ୍ଧ ହେବ ।"

ତେଣୁ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କୁ ଯେତେବେଳେ ରାମକୃଷ୍ଣ କହିଲେ, 'ତୁମେ ସିଦ୍ଧ ପୁରୁଷ', ବିଦ୍ୟାସାଗର ଆଶ୍ଚର୍ଯ୍ୟ ହୋଇ କହିଲେ, "କାହିଁ ମୁଁ ତ କେବେ ଭଗବାନଙ୍କୁ ଡାକିନାହିଁ ?"

ସିଦ୍ଧ ହେବାର ଏକ ଅପୂର୍ବ ଅର୍ଥ କରି ପରମହଂସ କହିଲେ, "ଆଳୁ ପୋଟଳ ସିଦ୍ଧ ହେଲେ କ'ଣ ହୁଏ ଜାଣ ? ନରମ ହୁଏ । ତୁମର ଚିତ୍ତ ନରମ ଓ ଦ୍ରବୀଭୂତ । ପରର ଦୁଃଖରେ ତୁମେ ଏତେ କାନ୍ଦ, ତୁମର ଏତେ ଦୟା ।"

ପରମହଂସଙ୍କର ଏ ଉପଦେଶ ଏତିକରେ ଶେଷ ହେଲନାହିଁ । ପୁଣି ଚାଲିଲା, "ପରର ଦୁଃଖରେ ଯଦି ପ୍ରକୃତରେ ମୁଁ କାନ୍ଦେ, ତେବେ ଏହା ହିଁ ଭାବି କାନ୍ଦେ ଯେ ସେ ଓ ମୁଁ ଏକ, ତା'ର ଦୁଃଖ ମୋର ନିଜର ଦୁଃଖ; ମୋର ନାରାୟଣ, ତା'ର ନାରାୟଣଙ୍କୁ ଚିହ୍ନିପାରିଛି । ତେଣୁ ଲୋକର ଦୁଃଖ ନିବାରଣ ହିଁ ଈଶ୍ୱରଭଜନ । 'ପରୋପକାର' ହେଲା ଏପରି ଏକ କାର୍ଯ୍ୟ ଯାହା ଆମକୁ ଈଶ୍ୱରଙ୍କ ନିକଟକୁ ନେଇଯାଏ । 'ପର'ମାନେ ଈଶ୍ୱର, 'ଉପ'ମାନେ ସାନ୍ନିଧ୍ୟ, ସମୀପସ୍ଥ ହେବା, 'କାର'ମାନେ କାର୍ଯ୍ୟ । ଈଶ୍ୱରଙ୍କ ନିକଟକୁ ନେଇଯାଏ ଏପରି ଯେଉଁ କାର୍ଯ୍ୟ, ତା'ର ନାମ ହେଉଛି 'ପରୋପକାର' । ସେ ଓ ମୁଁ ଏକ, ମୋର ନାରାୟଣ ତାହାର ନାରାୟଣଙ୍କୁ ଚିହ୍ନି-ପାରିଛି ।" ସର୍ବଭୂତରେ ଭଗବାନ ବିଦ୍ୟମାନ, ସକଳଘଟେ ନାରାୟଣ ଏବଂ "ଜଗତ

ଦେଖେ ବିସ୍ମୟେ. ସେ ନପଡ଼ଇ ମାୟାମୋହେ" ଭାଗବତର ଏହି ଆପ୍ତବାଣୀ, କିମ୍ବା ଆର୍ଯ୍ୟ-ଧର୍ମର ସେହି ବୈଦାନ୍ତିକ ତତ୍ତ୍ୱ, ଜୀବାତ୍ମାରେ ପରମାତ୍ମାର ଅଧିଷ୍ଠାନ, କିମ୍ବା 'ତତ୍ତ୍ୱମସି', ଏହାହିଁ ଆର୍ଯ୍ୟ-ଜୀବନର ସାଧନାର ବାଣୀ । ଏହା ହିଁ ଆର୍ଯ୍ୟର ସମଦର୍ଶିତା; ଆତ୍ମ-ପ୍ରସାର, ଆତ୍ମୋତ୍ସର୍ଗ ଏବଂ ଅହଂମୁକ୍ତିର ମହୀୟସୀ ବାଣୀ । ଏହି ସଂସାରରେ ଯାହା କିଛି ଦେଖିବାକୁ ମିଳେ, ତାହା ଈଶ୍ୱରଙ୍କଦ୍ୱାରା ଆଚ୍ଛାଦିତ; ସେହି ବିରାଟ ସତ୍ତା ସର୍ବତ୍ର ବିଦ୍ୟମାନ । ସେ ବାହ୍ୟ ଜଗତରେ ଏବଂ ଆମର ଅନ୍ତର୍ଜଗତରେ ସର୍ବଦା ବର୍ତ୍ତମାନ । ଏକ ମଧ୍ୟରେ ସେ ବହୁ, ବହୁ ମଧ୍ୟରେ ସେ ଏକ । ସେ ସର୍ବଭୂତର ଅନ୍ତରାତ୍ମା, ସେ ସର୍ବ ନିୟନ୍ତା। ସେ ସକଳ ଅନିତ୍ୟ ଭିତରେ ନିତ୍ୟ; ସେହି ଏକକୁ କେଉଁଠାରେ ଦେଖିବାକୁ ମିଳିବ ? 'ଆତ୍ମସ୍ଥଂ' ନିଜ ମଧ୍ୟରେ । ଉପନିଷଦର ଋଷି ପ୍ରଶ୍ନ ପଚାରି ତା'ର ଉତ୍ତର ଦେଇଛନ୍ତି, କେଉଁମାନେ ନିଜମଧ୍ୟରେ ସେହି ଏକକୁ ଦେଖି ପାରିବେ ? ଦେଖିପାରିବେ କେବଳ ଧୀରମାନେ । ଏହି ଧୀରମାନେ କିଏ ? ଅହଂର ଆବରଣାତ୍ମକ ସକଳ ଭେଦ ଶୃଙ୍ଖଳ ଯେଉଁମାନଙ୍କ ହୃଦୟରୁ ଅପସାରିତ ହୋଇଅଛି । ଯେଉଁମାନେ କେବଳ ଅହଂର ଅନୁବର୍ତ୍ତୀ, ଉଦ୍ଧତ ପୌରୁଷକାରରେ ବିଶ୍ୱାସୀ, ବ୍ୟକ୍ତିକେନ୍ଦ୍ରିକ ତଥା ଆତ୍ମକେନ୍ଦ୍ରିକ, ପଦେ ପଦେ ଯେଉଁମାନେ ଭେଦବୁଦ୍ଧିଦ୍ୱାରା କ୍ଷୁଣ୍ଣ ଓ ସଙ୍କୁଚିତ; ଦୈନନ୍ଦିନ ଜୀବନର ପ୍ରାତ୍ୟହିକ ତୁଚ୍ଛତାରେ ଯେଉଁମାନଙ୍କର ବୁଦ୍ଧିବୃତ୍ତି କଳୁଷମୟ ଓ ପାପ ପଙ୍କିଳ, ସେମାନେ ଧୀର ନୁହନ୍ତି, ସେମାନଙ୍କର ଚିତ୍ତଶୁଦ୍ଧି ନାହିଁ । ଅବିଦ୍ୟାର ଘନକୃଷ୍ଣ ଯବନିକାରେ ତାଙ୍କର ଆତ୍ମା ଆଚ୍ଛନ୍ନ, ସେମାନେ କେବଳ ନିଜର ବାହାରେ ଓ ଭିତରେ ନିଜକୁ ଦେଖନ୍ତି, ନିଜର ଧନଜନ ଗୋପ-ଲକ୍ଷ୍ମୀକୁ ଦେଖନ୍ତି, ଅନ୍ୟକୁ ଚିହ୍ନନ୍ତି ନାହିଁ, ଅନ୍ୟର ଦୁଃଖରେ ସମଦୁଃଖୀ ହୁଅନ୍ତିନାହିଁ ତାଙ୍କଠାରେ 'ପର'ନାହିଁ କି 'ଆପ' ନାହିଁ । ସେ ଈଶ୍ୱରଙ୍କ ସଂସ୍ପର୍ଶ ଲାଭକରନ୍ତି ନାହିଁ କି ମାନବତାର ଅମୃତସ୍ୱାଦୁ ଆସ୍ୱାଦନ କରନ୍ତିନାହିଁ । ଜଗତକୁ 'ଈଶ୍ୱରମୟ' ମନେ କରି ସକଳ ଧର୍ମକର୍ମ ତାଙ୍କର ଚରଣତଳେ ବିସର୍ଜନକରି ବିଶ୍ୱସ୍ରଷ୍ଟାର ସେହି ସ୍ୱୟମ୍ଭୂ ଶଙ୍କର ମୋର ଆତ୍ମପୁରୁଷ କିମ୍ବା ମୋର ଆତ୍ମାରେ ତାଙ୍କର ଅଧିଷ୍ଠାନ । ସେହି ଆତ୍ମପୁରୁଷହିଁ ସୃଷ୍ଟିର ମୂଳାଧାର ଏହି ଆଧ୍ୟାତ୍ମିକ ବିଶ୍ୱାସରେ ବିହ୍ୱଳ ଓ ବଳୀୟାନ୍ ହୋଇ ସେ ଭାବେ, ସେହି ବ୍ରହ୍ମଜ୍ୟୋତି ସୃଷ୍ଟିର ବିଚିତ୍ରତା ସମ୍ପାଦନ-ପାଇଁ, ମୋ ଭିତରେ ବିରାଜିତ ହୋଇଅଛନ୍ତି, ସମସ୍ତ ସୃଷ୍ଟି ସତ୍ତା ଖୋଜିଲେ ମୁଁ ଯେଉଁ ଆତ୍ମପୁରୁଷର ପରିଚୟ ପାଇବି, ଅନନ୍ତ ବିଶ୍ୱ ଯାହାଦ୍ୱାରା ଜୀବନ୍ତ, ମୋ ଭିତରେ ସେହି ଆତ୍ମା 'ପଙ୍କମୟ ସରମଧ୍ୟରେ କମଳ' ପରି ବିରାଜିତ ଭିତରକୁ ଚାହିଁ ଦେଖି ପାରିଲେ, ତାଙ୍କୁ ହିଁ ଦେଖିବି, ସେହି ଅଦ୍ୱୈତବାଦୀ ଧୀରପ୍ରଜ୍ଞ କିମ୍ବା ତତ୍ତ୍ୱଜ୍ଞାନସମ୍ପନ୍ନ ପୁରୁଷ କେବଳ ପ୍ରାଣର ଆବେଗରେ ଗାଇପାରେ—

"ଦୂର ଦେବାଳୟେ ଯିବା ନାହିଁ ପ୍ରୟୋଜନ
ନିଜ ଅଭ୍ୟନ୍ତର ଦେଖ ଫେଡ଼ିଣ ନୟନ;
ହୃଦ-କପିଳାଙ୍କେ ତୋର ବନ୍ଧେ ପ୍ରେମଝର
ବିଜେ କରିଛନ୍ତି ତହିଁ ସ୍ୱୟମ୍ଭୂ ଶଙ୍କର।"

ଏହା ହିଁ ଗୋପବନ୍ଧୁଙ୍କ 'ଶିବରାତ୍ରି' କବିତାର ଆତ୍ମିକ ସ୍ୱଭାବ। ଏ କ'ଣ ପ୍ରାଚୀନ ଆର୍ଯ୍ୟ-ସଂସ୍କୃତିରୁ ସୁଦୂର ଉତ୍ତରାଧିକାରୀରୂପେ ଲାଭକରିଥିବା ଉପନିଷଦର ମନ୍ତ୍ର କିମ୍ବା ବେଦାନ୍ତ ତତ୍ତ୍ୱର ପୁନରାବୃତ୍ତି ମାତ୍ର ? 'ଶିବରାତ୍ରି' କବିତାରେ କ'ଣ ଗୋପବନ୍ଧୁଙ୍କର ତାତ୍ତ୍ୱିକ ଚିନ୍ତା ହିଁ ପ୍ରକଟିତ ? ଏ କବିତାରେ ଯେ ଗୋପବନ୍ଧୁଙ୍କର ଚିନ୍ତା ରୂପାୟିତ ହୋଇନାହିଁ ତାହା ନୁହେଁ। ସମଗ୍ର କବିତା-ପୁସ୍ତକର ନାମକରଣ, 'ଅବକାଶ-ଚିନ୍ତା', କିନ୍ତୁ ଏ ଚିନ୍ତା ଗୋପବନ୍ଧୁଙ୍କ ମସ୍ତିଷ୍କରୁ ପ୍ରସୂତ ନୁହେଁ। ଚିନ୍ତା ତାଙ୍କ ଅନ୍ତରର ଉପଲବ୍ଧି ସହିତ ଓତପ୍ରୋତଭାବରେ ଜଡ଼ିତ, ଏହି ଚିନ୍ତାକୁ ସେ ହୃଦୟରେ ଅନୁଭବ କରିଅଛନ୍ତି। ସାତ୍ତ୍ୱିକ ଜାଗରଣ ଓ ଉଦ୍‌ବୋଧନର ମହାମନ୍ତ୍ରରେ ଯେଉଁ ହୃଦୟ ଦୀକ୍ଷିତ, ସେପରି ହୃଦୟ ଓ ଆତ୍ମାକୁ ବିଦାରଣ କରି ଏହି ଯେଉଁ ଶୁଦ୍ଧପୂତ ମହାଭାବର ଦ୍ୟୋତନା, ସେ କେବଳ କେତେକ ନୀରସ ଓ ଶୁଷ୍କ ଚିନ୍ତାର ଅଭିପ୍ରକାଶ ହୋଇ ନ ପାରେ। ରସସୃଷ୍ଟି ଦିଗରୁ ବିଚାର କଲେ ଏହା ଯେ କୌଣସି ଦେଶର କାବ୍ୟ ସାହିତ୍ୟର ଏକ ଅମୂଲ୍ୟ ସମ୍ପଦରୂପେ ବିବେଚିତ ହୋଇପାରେ। ଏହି କବିତାଟି ଶାନ୍ତରସର ଏକ ଚିର-ଜାଜ୍ୱଲ୍ୟମାନ ନିଦର୍ଶନ।

ଶିବରାତ୍ରି ଦିନ କବିଙ୍କ ମନରେ ସନ୍ଦେହର ଛାୟାପାତ ହୋଇଛି, କ'ଣ ଦେଇ ମୁଁ ଏ ଶିବମୂର୍ତ୍ତି ପୂଜା କରିବି ? ମୋର ସେ ସ୍ୱର୍ଗୀୟ ପୂଜା-ଉପକରଣ କାହିଁ। କାହିଁକି ବା ପୂଜିବି ? ଏ ଜଡ଼ବସ୍ତୁ ମଧ୍ୟରେ କି ଚିନ୍ମୟ ଶକ୍ତି ଅଛି ? ହଠାତ୍ ସେ ସନ୍ଦେହ ଅପସାରିତ ହୋଇଅଛି। ଜ୍ଞାନର ଆଲୋକରେ ତାଙ୍କର ଅନ୍ତର ଉଦ୍ଭାସିତ ହୋଇଉଠିଛି। ଏହା ହିଁ କବିର ଦିବ୍ୟଦୃଷ୍ଟି, କବିର ଅପୂର୍ବ ପ୍ରତିଭା, କବିର ବୋଧି ଏବଂ ହୃଦୟର ତୃପ୍ତି। ଏ ମୁହୂର୍ତ୍ତିରେ କଳାଉଠି ପର ମୁହୂର୍ତ୍ତରେ ଲିଭିଯିବାର ବସ୍ତୁ ନୁହେଁ। ଏହି ଭୌତିକ ଓ ଜଡ଼ବାଦୀ ଯୁଗରେ ଏ ପାରମାର୍ଥିକ ଭାବକୁ ଆମେ ଯେତେ ଉପେକ୍ଷା ଦେଖାଇଲେ ମଧ୍ୟ, ଏ ଭାବର ମୃତ୍ୟୁ ନାହିଁ। ଅନନ୍ତ ପ୍ରେମରେ ଯାହାର ଆତ୍ମବିସ୍ମୃତ ଘଟିନାହିଁ—ରାମକୃଷ୍ଣ ପରମହଂସଙ୍କ ଭାଷାରେ ଯାହାର ନାରାୟଣ ଅନ୍ୟର ନାରାୟଣକୁ ଚିହ୍ନିନାହିଁ, ପରର ଦୁଃଖରେ ଯାହାର ଲୋତକ-ଧାର ପ୍ରବାହିତ ହୋଇନାହିଁ, ନିଜର ଅହଂରୁ ମୁକ୍ତିଲାଭ କରି ଯେ ବୃହତ୍ତର ମାନବ ସମାଜର କଲ୍ୟାଣ କରିବା ନିମନ୍ତେ ଭଗବାନଙ୍କର ଅନନ୍ତ ମହିମା ପରି ନିଜକୁ

ଜନ-ସମାଜରେ ଘରେ ଘରେ ପରିବ୍ୟାପ୍ତ କରିଦେଇନାହିଁ; ଏବଂ ଯାହାର ଏ ଭାଗବତ ପ୍ରୀତି ବିଶ୍ୱପ୍ରୀତିରେ ରୂପାନ୍ତରିତ ହୋଇନାହିଁ, ସେ କଦାପି ଉପଲବ୍ଧି କରିପାରିବ ନାହିଁ, ଜୀବ-ମାତ୍ରେ ଅଧିଷ୍ଠିତ ସେହି ବିଶ୍ୱବ୍ୟାପୀ ବିଶ୍ୱେଶ୍ୱରଙ୍କର 'ପ୍ରିୟ କର୍ମ' କ'ଣ ? ଶିବରାତ୍ରି ପାଳନ କରିବାର ସାର୍ଥକତା କ'ଣ ଏବଂ ହୃଦୟ ମଧ୍ୟରେ କିପରି ସେହି ମଙ୍ଗଳମୟ ଶିବଙ୍କର ଅଧିଷ୍ଠାନ ସମ୍ଭବ ? ରାମକୃଷ୍ଣ ପରମହଂସଙ୍କ ଭାଷାରେ ଯାହା 'ପର' 'ଉପ' ଏବଂ 'କାର', ସେହି ଶିବସାଧନାରେ ସିଦ୍ଧିଲାଭ କରିବାକୁ ହେଲେ ଗୋପବନ୍ଧୁଙ୍କ ଭାଷାରେ—

"ଶୁଚିମନ୍ତ ହୋଇ ନିତି ଜ୍ଞାନ-ଦୀପ ଜାଳି
ଶୁଦ୍ଧ ଭକ୍ତିରସ ଦିଅ ସେ ଶ୍ରୀପଦେ ଢାଳି,
ଉଜାଗର ରହି କର ତାଙ୍କ ପ୍ରିୟକର୍ମ
ପାଇବାକୁ ବାଞ୍ଛା ଯେବେ ଶିବରାତ୍ରି ଧର୍ମ ।
ସମସ୍ତ ଜୀବନ କର ଏକ ଶିବରାତ୍ରି
ଅନ୍ଧାରେ ନ ହୁଡ଼ ପଥ ହେ ସ୍ୱରଗ-ଯାତ୍ରୀ ।"

ସ୍ୱାମୀ ବିବେକାନନ୍ଦ ଥରେ କହିଥିଲେ, "ଧର୍ମ ମନୁଷ୍ୟକୁ ଦେବତା କରିପାରେ, ତାକୁ ଦେଇପାରେ ଅମୃତ ଆନନ୍ଦମୟ ବିପୁଳ ଜୀବନର ଅଧିକାର ।"

ସମସ୍ତ ଜୀବନକୁ କିଏ ଏକ ଶିବରାତ୍ରି କରିବ ? ଏ ଦୁର୍ଗମ ସାଧନାପଥର ଯାତ୍ରୀ ହେବ କିଏ ? ବ୍ୟକ୍ତିଗତ ସୁଖ-ସମ୍ଭୋଗକୁ ତ୍ୟାଗକରୁଛି କିଏ, ଗର୍ବ ଅହଙ୍କାରକୁ ବର୍ଜନ କରୁଛି କିଏ ? ଯାହାକୁ ଗୋପବନ୍ଧୁ ଦିନେ 'ଅନ୍ଧାର' ବୋଲି କହୁଥିଲେ, ଆଜି ତ ସେହି ଆତ୍ମକୈନ୍ଦ୍ରିକ ବସ୍ତୁ-ସର୍ବସ୍ୱତା ଆମର ପରମ ଶ୍ରେୟ ଓ ଧ୍ୟେୟ । ତଥାପି ଏ ଯୁଗରେ ସେହିପରି ପବିତ୍ର 'ଶିବରାତ୍ରି' ଧର୍ମ ପାଳନକରିବା ଲୋକଙ୍କର ଅଭାବ ନାହିଁ—ତାହାର ଜ୍ୱଳନ୍ତ ନିଦର୍ଶନ ଗାନ୍ଧି ଓ ଗୋପବନ୍ଧୁ । ଗୋପବନ୍ଧୁଙ୍କୁ ପୃଥିବୀପ୍ରସିଦ୍ଧ ମହାପୁରୁଷଙ୍କ ନାମ ସହିତ ଜଡ଼ିତ କରିବାଦ୍ୱାରା କେହି ଯେପରି ଲେଖକର 'ହେୟ ମୂଲ୍ୟବୋଧ'ର ଗନ୍ଧ ନ ବାରନ୍ତି । ଏକବିଂଶତିତମ ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା ସମାଜରେ (୧୯୪୯, ଜୁନ ୨୭ ତାରିଖ), ଆଜକୁ ପ୍ରାୟ ୨୭ ବର୍ଷ ତଳେ ଅବସରପ୍ରାପ୍ତ ଅଧ୍ୟାପକ ଶ୍ରୀ ବିପିନବିହାରୀ ରାୟ (ଯାହାଙ୍କର ପାଶ୍ଚାତ୍ୟ ଓ ଭାରତୀୟ ଦର୍ଶନଶାସ୍ତ୍ରରେ ଅସାମାନ୍ୟ ପାଣ୍ଡିତ୍ୟ ଅଛି) 'ବେଦାନ୍ତର ଶିକ୍ଷା' ଶୀର୍ଷକ ପ୍ରବନ୍ଧରେ ଲେଖିଥିଲେ, "ଆମ୍ଭମାନଙ୍କ ମଧ୍ୟରୁ ଯେଉଁମାନେ ଶିକ୍ଷା ଦୀକ୍ଷା ଗୁଣ ଆଚରଣରେ ଉଚ୍ଚ ସ୍ତରରେ ପ୍ରତିଷ୍ଠିତ ସେହିମାନେ ହିଁ ତତ୍ତ୍ୱଜ୍ଞ, ସେହିମାନେ ହିଁ ସତ୍କର୍ମୀ ।

୧୯୧୯ ସାଲରେ ଯେତେବେଳେ ପୁରୀଜିଲ୍ଲା ଉପରେ ପ୍ରବଳ ଦୁର୍ଭିକ୍ଷ ଘୋଷିଯାଇଥିଲା ସେତେବେଳେ ଅନ୍ୟମାନେ ଦୁର୍ଭିକ୍ଷ ଅନୁଭବ କରି କର୍ମପଥରେ ପଛଘୁଞ୍ଚା ଦେଲେ ମଧ୍ୟ ପଣ୍ଡିତ ଗୋପବନ୍ଧୁ ଇତସ୍ତତଃ ନ ହୋଇ ସେବକସଂଘ ଗଢ଼ିଥିଲେ ଓ ଗଢ଼ି ସେବା କାର୍ଯ୍ୟରେ ନିମୁକ୍ତ ରହିଥିଲେ । ଉପଯୁକ୍ତ ସାଧନା-ମୃତ୍ତିକାରେ ଉପଯୁକ୍ତ ଜ୍ଞାନ ଜନ୍ମିଥାଏ, ତହିଁରୁ ଉପଯୁକ୍ତ କର୍ମ ଫଳିଥାଏ । ଏହା ବେଦାନ୍ତର ଶିକ୍ଷା ।

ଯେଉଁମାନେ ପରଲୋକଗତ ପାଶ୍ଚାତ୍ୟ କବି T. S. Eliotଙ୍କର ଅନୁଗାମୀ ଓ ଯେଉଁ ଆଧୁନିକ କବିମାନଙ୍କ ଉପରେ ତାଙ୍କର ପ୍ରଭାବ ଅପ୍ରତିହତ, ସେମାନେ ମଧ୍ୟ ଗୋପବନ୍ଧୁଙ୍କ ଶିବରାତ୍ରି 'କବିତା'ଟି ନିରପେକ୍ଷଭାବରେ ପାଠକଲେ ଇଲିୟଟଙ୍କର ଏହି ଉକ୍ତିର ତାତ୍ପର୍ଯ୍ୟ ଅବବୋଧ କରିପାରିବେ 'Poetry is excellent word in excellent arrangement and excellent metre' । ଅନୁଭୂତିର ତୀବ୍ରତା, ଆବେଗର ତନ୍ମୟତା, ଭାବ-ପ୍ରବାହର ମହନୀୟତା, ଭାଷାର ଲାଳିତ୍ୟ, ଅରୂପକୁ ରୂପ ଦେବାରେ ଶିଳ୍ପିସୁଲଭ ନିପୁଣତା ଏବଂ ରୂପକଳ୍ପର ପ୍ରୟୋଗରେ ଓଡ଼ିଆ ଗୀତି-କବିତା ମଧ୍ୟରେ ଏହାର ସ୍ଥାନ ଅତି ଉଚ୍ଚରେ ।

ରାମକୃଷ୍ଣ ପରମହଂସ ତ 'ଈଶ୍ୱରଙ୍କୁ ଭାବୁ ନ ଥିବା' ଈଶ୍ୱରଚନ୍ଦ୍ର ବିଦ୍ୟା-ସାଗରଙ୍କୁ 'ସିଦ୍ଧ ପୁରୁଷ' ଆଖ୍ୟା ଦେଲେ, କାରଣ ତାଙ୍କର ମନ ଆଳୁପୋଟଳ ପରି ନରମ, ସେ ପରଦୁଃଖ ଦେଖି କାନ୍ଦନ୍ତି ଏବଂ ତାଙ୍କର ଜ୍ଞାନକୁ ସେ ଜନହିତକର କାର୍ଯ୍ୟରେ ଲଗାଇ ପାରିଛନ୍ତି; କିନ୍ତୁ ପରମହଂସ ଯଦି 'ଶିବରାତ୍ରି' କବିତାଟି ପଢ଼ିବାର ସୁଯୋଗ ପାଇଥାନ୍ତେ, ଗୋପବନ୍ଧୁଙ୍କୁ ସ୍ୱଚକ୍ଷୁରେ ଦେଖିଥାନ୍ତେ କିମ୍ବା ତାଙ୍କର ଆମରଣ ସେବାବ୍ରତର ଇତିହାସ ଶୁଣିଥାନ୍ତେ, ସେ କ'ଣ କହିଥାନ୍ତେ ତାହା କେବଳ ଆଜି ଅନୁମାନ କରିବାର କଥା ।

'ଶିବରାତ୍ରି' କବିତା ସହିତ 'ଅବକାଶ-ଚିନ୍ତା'ର ସର୍ବଶେଷ କବିତା 'ନୀରବ'ର ଅଚ୍ଛେଦ୍ୟ ସମ୍ପର୍କ । ଅରବିନ୍ଦ ଆଶ୍ରମର ଜଣେ ଅନ୍ତେବାସୀଙ୍କ ମତରେ 'ମହାନ୍ ଗୋପବନ୍ଧୁଙ୍କର ସର୍ବଶ୍ରେଷ୍ଠ କବିକୃତି ହେଉଛି 'ନୀରବ ଶୀର୍ଷକ କବିତାଟି'. ଲେଖକର ଅବିଚଳ ବିଶ୍ୱାସ, ଅରବିନ୍ଦ-ଆଶ୍ରମର ଜଣେ ଦୁଇଜଣ ଅଧ୍ୟାପକ ଗୋପବନ୍ଧୁଙ୍କ ଆଧ୍ୟାତ୍ମିକ ପ୍ରେରଣା ଏବଂ ତାଙ୍କର କର୍ମଧାରାର ଅନ୍ତର୍ନିହିତ ମହତ୍ତ୍ୱ ଯେପରି ଗଭୀରଭାବରେ ଉପଲବ୍ଧି କରିଅଛନ୍ତି ଏବଂ ବିଶେଷତଃ ଅଧ୍ୟାପକ କାଙ୍ଗାଳିଚରଣ ପତି ଗୋପବନ୍ଧୁଙ୍କର ବିଶାଳ ଓ ବହୁମୁଖୀ ବ୍ୟକ୍ତିତ୍ୱ ଓ ସାଧନା ଉପରେ ଯେଉଁ କେତେଗୋଟି ଭାବଗର୍ଭକ ପ୍ରବନ୍ଧ ଲେଖି ପ୍ରକାଶ କରିଅଛନ୍ତି,

ସେଥିରୁ ଉପସ୍ଥିତ ଲେଖକର ସମସ୍ତେ ନମସ୍ୟ ମନେହୁଏ, ଅରବିନ୍ଦ-ଆଶ୍ରମର ଆଧ୍ୟାତ୍ମିକ ବାତାବରଣହିଁ ଗୋପବନ୍ଧୁଙ୍କୁ ଚିହ୍ନି ଓ ଚିହ୍ନାଇବାର ପ୍ରକୃଷ୍ଟ ସହାୟକ। ତେଣୁ ଏହି କବିତା ସମ୍ପର୍କରେ ଅଧିକ କିଛି ନ ଲେଖି ୧୯୭୪, ଜୁଲାଇ ୯ ତାରିଖ ଗୋପବନ୍ଧୁ ଶ୍ରଦ୍ଧାସଂଖ୍ୟା 'ସମାଜ'ରେ ସୁଲେଖକ ଶ୍ରୀ ମନୋଜ ଦାସ ଯାହା ଲେଖି-ଅଛନ୍ତି ତାହାହିଁ ବର୍ତ୍ତମାନ ଲେଖକର ମତ। "ଗୋପବନ୍ଧୁଙ୍କ କବିତା ଏ ଯୁଗର ଯୁବକ-ଚିତ୍ତରେ ଏପରି ଆଲୋଡ଼ନ ସୃଷ୍ଟି କରିପାରେ, ଏହା 'ଗୋପ-କବି-ମାନସ' ଓ କୃତିର ଚରମ ସାର୍ଥକତା। ମନୋଜବାବୁଙ୍କ ମତରେ 'ନୀରବ' ପର୍ଯ୍ୟାୟର କବିତା କେବଳ ଭାରତୀୟ ସାହିତ୍ୟରେ ନୁହେଁ, ବିଶ୍ୱ ସାହିତ୍ୟରେ ବିରଳ।" କେବଳ ଏତିକି ନୁହିଁ ଶ୍ରୀ ମାଙ୍କର ଉକ୍ତ ଉଦ୍ଧାରକରି (ନୀରବତା, ନୀରବତା, ନୀରବତା, ଏକମାତ୍ର ନୀରବତା ମଧ୍ୟରେହିଁ ମହନୀୟ କିଛି କରାଯାଇପାରେ) ସେ ମନ୍ତବ୍ୟ କରିଛନ୍ତି, "କେଉଁ ଆଶ୍ଚର୍ଯ୍ୟ ସ୍ନିଗ୍ଧ ଚେତନାର କରୁଣାମୟ ସ୍ପର୍ଶପାଇ ଗୋପବନ୍ଧୁ 'ନୀରବ' କବିତାଟି ଲେଖିଥିଲେ ଅନେକ ପାଠକ ବର୍ତ୍ତମାନ ତାହା ବୁଝିପାରିବେ ବୋଲି ମୋର ବିଶ୍ୱାସ।" ଏହି 'ସ୍ନିଗ୍ଧ ଚେତନା' ହେଉଛି ସେହି ଭଗବତ୍ ଚେତନା, ଯେଉଁଠାରେ ଆତ୍ମ-ଡ଼ମ୍ବରର ଲେଶମାତ୍ର ସ୍ଥାନ ନାହିଁ।

ଅରବିନ୍ଦ ଆଶ୍ରମର କେବଳ ଶ୍ରୀ ମା ନୁହଁନ୍ତି, ମହାତ୍ମା ଗାନ୍ଧି ମଧ୍ୟ ଏହି ନୀରବତାର ଜଣେ ଏକନିଷ୍ଠ ପୂଜାରୀ। ଏହାର ପଶ୍ଚାତ୍‌ରେ ମଧ୍ୟ ଅଛି ସେହି 'ସ୍ନିଗ୍ଧ ଚେତନା'—ଏହି 'ସ୍ନିଗ୍ଧ ଚେତନା' ଆଉ କିଛି ନୁହଁ, ସେହି ନିରହଙ୍କାର ଭଗବତ୍ ଚିନ୍ତା ଏବଂ ଧ୍ୟାନନିବିଷ୍ଟତା, ଯାହା ମନୁଷ୍ୟଙ୍କୁ କରେ ଧୀର, ବିନମ୍ର, ଗମ୍ଭୀର ଓ ପ୍ରଶାନ୍ତ। ଯେଉଁ ଅନ୍ତର୍ଦୃଷ୍ଟି ଫଳରେ ମନୁଷ୍ୟ କେବଳ ନୀରବରେ କର୍ମ କରିବାକୁ ଚାହେଁ ଲୋକଲୋଚନର ଅଗୋଚରରେ ରହି ନିଜର କର୍ମକୁ ନିଭୃତ ଚିନ୍ତାରେ ବିଶୁଦ୍ଧ ଓ ମାର୍ଜିତ କରେ, କିମ୍ବା ଯେଉଁ ଆତ୍ମପ୍ରସାର କିମ୍ବା ଆତ୍ମଶୁଦ୍ଧି ଜନ୍ମିଲେ, ମନୁଷ୍ୟ କୌଣସି ଆଡ଼ମ୍ବର, ପରିପ୍ରଚାର, ବାହାବା, କରତାଳି, ପୂଜା, ସମ୍ବର୍ଦ୍ଧନାର ଲାଳସାରୁ ବହୁ ଦୂରରେ ରହେ; ନୀରବତା-ମନ୍ତ୍ରର ସାଧନା ସେହି ଆତ୍ମଶୁଦ୍ଧି ଏବଂ ଆଧ୍ୟାତ୍ମ ପ୍ରେରଣାର ଅନିବାର୍ଯ୍ୟ ଫଳ।

ମହାତ୍ମା ଗାନ୍ଧିଙ୍କ ମତରେ 'Silence is essential for one whose life is an incessant search for truth.' ତତ୍ତ୍ୱଦର୍ଶୀ ଓ ସତ୍ୟାନୁସନ୍ଧିତ୍ସୁ ବ୍ୟକ୍ତିମାନଙ୍କ ପକ୍ଷରେ ନୀରବତା ଏକ ଅବ୍ୟର୍ଥ ପନ୍ଥା। ଏହା ଏକ ଆଧ୍ୟାତ୍ମିକ ପ୍ରକ୍ରିୟା। ଉପନିଷଦ କହେ, "ଧ୍ୟାନ ଚିତ୍ତଠାରୁ ଅନେକ ବଡ଼। ତେଣୁ ପୃଥିବୀ ଯେପରି ଧ୍ୟାନ କରୁଛି, ଆକାଶ ଯେପରି ଧ୍ୟାନ କରୁଛି।—ସମୁଦ୍ର, ପର୍ବତ, ଦେବ, ମନୁଷ୍ୟ ସମସ୍ତେ ଯେପରି ଧ୍ୟାନ କରୁଛନ୍ତି। ଯେଉଁଠାରେ ସେମାନଙ୍କର

ଧ୍ୟାନରୂପ ସେହିଠାରେ ହିଁ ସେମାନଙ୍କର ମହିମା । ପୃଥିବୀର ମହାପୁରୁଷମାନେ ଧ୍ୟାନ-ତତ୍ପର, ଚିନ୍ତାଶୀଳ ଓ ଗମ୍ଭୀର । ଏହି ଧ୍ୟାନ ହିଁ ନୀରବତା ମଧ୍ୟରେ ସମ୍ଭବ । ଚିତ୍ତ-ବିକ୍ଷୋଭକାରୀ ପରିବେଶ ମଧ୍ୟରେ ସମ୍ଭବ ନୁହେଁ । ଉପନିଷଦର ସେହି ଧ୍ୟାନର ମହିମା ଅପରୂପ ଗାମ୍ଭୀର୍ଯ୍ୟ ଓ ପ୍ରଶାନ୍ତି ମଧ୍ୟରେ ପ୍ରକାଶ ପାଇଛି 'ନୀରବ' କବିତାରେ । ଗୋପବନ୍ଧୁ ଜୀବନରେ କେବେ ଆଡ଼ମ୍ବର ଓ ଲୋକ-ପ୍ରଶସ୍ତିକୁ ପସନ୍ଦ କରୁ-ନ ଥିଲେ । ଚିନ୍ତାଶୀଳତା ଓ ସରଳତାର ସେ ଥିଲେ ମୂର୍ତ୍ତିପ୍ରତୀକ । ଜଣେ ଆଧୁନିକ-କବିଙ୍କ କବିତାରେ ଗୋପବନ୍ଧୁଙ୍କର ଏହି ନିରହଙ୍କାରତା ଓ ନିରାଡ଼ମ୍ବରତାର ଧ୍ୟାନ-ମନ୍ତ୍ର ଅତି ଚମତ୍କାରଭାବରେ ପ୍ରକଟିତ ହୋଇଅଛି ।

"ପଞ୍ଚୁଆରେ ସେ ଆଟୋପେ କେବେ
ଆସିନି ମହାଗରବେ ଧାଇଁ,
ଶିଳ୍ପୀ ସେ ଯେ ଉହାଡ଼େ ବସି
ନିହାଣେ ଗୀତ ରଚଇ ଥାଇ ।"

ଏହି ନୀରବ ନିଭୃତ ସାଧନା ଥିଲା ବାସ୍ତବରେ ଗୋପବନ୍ଧୁଙ୍କ ଜୀବନର ଆଦର୍ଶ । ଆତ୍ମ-ବଡ଼ିମା ପ୍ରଚାର, ଯଶୋଲିପ୍ସାର ଯାଦୁମନ୍ତ୍ର ତାଙ୍କ ହୃଦୟକୁ ବଶ କରିପାରି ନ ଥିଲା । ସେ ନିଜକୁ ସଦାବେଳେ ଦେଶର ଜଣେ ଦୀନ ଓ ଅକିଞ୍ଚନ ସେବକ ବୋଲି ମନେକରୁଥିଲେ ।

ନୀରବ କବିତାର କଲେବର ଅତି କ୍ଷୁଦ୍ର; କିନ୍ତୁ ଅନୁଭୂତିର ଗଭୀରତା, ଚିତ୍ତର ବିସ୍ତାର, ମନର ଗଭୀର ଅଭିନିବେଶ ଓ ସୂକ୍ଷ୍ମ ଅନ୍ତର୍ଦୃଷ୍ଟି, ଏ ସକଳର ସମନ୍ୱୟରେ ଏହା ଯେପରି ଚିତ୍ତସ୍ପର୍ଶୀ, ସେହିପରି ଗମ୍ଭୀର ଅର୍ଥଗୌରବବ୍ୟଞ୍ଜକ । ପ୍ରକୃତି-ଜଗତର ନାନା ଦୃଷ୍ଟାନ୍ତ ଓ ଉପମାର ଆଶ୍ରୟରେ ନୀରବତାର ମହତ୍ତ୍ୱ ଏଥିରେ ଅତି ସୁନ୍ଦର ଓ ମର୍ମସ୍ପର୍ଶୀଭାବରେ ଉଦ୍‌ଘାଟିତ ହୋଇଅଛି । କେବଳ ପ୍ରକୃତି-ଜଗତ ନୁହେଁ ମନୁଷ୍ୟ-ଜୀବନରୁ ଏଥିରେ ଯେଉଁ ସବୁ ନୀରବତାର ଚିତ୍ର ଦିଆଯାଇଅଛି, ସେହି ଉପମାବିନ୍ୟାସ କିମ୍ବା ଅର୍ଥାନ୍ତରନ୍ୟାସ ଅଳଙ୍କାରର ପ୍ରୟୋଗ ସମଗ୍ର କବିତା ମଧ୍ୟରେ ଏପରି ପୁଣ୍ୟ ଉଚ୍ଛ୍ୱାସ, ମାଧୁରୀ ଏବଂ ପ୍ରାଣଶକ୍ତି ସଞ୍ଚାର କରିଛି ଯେ କବିତାଟି ପାଠକଲେ ଏହି ସଂସାରର କଳକୋଳାହଳ ଓ ମନୁଷ୍ୟ-ସମାଜର ଦର୍ପୋଦ୍ଧତତା ପ୍ରତି ମନ ବିଷାକ୍ତ ହୋଇ ଉଠେ । ନିଭୃତିର ଶୁଚିରେ ଚିତ୍ତ ସମ୍ମୋହିତ ହୁଏ । ଆତ୍ମ-ପ୍ରଚାରରେ ମନ ସଙ୍କୁଚିତ ହୋଇ ଉଠେ । ପ୍ରକୃତି ଜଗତରୁ ନୀରବତାମନ୍ତ୍ରର ସାଧକରୂପେ ରବି, ଶଶୀ, ତାରା, ତରୁଲତା, ମହୀଧର ଓ ପାରାବାରର ଦୃଷ୍ଟାନ୍ତ ଦେଇସାରି ସେ ପ୍ରେମିକ ହୃଦୟର ନୀରବତା ସୂଚାଇବାକୁ ଯାଇ ଲେଖିଛନ୍ତି—

'ନୀରବେ ପ୍ରେମିକ ନେତ୍ରେ ଅଶ୍ରୁ ଢଳ ଢଳ
ନୀରବେ ସରସୀ-ବକ୍ଷେ ହସେ ଶତଦଳ ।
ନୀରବେ ନିରାଶ ହୃଦେ ବହେ ଦୀର୍ଘଶ୍ୱାସ
ସୁଖେ ଦୁଃଖେ ସଜ୍ଜନର ନୀରବ ଆଶ୍ୱାସ ।
ତେବେ କର୍ମୀ ଚଉଦିଗେ ଚହଳ ଚିତ୍କାର
କର୍ମାର୍ଥେ ମାନବ କରେ ଏତେ ଅପଚାର ?
ଚାହଁ ଅନ୍ତଶ୍ଚକ୍ଷେ ଚାହଁ ଆପଣା ଅନ୍ତର
ଶୁଣ ଶିଖ ସାଧ ସଦା ନୀରବ ମନ୍ତର ।'

ଗୋପବନ୍ଧୁଙ୍କର 'ଅବକାଶ-ଚିନ୍ତା' କବିତା ପୁସ୍ତକ ୧୮୯୯ ମସିହାରେ ଓଡ଼ିଶା ପ୍ରେଟିଷ୍ଟ ପ୍ରେସରୁ ପ୍ରକାଶିତ ହୋଇଥିଲା । ଗୋପବନ୍ଧୁଙ୍କ ସେତେବେଳେ ମୋଟେ ୨୨ ବର୍ଷ ବୟସ । ଆଉ ଥରେ ଏହା ପ୍ରାୟ ୧୯୧୨ ମସିହାରେ ପ୍ରକାଶ ପାଇଥିଲା । ଏଥିରେ କେତେକ ନୂତନ କ୍ଷୁଦ୍ର କବିତା ସ୍ଥାନ ପାଇଥିଲା । ତମମାନଙ୍କ ମଧ୍ୟରେ 'ଛବିଶ ବର୍ଷ ପ୍ରବେଶ' ଅନ୍ୟତମ ।

---

# ପଞ୍ଚମ ପରିଚ୍ଛେଦ

## କାବ୍ୟ—କବିତା

### ଦୁଃଖର କଷାଘାତ

୧୯୧୯ ମସିହାରେ 'ଅବକାଶ ଚିନ୍ତା'ର ପ୍ରକାଶପରେ ଗୋପବନ୍ଧୁଙ୍କୁ ଆଉ କବିତା ଲେଖିବାକୁ ସୁଯୋଗ ମିଳିଲନାହିଁ । ଓକିଲାତି ପାସ୍ କଲାପରେ ନାନା ଲୋକହିତକର କାର୍ଯ୍ୟରେ ତାଙ୍କୁ ସକଳ ସମୟ ଓ ଶକ୍ତି ନିୟୋଜିତ କରିବାକୁ ପଡ଼ିଲା । ଶିକ୍ଷାର ବହୁଳ ପ୍ରଚାର ନିମନ୍ତେ ସତ୍ୟବାଦୀ-ବିଦ୍ୟାଳୟ ପ୍ରତିଷ୍ଠା, ଓଡ଼ିଆ-ଭାଷାଭାଷୀ-ବିଚ୍ଛିନ୍ନ ଅଞ୍ଚଳମାନଙ୍କୁ ଆଣି ସ୍ୱତନ୍ତ୍ର ପ୍ରଦେଶ ଗଠନ, ଦୁର୍ଭିକ୍ଷ ଓ ବନ୍ୟା-ପୀଡ଼ିତ ଅଞ୍ଚଳମାନଙ୍କରେ ନିରବଚ୍ଛିନ୍ନ ସେବାକାର୍ଯ୍ୟ, ବିହାର, ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟରୂପେ ଦେଶର ବିଭିନ୍ନ ସମସ୍ୟାର ସମାଧାନ ନିମନ୍ତେ ନାନା ପ୍ରଯତ୍ନ, ସତ୍ୟବାଦୀ-ମାସିକ ପତ୍ରିକା ଓ 'ସମାଜ' ସମ୍ବାଦପତ୍ରର ସମ୍ପାଦନ, ପରିଶେଷରେ ମହାତ୍ମାଗାନ୍ଧିଙ୍କ ପ୍ରବର୍ତ୍ତିତ ଅହିଂସାତ୍ମକ ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଯୋଗଦାନ ଏବଂ ସମଗ୍ର ଉତ୍କଳରେ ଭାରତ-ଜାତୀୟ କଂଗ୍ରେସର ସ୍ୱାଧୀନତା ବାର୍ତ୍ତା ପ୍ରଚାର ଓ ସକଳ ସାମାଜିକ ତଥା ରାଜନୈତିକ କାର୍ଯ୍ୟରେ ବ୍ୟାପୃତ ରହି, ସେ କବିତା ଲେଖିବାକୁ ସମୟ ପାଇ ନ ଥିଲେ; କିନ୍ତୁ କବିତା ତାଙ୍କ ପ୍ରତି ଥିଲା ଏକ ନୈସର୍ଗିକ ପ୍ରକ୍ରିୟା—ଏକ ଅନିର୍ବାଣ ଦୀପଶିଖା, ସମୟ ଓ ସୁବିଧା ପାଇଲେ ତାଙ୍କର ଭାବପ୍ରବଣତା ସମୟେ ସମୟେ କବିତା ମାଧ୍ୟମରେ ପ୍ରକାଶ ପାଉଥିଲା, ସେ ତ ନିଜେ ଥିଲେ ମୂର୍ତ୍ତିମନ୍ତ କବିତା—ବିଧାତାରଚିତ ଏକ ମନୋଜ୍ଞ କାବ୍ୟ ! ତେଣୁ ଏହି କର୍ମ-ମୁଖର ସମୟରେ କେତେ ଯେ ଅବ୍ୟକ୍ତ କବିତାର ଆବେଗବେଦନା ତାଙ୍କ ପ୍ରାଣକୁ ଆକୁଳ କରିଥିବ, ତାହା କିଏ ଜାଣେ ? ଅସହଯୋଗ ଆନ୍ଦୋଳନ ସମୟରେ ସେ ଯେଉଁ ରାଜନୈତିକ ଏବଂ ପ୍ରଚାରମୂଳକ ବକ୍ତୃତା ଅଗଣିତ ଜନତାକୁ ସ୍ୱାଧୀନତା-ମନ୍ତ୍ରରେ ଉଦ୍‌ବୁଦ୍ଧ କରିବାକୁ ଦେଉଥିଲେ, ସେ ଗଦ୍ୟ ହେଲେ ମଧ୍ୟ କାବ୍ୟ ଧର୍ମୀ ଓ ଆବେଗଗର୍ଭିତ, କଥା-କଥାକେ ଗୋପବନ୍ଧୁ କମନୀୟ କବିତାର ଅଫୁରନ୍ତ ଉତ୍ସ, କର୍ମ ହିଁ ତାଙ୍କ ଜୀବନର ସଙ୍ଗୀତ ।

ବୋଧହୁଏ ୧୯୨୦ ମସିହା ହେବ । ଉପସ୍ଥିତ ଲେଖକ ସେତେବେଳେ ତାଳ୍ଚେର ଚର୍ଚ୍ଚିକା ଉଚ୍ଚ ଇଂରେଜୀ ବିଦ୍ୟାଳୟର ଜଣେ ସାମାନ୍ୟ ଶିକ୍ଷକ । ସଦାଶିବ ମହାପାତ୍ର ନାମରେ ଜଣେ ବର୍ଷୀୟାନ୍ ସଂସ୍କୃତଜ୍ଞ ପଣ୍ଡିତ ସେହି ସ୍କୁଲରେ ମୋର ସହକର୍ମୀ ଥାନ୍ତି । ସେ ବାରିପଦାରେ ସଂସ୍କୃତ ପଢ଼ିଥିଲେ । ବଡ଼ ଅମାୟିକ ଓ ସରଳ

ବ୍ୟଗ୍ର । ଗୋପବନ୍ଧୁଙ୍କ କୀର୍ତ୍ତିକଳାପ ତାଙ୍କ ପ୍ରାଣରେ ଅପୂର୍ବ ପୁଲକ ଓ ପ୍ରଭାବ ସୃଷ୍ଟି କରିଥାଏ । ଅବସର ମିଳିଲେ ସେ ମୋ ଆଗରେ କେବଳ ତାଙ୍କରି କଥା କହୁଥାନ୍ତି । ଗୀତଗାଇବାର ଟାଣ ମଧ୍ୟ ତାଙ୍କର ଥାଏ । ସ୍ୱରଟି ବଡ଼ ମଧୁର, ଦିନେ ଗୋପବନ୍ଧୁଙ୍କ ମୟୂରଭଞ୍ଜ ରହଣୀ କଥା କହୁ କହୁ ହଠାତ୍ ସେ ପୁଲକିତ କଣ୍ଠରେ ଗୋଟିଏ ଗୀତ ଆରମ୍ଭ କରିଦେଲେ । କେବଳ ଆରମ୍ଭ କରିଦେଲେ ତା ନୁହେଁ, ବୋଲୁ ବୋଲୁ କାନ୍ଦି ପକାଇଲେ । କାନ୍ଧରୁ ପାଛୁଡ଼ା ନେଇ ଆଖିରୁ ଥରକୁ ଥର ଲୁହ ପୋଛୁଥାନ୍ତି । ତା'ଦେଖି ମୁଁ ତ ନିର୍ବାକ ଓ ନିସ୍ତବ୍ଧ ! ଅଳ୍ପ ସମୟପରେ ପ୍ରକୃତିସ୍ଥ ହୋଇ ସେ କହିଲେ, 'ଜାଣିଲେ ବାବୁ, ଏ ଗୋପବନ୍ଧୁଙ୍କର ରଚନା । ମୟୂରଭଞ୍ଜର ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେବ ପୃଥିବୀ-ଭ୍ରମଣରେ ବାହାରିଲାବେଳେ ତାଙ୍କ ବିଦାୟ ଉପଲକ୍ଷେ ଯେଉଁ ସଙ୍ଗୀତ ଏକ ବିରାଟ ଜନ-ସଭାରେ ବୋଲାଯାଇଥିଲା, ଏହିଟି ସେଇ । ମୁଁ ତ ନିଜେ ସେ ଗୀତଶୁଣି ଅଶ୍ରୁ ସମ୍ବରଣ କରିପାରିଲି ନାହିଁ, ଲୋତକପୂର୍ଣ୍ଣ ଚକ୍ଷୁରେ ସଭାର ଚାରିଆଡ଼କୁ ଚାହିଁ ଦେଖିଲି ସମସ୍ତଙ୍କର ଅବସ୍ଥା ମୋରି ପରି । ସହସ୍ର ଲୋକଙ୍କର ଅଶ୍ରୁଧାର ଏକୀଭୂତହୋଇ ଯେପରି ଦୁଃଖର ଏକ ମହାସମୁଦ୍ର ସୃଷ୍ଟି କରିଛି । ଏ କ'ଣ ସାମାନ୍ୟ ଶକ୍ତି ।'' ପଣ୍ଡିତଙ୍କ କଥା ଶୁଣି ମୋର ଆଉରି ୨୫ ବର୍ଷ ତଳର କଥା ମନେ ପଡ଼ିଗଲା । ସତ୍ୟବାଦୀ ବିଦ୍ୟାଳୟକୁ ସେତେବେଳେ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ ଦେଇ ନ ଥାଏ । ଗୋପବନ୍ଧୁ ଓ ତାଙ୍କର ସହକର୍ମୀମାନଙ୍କ ଉପରେ ଗୁଇନ୍ଦାବିଭାଗ ପୁଲିସର କଡ଼ା ନଜର । ପୁଲିସର ସନ୍ଦେହ, ଏମାନେ ଏଠାରେ ବୋମା ତିଆରି କରୁଛନ୍ତି, ବ୍ରିଟିଶ ସରକାରକୁ ଏ ଦେଶରୁ ତଡ଼ିବାପାଇଁ, ସେତେବେଳେ ଥରେ ପୁରୀ ଜିଲାର କଲେକ୍ଟର ରମାବଲ୍ଲଭ ମିଶ୍ରଙ୍କୁ ସତ୍ୟବାଦୀ ବିଦ୍ୟାଳୟକୁ ନିମନ୍ତ୍ରଣ କରାଯାଇଥିଲା । ତାଙ୍କୁ ସ୍ୱାଗତ ସମ୍ଭାଷଣ କରିବା ନିମନ୍ତେ କେତେଜଣ ଛାତ୍ର ଗୋଟିଏ ଆବାହନ ସଙ୍ଗୀତ ବୋଲିଥିଲେ । ସମଗ୍ର ସଙ୍ଗୀତଟି ମୋର ଆଜି ମନେନାହିଁ । ତେବେ ତା'ର ପ୍ରଥମ ପଦଟି ଥିଲା 'ଆସ ହେ ରମାବଲ୍ଲଭ, ବିହାର-ବରନନ୍ଦନ········ ।' ରମାବଲ୍ଲଭ ମିଶ୍ର ବିହାରବାସୀ ଥିଲେ । ଏ ଗୋଟିଏ ସାଧାରଣ ଓ ଅତି ଲୌକିକ ସ୍ୱାଗତଗୀତିକା ମାତ୍ର; କିନ୍ତୁ ସମବେତ ଜନତା ସେଦିନ କିପରି ଭାବ-ବିହ୍ୱଳହୋଇ ନିସ୍ତବ୍ଧଭାବରେ ସଙ୍ଗୀତ ଶୁଣୁଥିଲେ, ସେ ଚିତ୍ର ଏ ପର୍ଯ୍ୟନ୍ତ ମୋ ମନରୁ ବିସ୍ମୃତ ହୋଇନାହିଁ । ପରେ ଶୁଣିବାକୁ ପାଇଲୁ ଗୋପବନ୍ଧୁ ବାବୁ ହିଁ ସେ କବିତାର ରଚୟିତା ।

ବାଙ୍କିର ପଣ୍ଡିତ ମହାଶୟ ଶ୍ରୀ ରାମଚନ୍ଦ୍ର ଭଞ୍ଜଦେବଙ୍କ ବିଦାୟ ଉପଲକ୍ଷେ ବୋଲି ହୋଇଥିବା ଗୋପବନ୍ଧୁଙ୍କର ଯେଉଁ କବିତାଟି ସେ ଦିନ ମୋ ଆଗରେ ବୋଲିଲେ ଏବଂ ତା'ଉପରେ ଯେଉଁ ମନ୍ତବ୍ୟ ପ୍ରକାଶ କଲେ, ମୁଁ ତାହା ଅବିଶ୍ୱାସ କରି ନ ଥିଲି, କିନ୍ତୁ ସେ ବିଶ୍ୱାସ ପ୍ରବଳଭାବରେ ଘନୀଭୂତ ହେଲା ଯେଉଁଦିନ,

ପ୍ରତ୍ନତତ୍ତ୍ୱବିଦ୍ ଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କର ମୟୂରଭଞ୍ଜରେ 'ଉତ୍କଳମଣି ଗୋପବନ୍ଧୁ' ଶୀର୍ଷକ ପ୍ରବନ୍ଧଟି ପଢ଼ିବାକୁ ପାଇଲି । ପ୍ରବନ୍ଧଟି ପ୍ରକାଶ ପାଇଥିଲା, ୧୯୬୩ ଜୁଲାଇ, ୧୧ ତାରିଖ, ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା 'ସମାଜ'ରେ । ଅନ୍ୟାନ୍ୟ ପ୍ରସଙ୍ଗମଧ୍ୟରେ ସେ ମହାଶୟ ଲେଖିଥିଲେ, 'ଗୋପବନ୍ଧୁଙ୍କ ବାରିପଦା ଅବସ୍ଥିତିର କେତେକ ମାସପରେ ମହାରାଜା ଶ୍ରୀ ରାମଚନ୍ଦ୍ର ପୃଥିବୀଭ୍ରମଣପାଇଁ ୧୯୧୦ ମେ ମାସରେ ବାହାରିଲେ । ତାଙ୍କର ଏହି ପ୍ରସ୍ତାବରେ ଅନେକ ଲୋକ ବିଚଳିତ ହୋଇଥିଲେ; କିନ୍ତୁ ଗୋପବନ୍ଧୁ ତାଙ୍କୁ ଏ ବିଷୟରେ ଉତ୍ସାହିତ କରିଥିଲେ । ମହାରାଜାଙ୍କ ଯାତ୍ରା ପୂର୍ବରୁ ବାରିପଦାରେ ଗୋଟିଏ ବିଦାୟ ସଭା ହୋଇଥିଲା × × × × × । ଏହି ସଭା ଉପଲକ୍ଷରେ ଗୋପବନ୍ଧୁ ଯେଉଁ ସଙ୍ଗୀତ ରଚନା କରିଥିଲେ, ତାହା ସମସ୍ତଙ୍କର ବଡ଼ ମର୍ମସ୍ପର୍ଶୀ ହୋଇଥିଲା । ସଙ୍ଗୀତଟି ମୋର ପୂର୍ବ ମନେନାହିଁ । ତହିଁରୁ କେତେ ଗୋଟି ଧାଡ଼ି ତଳେ ଉଦ୍ଧୃତ ହେଲା—

'ରାମଚନ୍ଦ୍ର ମହାରାଜା ପରଜା-ପରିଶୋଧନ
ଯାଉଛ କେଉଁ ବିଦେଶେ ହେ ଭଞ୍ଜକଞ୍ଜତପନ
ଭୁଲିବ ନାହିଁ ଭୂପାଳ, ସଚଳ ଶୁଦ୍ଧ ସଲିଳ
ମେଘାସନ ଗିରିକୁଞ୍ଜ ବୃନ୍ଦାବନଙ୍କ ପୂଜନ ।
ଗୋହାଡ଼ ପାହାଡ଼ ଦେଶ ଭୁଲିବ ନାହିଁ ନରେଶ
ଘେନ ଭବ୍ୟ ଅବଧାନେ ଏ ବିନୀତ ନିବେଦନ ।'

ଏହି ସଙ୍ଗୀତ ବୋଲାହେଲାବେଳେ ସଭାସ୍ଥଙ୍କର ଚକ୍ଷୁ ଅଶ୍ରୁ-ପରିପୂର୍ଣ୍ଣ ହୋଇଥିଲା—

ପଣ୍ଡିତ ଓ ପ୍ରତ୍ନତତ୍ତ୍ୱବିତ୍ ଉଭୟଙ୍କ କଥାରେ ପୂର୍ଣ୍ଣ ସାମଞ୍ଜସ୍ୟ । ଏ ଭୂମିକା ଏଠାରେ ଅବତାରଣା କରିବାର ଉଦ୍ଦେଶ୍ୟ, ପ୍ରାୟ ୧୯୦୦ ଠାରୁ ୧୯୨୩ ମସିହା ପର୍ଯ୍ୟନ୍ତ ଏହି ଦୀର୍ଘ ୨୩ ବର୍ଷ ମଧ୍ୟରେ ଗୋପବନ୍ଧୁଙ୍କ ଲେଖନୀରୁ କବିତାର ଅମିୟ ଧାରା ନିଃସୃତ ହୋଇ ନଥିଲେ ମଧ୍ୟ ସେ ଶକ୍ତିର ଅବସାନ ଘଟି ନ ଥିଲା । ନାନା କର୍ମଜଞ୍ଜାଳର ଗୃହରେ ମଧ୍ୟ ବୀଣାପାଣିଙ୍କର ସେହି ଅମରବୀଣାର 'ମୃତ-ସଞ୍ଜୀବନୀ ଭବ୍ୟନାଦ' ତାଙ୍କ ଅନ୍ତରକୁ ଅନୁରଞ୍ଜିତ କରିରଖିଥିଲା; କିନ୍ତୁ ତାହା ପ୍ରକାଶ ପାଇପାରୁନଥିଲା । ବିଦ୍ୟୁତ କଣା ପ୍ରଚ୍ଛନ୍ନଭାବରେ ଥିଲା: କିନ୍ତୁ ତାର ସ୍ଫୁରଣ ହୋଇ ପାରୁନଥିଲା । ଇତି ମଧ୍ୟରେ 'ମୁକୁର' ମାସିକ ପତ୍ରିକାରେ ତାଙ୍କର ଦୁଇଟି ସୁନ୍ଦର କବିତା ପ୍ରକାଶ ପାଇଥିଲା, ସେ ଦୁଇଟିର ନାମ 'ସରଳତା' ଓ 'ଜାଗରଣ' ।

କିନ୍ତୁ ଷ୍ଟ୍ରେଣର ସୁଯୋଗ ଆସିଲା ୧୯୨୩ ମସିହା ଜାନୁଆରୀ ମାସଠାରୁ ୧୯୨୪ ମସିହା ଜୁନ୍‌ମାସ ପର୍ଯ୍ୟନ୍ତ, ଯେତେବେଳେ ସେ ଅସହଯୋଗ ଆନ୍ଦୋଳନରେ ଯୋଗଦାନକରି ରାଜନୈତିକ ବନ୍ଦୀରୂପେ କଟକରୁ ହଜାରିବାଗକୁ ସ୍ଥାନାନ୍ତରିତ ହୋଇ ହଜାରିବାଗ ଜେଲର ପ୍ରସ୍ତର ପ୍ରାଚୀର ମଧ୍ୟରେ ଆବଦ୍ଧ ହୋଇ ରହିଥିଲେ ।

ବନ୍ଦୀଶାଳା ମଧ୍ୟରେ ଆବଦ୍ଧ ଥାଇ ଜଣେ ମନସ୍ୱୀ ପାଶ୍ଚାତ୍ୟ କବି ଥରେ ଲେଖିଥିଲେ—

"Stone walls do not a prison make
for iron bars a cage;
Minds innocent and quiet take
That for a hermitage."

ଗୋପବନ୍ଧୁ ସେହିପରି ହଜାରିବାଗ ଜେଲ୍‌କୁ ପବିତ୍ର ତୀର୍ଥଭୂମିରୂପେ ମନେ କରିଥିଲେ । କଟକର ସ୍ୱରାଜ୍ୟ–ଆଶ୍ରମ ଥିଲା ତାଙ୍କ ବିପ୍ଲବୀ ଜୀବନର ସାଧନାର ପୀଠ । ବର୍ତ୍ତମାନ ସୁଦୂର ହଜାରିବାଗ ବନ୍ଦଶାଳା ହେଲା ତାଙ୍କର 'ନୀରବ' ମନ୍ତ୍ର ସାଧନର ଋଷି-ଆଶ୍ରମ । ଦୃଷ୍ଟି ବର୍ତ୍ତମାନ ବାହ୍ୟଜଗତର ପରିପାର୍ଶ୍ୱରୁ ଆସି ଅନ୍ତର ମଧ୍ୟରେ କେନ୍ଦ୍ରୀଭୂତ ହେଲା ! ବାହ୍ୟ ଜଗତର ବିଚିତ୍ର ଅନୁଭୂତି, ଅଭିଜ୍ଞତା, ଆଶା ଓ ନୈରାଶ୍ୟ ଯାହା ଅନେକ ସମୟରେ ତାଙ୍କ ଚିତ୍ତକୁ ବିକ୍ଷିପ୍ତ କରିଥିଲା, ସେ ସବୁ ବନ୍ଦୀଶାଳାର ନିର୍ଜନ ପ୍ରକୋଷ୍ଠରେ ବର୍ତ୍ତମାନ ହୃଦୟ ପ୍ରଶାନ୍ତିରେ ନବ ନବ ରୂପ ନେଇ ଉଚ୍ଛ୍ୱସିତ ହୋଇ ଉଠିଲା । ବନ୍ଦ-ଜୀବନରେ ଦେଖିବାକୁ ମିଳେ ଗୋପବନ୍ଧୁଙ୍କର କେବଳ ଭାବନା ଓ ଆତ୍ମଚିନ୍ତା । ବିଶ୍ୱ-ସାହିତ୍ୟକୁ ଏହି ବନ୍ଦଶାଳାର ଅବଦାନ କିଛି କମ୍ ନୁହେଁ । ଯେଉଁମାନେ ଜେଲ୍-ଜୀବନର ଦୁଃଖ-କଷ୍ଟକୁ ଆନନ୍ଦରେ ବରଣ କରିନେଇଥାନ୍ତି, ଯେଉଁମାନେ ଉଚ୍ଚାକାଂକ୍ଷୀ, କ୍ଳେଶଶାଳୀ ଓ ସତ୍‌ଜ୍ଞାନସମ୍ପନ୍ନ, ସେମାନେ ଏହି କାରାରୁଦ୍ଧ ଜୀବନକୁ ଭଗବାନଙ୍କର ଆଶୀଷରୂପେ ଗ୍ରହଣ କରନ୍ତି । ଏହି ନିଃସଙ୍ଗ ନିର୍ଜନତା ସେମାନଙ୍କୁ ଭାବସ୍ଥ କରେ, ଧ୍ୟାନ-ସମାହିତ ଚିତ୍ତରେ ସେମାନେ ଜଗତ୍ ଓ ଜୀବନକଥା ଚିନ୍ତାକରି ପୂର୍ଣ୍ଣତା ଅଭିମୁଖରେ ଅଗ୍ରସର ହୁଅନ୍ତି । ଆତ୍ମିକଶକ୍ତିର ଉତ୍କର୍ଷ ବିଧାନ କରନ୍ତି । ଯେଉଁମାନେ ଉଦାରପ୍ରାଣ, ସେମାନଙ୍କର ଉଦାରତା ମନନଶୀଳତା ବନ୍ଦଶାଳାରେ ଆହୁରି ଉଜ୍ଜ୍ୱଳଭାବରେ ବିକଶିତ ହୋଇ ଉଠେ । ଯେଉଁମାନେ ଧର୍ମଦୃଷ୍ଟିରେ ଓ ଆଧ୍ୟାତ୍ମିକ ଚେତନାରେ ଉଦ୍‌ବୁଦ୍ଧ, ସେମାନଙ୍କର ଏ ଭଗବତ୍-ପ୍ରୀତି ଏଠାରେ ଅଧିକ ଦୃଢ଼ର ଓ ପ୍ରଗାଢ଼

ହୋଇ ଉଠେ; କିନ୍ତୁ ଯେଉଁମାନେ ଅନୁଦାର, ନୀଚ ଓ ସଙ୍କୀର୍ଣ୍ଣମନା, ସେମାନଙ୍କୁ ଏ ବନ୍ଦିଶାଳା ଆହୁରି ନୀଚ ଓ ଅନୁଦାର କରିପକାଏ । ଜନ୍ ବନିଅନ୍ ଏହିଠାରେ ତାଙ୍କର ବିଶ୍ୱବିଖ୍ୟାତ 'Pilgrim's progress' ଲେଖିଥିଲେ । ରାଲେ ଏହି ନିର୍ଜନ ପ୍ରକୋଷ୍ଠରେ ବସି ତାଙ୍କର 'History of the world' ଗ୍ରନ୍ଥ ଲେଖିଥିଲେ । ଡ଼ଫୋ ଜେଲ୍‌ଖାନା ମଧ୍ୟରେ ଆବଦ୍ଧ ଥାଇ 'Robinson Crusoe' ରଚନା କରିଥିଲେ । ଦୃଷ୍ଟାନ୍ତପାଇଁ ଏତେଦୂର ଯିବା ନିଷ୍ପ୍ରୟୋଜନ । ମହାତ୍ମାଗାନ୍ଧି ଓ ପଣ୍ଡିତ ଜୱାହରଲାଲଙ୍କର ଉପାଦେୟ ଗ୍ରନ୍ଥସବୁ ଜେଲ୍‌ଖାନାରେ ଲେଖା । ମହାତ୍ମାଗାନ୍ଧିଙ୍କ 'ଆତ୍ମଚରିତ', ଜୱାହରଲାଲ୍‌ଙ୍କ 'ଆତ୍ମଚରିତ' 'ବିଶ୍ୱ ଇତିହାସ' (Glimpses of world History) ଏବଂ 'ଭାରତ-ଆବିଷ୍କାର' ପ୍ରଭୃତି ଗ୍ରନ୍ଥ ବନ୍ଦିଶାଳାରେ ଲିଖିତ । କର୍ମ-ଯୋଗୀକୁ ବାଧ୍ୟକରି କର୍ମରୁ ନିବୃତ୍ତକଲେ ସେ ନିଶ୍ଚିନ୍ତ ରହିପାରେନାହିଁ । କର୍ମ ଓ ଚିନ୍ତା ଏହି ଦୁଇଟି ଉପାଦାନକୁ ନେଇ ମନୁଷ୍ୟ-ଜୀବନର ସାର୍ଥକତା । କର୍ମବିଚ୍ୟୁତ ଜ୍ଞାନୀପୁରୁଷମାନେ ବନ୍ଦିଶାଳା ମଧ୍ୟରେ ଚିନ୍ତାଶୀଳ ହୁଅନ୍ତି, ଭାବ-ରାଜ୍ୟରେ ସ୍ୱାଧୀନଭାବରେ ବିଚରଣ କରନ୍ତି, ପୁଣି ଯେଉଁ ଚିନ୍ତା ମନରୁ ବାହାରି ମହାଶୂନ୍ୟରେ ବିଲୀନ ହୋଇଯାଏ, ସେ ଚିନ୍ତାର ବା ମୂଲ୍ୟ କ'ଣ ? ସେମାନଙ୍କର ଆତ୍ମ-ପ୍ରକାଶର ବାସନା ଏବଂ ଜନହିତସଙ୍କାଶେ ସେହି ସବୁ ଚିନ୍ତାକୁ ଅଭିବ୍ୟକ୍ତ ଦେବାର ସାଧୁ ପ୍ରଣୋଦନାରୁ ଆଜି ଆମ୍ଭେମାନେ କାରାଗାରରୁ ନବ ନବ ଜ୍ଞାନାଲୋକ ପାଇ ସୌଭାଗ୍ୟବାନ୍ । ଏହି କାରାଗାର ଆମକୁ ଦେଇଛି ଦାର୍ଶନିକ, ବୈଜ୍ଞାନିକ, ଧର୍ମ-ପ୍ରଚାରକ, ଐତିହାସିକ ଓ କବି । ଏମାନଙ୍କ ମଧ୍ୟରୁ ଅନେକ କାରାଗାରରେ ଆବଦ୍ଧ ନ ହୋଇଥିଲେ, ଜ୍ଞାନରାଜ୍ୟର ଏହି ଅମୂଲ୍ୟ ସମ୍ପଦରୁ ଆମକୁ ବଞ୍ଚିତ ହେବାକୁ ପଡ଼ିଥାନ୍ତା । ସେମାନଙ୍କର ଜୀବନ କେବଳ କର୍ମରେ ପରିସମାପ୍ତ ହୋଇଥାନ୍ତା । ଆମେ ଅବଶ୍ୟ ଅଲକ୍ଷିତଭାବରେ ସେହି କର୍ମଯୋଗୀମାନଙ୍କର କର୍ମଫଳ ଭୋଗକରୁଥାଉଁ, କିନ୍ତୁ କର୍ମଠାରୁ ଚିନ୍ତା ଓ ଭାବର ମୂଲ୍ୟ ଅଧିକ । କର୍ମୀ ସହିତ ଦୃଶ୍ୟମାନ ଜଗତରେ କର୍ମର ଅବସାନ; କିନ୍ତୁ ଭାବ ଅମର ଓ ମାନବସମାଜର ଚିରନ୍ତନ ସମ୍ପଦ । ଭାବ-ରାଜ୍ୟରେ ମୃତ୍ୟୁ ନାହିଁ । ଜୱାହରଲାଲଙ୍କ 'ଆତ୍ମ-ଚରିତ' ଏବଂ 'ଭାରତ-ଆବିଷ୍କାର' ମୃତ୍ୟୁଞ୍ଜୟ । ସେହିପରି 'କାରା-କବିତା', 'ବନ୍ଦୀର ଆତ୍ମକଥା' ଏବଂ 'ଧର୍ମପଦ' ଯେ ପର୍ଯ୍ୟନ୍ତ ଅଛି, ସେ ପର୍ଯ୍ୟନ୍ତ ଭାବ-ରାଜ୍ୟରେ ଗୋପବନ୍ଧୁଙ୍କର ମୃତ୍ୟୁ ନାହିଁ ।

'ଅବକାଶ-ଚିନ୍ତା'ରେ ଆମ୍ଭେମାନେ ଯେଉଁ ଉଦାରମନା ଯୁବକ ଗୋପବନ୍ଧୁଙ୍କୁ ଦେଖିବାକୁ ପାଉ, 'କାରା-କବିତା'ରେ ତାଙ୍କର ସେହି ବିଶ୍ୱପ୍ରାଣତା, ସେହି ଆଧ୍ୟାତ୍ମିକତା ଏବଂ ସେହି ନିଷ୍କଳଙ୍କ ଦେଶାତ୍ମବୋଧର ଅକ୍ଷୟ ପରିଚୟ ମିଳେ । ରାଜନୈତିକ ଘନଘଟା, ଦୁର୍ଭିକ୍ଷର ହାହାକାର ପରିବେଷ୍ଟିତ ପରିବେଶ ଜୀବନର

ନାନା ଜଟିଳ ଅନୁଭୂତି ଓ ଅଭିଜ୍ଞତା ତାଙ୍କୁ ବୃହତ୍ତର ଜୀବନ-ସାଧନାର ମୂଳ ସୂତ୍ରକୁ ଛିନ୍ନ କରିପାରିନାହିଁ । କର୍ମ-ପ୍ରବାହରେ ଆସିଛୁ ଘୋର ପରିବର୍ତ୍ତନ, ଯେଉଁ ସାର୍ବଜନୀନ ଶିକ୍ଷା-ପ୍ରସାରକୁ ସେ ଦେଶର ସର୍ବାଙ୍ଗୀନ କଲ୍ୟାଣର ମୂଳମନ୍ତ୍ରରୂପେ ଗ୍ରହଣ କରି ସତ୍ୟବାଦୀ ବିଦ୍ୟାଳୟ୍ର କାହିଁକି, ଗୋଟିଏ ବିଶାଳ ଓ ବ୍ୟାପକ ଶିକ୍ଷାସଙ୍ଘ ପ୍ରତିଷ୍ଠା କରିବା ନିମନ୍ତେ କଳ୍ପନାଜଳ୍ପନାର ଚୂଡ଼ାନ୍ତ କରିସାରିଥିଲେ, ହଠାତ୍ ଘଟନା ପ୍ରବାହରେ ସେ ଚିନ୍ତା ଆଜି ସେପରି ତାଙ୍କ ମନକୁ ବ୍ୟାକୁଳ କରୁନାହିଁ । ଅସହଯୋଗ ଆନ୍ଦୋଳନର ସୂତ୍ରପାତ ପରେ ସେ ଭାବି ସ୍ଥିର କରିଛନ୍ତି—ଆଗ ଭାରତର ସ୍ୱାଧୀନତା, ପରେ ଶିକ୍ଷା । ସ୍ୱାଧୀନତା ନ ପାଇଲେ ଏ ଶିକ୍ଷାର କି ମୂଲ୍ୟ ? ମନୁଷ୍ୟତା ଗଠନ ଯେଉଁ ଶିକ୍ଷାର ଉଦ୍ଦେଶ୍ୟ, ସେ ପୂର୍ଣ୍ଣାଙ୍ଗ ଶିକ୍ଷା ପରାଧୀନ ଭାରତରେ ଅସମ୍ଭବ; କିନ୍ତୁ ଏହା ମଧ୍ୟରେ ଗୋପବନ୍ଧୁଙ୍କ ଜୀବନ-ଦର୍ଶନ ଏବଂ ସାଧନାର ମନ୍ତ୍ରରେ କୌଣସି ପରିବର୍ତ୍ତନ ନାହିଁ । 'ଅବକାଶ-ଚିନ୍ତା'ର ପ୍ରାର୍ଥନା କବିତାରେ ଯେଉଁ ବିଭୁଭାବ ଏବଂ ଉଦ୍ଦୀପ୍ତ ଧର୍ମଭାବ, ଯେଉଁ ବିଶ୍ୱୈକପ୍ରାଣତା ଏବଂ ଜଗନ୍ନିବସ୍ତାରି କଲ୍ୟାଣବୋଧ ପରିପକ୍ୱ ବୟସରେ ଜୀବନର ନାନା ଝଡ଼, ବାତ୍ୟା ଓ ବିକ୍ଷୋଭ ମଧ୍ୟରେ ସେହି ଉଦାର ମହାଭାବ ଓ ପ୍ରାଣର ପ୍ରାଚୁର୍ଯ୍ୟ ।

ଗୃହଜୀବନରେ ବିଭୁ-ପ୍ରାର୍ଥନାରେ ତାଙ୍କର ଯେଉଁ ଶୁଦ୍ଧପୂତ କାମନା, କାରାଗାରରେ ଆବଦ୍ଧ ଥାଇ ଈଶ୍ୱରଙ୍କଠାରେ ସେହି ବିନମ୍ର ପ୍ରଣତି । ବନ୍ଦୀର 'ସାନ୍ଧ୍ୟଭାବନା'ରେ ବିଭୁ-ଉପାସନା କରିବାକୁ ଯାଇ ସେ ଲେଖିଅଛନ୍ତି—

'ଏ ବିଜନ ବିଲେ କମ୍ପା କରୁଛୁ ମୁଁ ସେ ଭାବନା
ଏକାନ୍ତେ ମୁଦ୍ରି ନେତ୍ରେ ବସି କରେ ହେଲେ ଉପାସନା ।
ପୂରି ରହିଛନ୍ତି ପ୍ରଭୁ ସର୍ବଭୂତେ ସର୍ବସ୍ଥାନେ
ପାଇବି ପରାଣେ ଶାନ୍ତି ତାଙ୍କ ପାଦପଦ୍ମ ଧ୍ୟାନେ ।
ବଜାଇବି ହୃଦେ ଘଣ୍ଟା ଅନ୍ତରେ ପ୍ରଦୀପ ଜାଳି
ଆରତି ରଚିବି ଏଥି ପଦେ ପ୍ରେମ-ପୁଷ୍ପ ଢାଳି ।
ଜୀବନ ନିବିଡ଼ତମେ ସେହି ମୋର ଧ୍ରୁବତାରା
ତାଙ୍କ ବଳେ ତୀର୍ଥ ମୋର ବିଷମ ଦୁଃସହ କାରା ।'

ଅନ୍ତର ମଧ୍ୟରେ ଈଶ୍ୱରଙ୍କର ଅବସ୍ଥାନ, ତାଙ୍କର ସର୍ବବ୍ୟାପିତ୍ୱ ଏବଂ ଅନନ୍ତ ପ୍ରେମଧାରାରେ ଏ ଯେଉଁ ଉପଲବ୍ଧିର ଅଭିବ୍ୟକ୍ତି ଆମ୍ଭେମାନେ ତାଙ୍କ 'ସାନ୍ଧ୍ୟ-ଭାବନା'ରେ ଦେଖୁ, ଏଇତ ଅପରିପକ୍ୱ ବୟସରେ ରଚିତ 'ଅବକାଶ-ଚିନ୍ତା'ର 'ଶିବରାତ୍ରି'ର ସେହି ମହାଭାବର ପ୍ରତିଧ୍ୱନି, ଯେଉଁଠାରେ କବି ଭଗବାନଙ୍କୁ ନିଜର ଅନ୍ତର ମଧ୍ୟରେ ଦେଖି କହିଥିଲେ—

'ଦୂର ଦେବାଳୟେ ଯିବା ନାହିଁ ପ୍ରୟୋଜନ
ନିଜ ଅଭ୍ୟନ୍ତର ଦେଖ ଫେଡ଼ିଣ ନୟନ ।'

ଭଗବତ୍-ବିଶ୍ୱାସରେ ଉଦ୍‌ବୁଦ୍ଧ ଗୋପବନ୍ଧୁ ଯେବେପ୍ରଥମ ପିତୃପୁରୁଷଙ୍କୁ ତର୍ପଣ କରିବାକୁ ଯାଇ ସ୍ୱର୍ଗସ୍ଥ ସେହି ଦିବ୍ୟାତ୍ମାମାନଙ୍କୁ ବନ୍ଦାଞ୍ଜଳିହୋଇ କାତର କଣ୍ଠରେ ନିବେଦନ କରିଅଛନ୍ତି—

'ତ୍ରିଦିବବାସୀ ଚରାଚରେ କରି ଆମନ୍ତ୍ରଣ
ମୁଁ ଯେ ଏଥି କରେ ଜଳ-ଅଞ୍ଜଳି ଅର୍ପଣ ।
ସେ ସାରା ବିଶ୍ୱରେ ମୋରେ ଅଛି କାହିଁ ସ୍ଥାନ ?
ସହଇ ମୋ ଭାଗ୍ୟେ ଘୋର ପୀଡ଼ା ଅପମାନ ?
ଏ ଦାରୁଣ ଚିନ୍ତାଗ୍ନି ଦିଏ ଯେ ଯନ୍ତ୍ରଣା,
ତାହା କିଏ ସ୍ୱର୍ଗବାସୀ ତୁମ୍ଭଙ୍କୁ ଅଜଣା ?

କବିଙ୍କର ଏ ପରାଧୀନତାର ବେଦନା ଏକ ଦିବ୍ୟ ଓ ଆଧ୍ୟାତ୍ମିକ ବେଦନା । ଏ ପରାଧୀନତା-କଳଙ୍କଲିପ୍ତ ପାପମୟ ହାତରେ ସେ କିପରି ସେହି ସ୍ୱର୍ଗବାସୀ ପିତୃପୁରୁଷଙ୍କୁ ଜଳ-ତର୍ପଣରେ ତୃପ୍ତ କରିବେ ? ସ୍ୱାଧୀନତାର ଏହି ମହିମାମୟ ଆଧ୍ୟାତ୍ମିକ ରୂପ ମହାତ୍ମାଗାନ୍ଧିଙ୍କ ବ୍ୟତୀତ ଆଉ କାହା ଲେଖନୀରେ ଏପରି ବ୍ୟାକୁଳ ଓ ଜୀବନ୍ତ ପ୍ରକାଶ ଲାଭ କରିଛି ବୋଲି ମନେହୁଏ ନାହିଁ; କିନ୍ତୁ ଯାହାର ଚିତ୍ତ ଏପରି ବିଶ୍ୱୈକାନୁଭୂତିରେ ସ୍ପନ୍ଦିତ, ଯାହାର ଦିବ୍ୟ ଦୃଷ୍ଟି ମର୍ତ୍ତ୍ୟଠାରୁ ସ୍ୱର୍ଗ ପର୍ଯ୍ୟନ୍ତ ପ୍ରସାରିତ, ସେପରି ଆତ୍ମପ୍ରସାରଶୀଳ ବ୍ୟକ୍ତିର ଦୁଃଖ ଚିରସ୍ଥାୟୀ ନୁହେଁ । ତେଣୁ ଆଶାର ଉଜ୍ଜ୍ୱଳ ଛଟାରେ ଆଲୋକିତ ସେହି ବିଶୁଦ୍ଧ ଆତ୍ମାରୁ ଆଶ୍ୱାସନାର ବାଣୀ ପ୍ରକଟିତ ହୋଇ ଉଠିଛି ।

"ଆସୁ ସ୍ୱର୍ଗରାଜ୍ୟୁଁ ତବ ପବିତ୍ର ପ୍ରେରଣା,
ଝରୁ ଶୁଭ ଆଶୀର୍ବାଦ-ଅମୃତନିର୍ଝରଣା ।
ପଡ଼ୁ ଏ ଭାରତପ୍ରାଣେ ସ୍ୱର୍ଗୀୟ କିରଣ,
ନନ୍ଦନକାନନୁ ବହୁ ସ୍ନିଗ୍ଧ ସମୀରଣ···
ସ୍ୱରାଜ୍ୟ ଅଙ୍କୁର କ୍ରମେ ହେଉ କଳ୍ପତରୁ,
ଭାରତ ଅଭୀଷ୍ଟ ଶାଖା ଫୁଲଫଳ ଧରୁ ।
ଭାରତ-ପ୍ରଭାବେ ମତ୍ତ ହେଉ ବିଶ୍ୱପ୍ରାଣୀ,
ମଧୁମୟଭାବେ ମତ୍ତ ହେଉ ବିଶ୍ୱପ୍ରାଣୀ ।"

'ଅବକାଶ-ଚିନ୍ତା'ର 'ପ୍ରାର୍ଥନା' କବିତାରେ ଆଦ୍ୟ ଯୌବନର ସେହି ବିଶ୍ୱପ୍ରାଣତାର ଆକୁଳତା, ସେହି ମହାଭାବର ଉଦ୍‌ବେଳନ ।

"ସମାଜ ତୁମୁଳ ରଣ ପ୍ରାଙ୍ଗଣେ
ଉତ୍କଳର ଦୀନ ତନୟଗଣେ,
ପଛରେ କେବେହେଁ ନ ପଡ଼ି ଦେବ,
ଶ୍ରୀଗୁରୁମୁଖୁ ଏହି ଆଦେଶ ହେବ,
ଘେନ ଅପୂର୍ବ ଉତ୍ସାହ ଯେ,
ଭାରତର ମହା-ଜାତୀୟ ତରଙ୍ଗେ,
ମିଶୁ ଉତ୍କଳ ପ୍ରବାହ ଯେ ।"

ଯେଉଁ 'ଗିରି-ଶିଖେ ଲକ୍ଷ୍ୟ ରଖି ଚାଲିବି ମୁକର' ସଂକଳ୍ପକାର ସେ ଆଦ୍ୟ ଯୌବନରେ ଲେଖିଥିଲେ—

"ଶତଶଣୀ ବଳ ଶୋଭି
କି ବଚନ ମନୋଲୋଭି
କିପରି ଏହାର ଆଶା ଛାଡ଼ିବି ମୁଁ ନର,
ଗଲେ ପଛେ ଯାଉ ଜୀବ
ଯାହା ହେବ ଦେଖାଯିବ
ଗିରିଶିଖେ ଲକ୍ଷ୍ୟ ରଖି ଚାଲିବି ମୁକର ।"

ସେହି ଦିବ୍ୟଧାମର ସନ୍ଧାନରେ କାରାଗାରରେ ମଧ୍ୟ ତାଙ୍କ ପ୍ରାଣ ଅସ୍ଥିର । ସେହି ଶାନ୍ତି-ସୁଧା ଲାଗି ଆତ୍ମା ସେଠାରେ ମଧ୍ୟ ପିପାସିତ; କିନ୍ତୁ କାରାଗାରର ଏ ପିପାସାମଧ୍ୟରେ ଗୋଟିଏ କରୁଣ ରାଗିଣୀର ମୂର୍ଚ୍ଛନା ଅଛି, ଯାହା 'ଅବକାଶ-ଚିନ୍ତା'ର ବିଭୁପ୍ରେମସମ୍ବଳିତ ଭକ୍ତିରସାଶ୍ରିତ କବିତାରେ ଦେଖିବାକୁ ମିଳେ-ନାହିଁ । ଏ ବିଷାଦର କାରଣ ଅଛି । ଏବେ ଆୟୁ ଅପରାହ୍ନ ନୁହେଁ, ସେ ମୃତ୍ୟୁ-ପଥରେ ପ୍ରଧାବିତ, ଦ୍ୱିତୀୟତଃ ସ୍ୱରାଜ୍ୟପ୍ରାପ୍ତିର ସ୍ୱପ୍ନ ଏ ଜୀବନରେ ସଫଳ ହେବ କି ନାହିଁ, ସେ ବିଷୟରେ ସନ୍ଦେହ, ଏହା ହିଁ କାରାବାସୀ ଗୋପବନ୍ଧୁଙ୍କ ପ୍ରାଣକୁ ଏପରି ବ୍ୟଥା-ଜର୍ଜର କରିଛି ଯେ ପ୍ରାର୍ଥନାର ବାଣୀ ବିଷାଦରେଖାରେ ରସାଣିତ ହୋଇ ଉଠିଛି; କିନ୍ତୁ 'ଅବକାଶ-ଚିନ୍ତା'ର ଭକ୍ତକବି ଗୋପବନ୍ଧୁ ଏବଂ ରାଜଦ୍ରୋହ ଅଭିଯୋଗରେ ଅଭିଯୁକ୍ତ ଗୋପବନ୍ଧୁଙ୍କ ମନମଧ୍ୟରେ ଭିତ୍ତିଗତ କୌଣସି ପାର୍ଥକ୍ୟ ନାହିଁ । ସକଳ କର୍ମ, ସକଳ ନୈଷ୍କର୍ମ୍ୟ, ସକଳ ଚିନ୍ତା ଏବଂ ଭବ-ଭାବନାର ପଶ୍ଚାତରେ ସେହି ଦିବ୍ୟାନୁଭୂତି; ସେହି ଭଗବତ୍‌ପ୍ରୀତି ଏବଂ ବିଶ୍ୱୈକପ୍ରାଣତା, ସେହି ଭେଦବୁଦ୍ଧି ରାହିତ୍ୟ, ସେହି ସମଦର୍ଶିତା ।

'ନିତ୍ୟଧାମ ନୀଳାଚଳ'ରେ ଜଗନ୍ନାଥଙ୍କର ସାନ୍ନିଧ୍ୟ ଭିକ୍ଷାକରି ଗୋପବନ୍ଧୁ ନିଜକୁ ପଚାରିଛନ୍ତି 'ନୀଳାଚଳତଳେ କେ କରିବ ବାସ ?' ଏ ପ୍ରଶ୍ନର ଉତ୍ତର ଦେବାକୁ

ସେଠାରେ କିଏ ଅଛୁ ? ଏ କେବଳ ମନ ଓ ହୃଦୟର ସହିତ ଆତ୍ମାର ଚିନ୍ତାଳାପ ? ହୃଦୟ ପଗ୍ଚରୁଛି, ଆତ୍ମା ତା'ର ଉତ୍ତର ଦେଉଛି ।

"ସେହି, ନାହିଁ ଯାର ନିଜ ପରକାଳ,
ଯାଏ ନାଚ ଯାର ସ୍ନେହ ସନମାନ,
ବିଶୃଙ୍ଖଳେ ଯାର
ଆହାର ବିହାର,
କରେ ବିଶୃଙ୍ଖଳେ ଯେ ଜୀବନ ଦାନ ।"
ସେତିକ ଯଥେଷ୍ଟ ନୁହେଁ—
ଭିତର ବାହାର
ଯାର ସତ୍ୟ ସାର
ସୁଖେ ଦୁଃଖେ ସଦା ସତ୍ୟ ଯା ଶରଣ ।"

ଏହିପରି ବିଶୃଙ୍ଖଳାକାଙ୍କ୍ଷୀ ଏବଂ ସତ୍ୟାଶ୍ରୟୀ ଲୋକ କେବଳ ନିତ୍ୟଧାମ ନୀଳାଚଳରେ ବାସ କରିବାକୁ ଯୋଗ୍ୟ, ଆଉ କେହି ନୁହଁ । କାରାଗାରର ଅନ୍ଧକାରମୟ ନିର୍ଜନ ପ୍ରକୋଷ୍ଠରେ ଗୋପବନ୍ଧୁଙ୍କ ମନ ଯେତେବେଳେ ବିଷାଦଭାରରେ ଆକ୍ରାନ୍ତ ହୋଇଉଠେ, ସେତେବେଳେ ତାଙ୍କର ଏକମାତ୍ର ସାହା ଭରସା ସେହି ଜଗତର ନାଥ, ତାଙ୍କର କୃପାକଣିକା ନିମନ୍ତେ ପ୍ରାଣ ଅସ୍ଥିର । ତାଙ୍କର ପାଇଁ ନିତ୍ୟ ଜାଗରଣ, ତଥାପି ସେ ଦୁରଧିଗମ୍ୟ—ଅଲଭ୍ୟ । ନିମିଷକ ପାଇଁ ଦେଖାଦେଇ ସେ ଚାଲିଯାନ୍ତି । ମନୁଷ୍ୟର ଅନ୍ତରକୁ ସେ ବାରମ୍ବାର ପରୀକ୍ଷା କରନ୍ତି । ପାଖକୁ ଆସନ୍ତି; କିନ୍ତୁ ସେ ଦୁର୍ଲଭ ପରମ ପୁରୁଷଙ୍କର ସାନ୍ନିଧ୍ୟଲାଭ କରିବା କ'ଣ ଏଡ଼େ ସହଜ ? 'ଦୁର୍ଗମ ପଥ ଏ ଭଜନ, ଭୟେ ଭାଜନ୍ତି ଯୋଗିଜନ' । ଗୋପବନ୍ଧୁ ସେହି 'ଅନ୍ଧକୂପ' କକ୍ଷ ମଧ୍ୟରେ ତାଙ୍କର ସ୍ପର୍ଶ-ମାଧୁରୀ ଲାଭକରି ଜୀବନକୁ କୃତାର୍ଥ କରିବାକୁ ଏତେ ଉନ୍ମୁଖ, ଏତେ ଉତ୍କଣ୍ଠିତ; କିନ୍ତୁ କାହିଁକି ସେ ଧରା ଦେଇ ଦଉନ୍ତି ନାହିଁ ? ଗୋପବନ୍ଧୁ ରହସ୍ୟବାଦୀ କବିଙ୍କ ପରି କି ବେଦନା-ବିକ୍ଷୋଭିତ ପ୍ରାଣରେ 'ଆହା ଚାଲିଗଲେ' କବିତାରେ ଲେଖି ଅଛନ୍ତି—

"ଡାକିଲି କେତେ ଥର
ହେବାକୁ ହଜାଗର,
ପଦେ ହେଲେ ଉତ୍ତର ନ ଆସିଲି ।
ମୋ କକ୍ଷ ଅନ୍ଧକୂପ
ସେ ପ୍ରଭାମୟ ରୂପ
ଆଲୋକ କାହିଁ ଛଣେ ଲଭିଗଲି ।"

ଭଗବାନଙ୍କର ଏ ଆଲୋକ ଅନ୍ଧକାରର ଲୁଚକାଳିଆ ଲୀଳାରେ ଗୋପବନ୍ଧୁଙ୍କର ଭକ୍ତି ସର୍ବଦା ଅଚଳ, ଅଟଳ ଓ ଅକମ୍ପିତ । ଅନ୍ଧାର ଆସିଛି, ଆଲୋକକୁ ଉଦ୍ଭାସିତ ଓ ଉଜ୍ଜ୍ୱଳ କରିବାକୁ । ଦୁଃଖ ଆସିଛି, କେବଳ ସ୍ୱର୍ଗୀୟ ସୁଖର ସୁଷମା ସମ୍ପାଦନ ପାଇଁ । ଅଶ୍ରୁ ପ୍ରବାହିତ ହୋଇଛି ତାଙ୍କ ପାଦ-ପଦ୍ମ ସହିତ ଅଧିକ ନିବିଡ଼ଭାବରେ ସଂଲଗ୍ନ ହୋଇ ନିଜର ଅହମିକା ଓ ଔଦ୍ଧତ୍ୟକୁ ତାଙ୍କର ଚରଣ-ତଳେ ଲୀନ କରିଦେଇ ସେହି ପ୍ରେମମୟଙ୍କର ପବିତ୍ର କର୍ମ ସାଧନ କରିବା ନିମନ୍ତେ ନିଜକୁ ସଞ୍ଜୀବନୀ ମନ୍ତ୍ରରେ ଦୀକ୍ଷିତ କରିବାକୁ; ତେଣୁ କି କରୁଣ କଣ୍ଠରେ କବି ଗାଇଅଛନ୍ତି—

"ଚଲାଅ ମୋ ଅଙ୍ଗେ ଅମୀୟ ଅଙ୍ଗୁଳି
ଦିଅ ଶିରେ ମୋର ପୁଣ୍ୟ ପଦଧୂଳି ।
ବଜାଅ ସେ ବୀଣା ମୃତ୍ୟୁଭୟ-ଜିଣା
ଉଠୁ ପ୍ରାଣ ମୋ ଉଛୁଳି ।"

ଏବଂ

"ଉଠୁ ପଛେ ତାନେ ଦୁଃଖମୟ ଗୀତ
ଦୁଃଖଗଢ଼ା ପ୍ରାଣ ଆଉ ଦୁଃଖେ ପ୍ରୀତ
ଦୁଃଖେ ସୁଖେ ମୋର ସମାନ ଆଦର
ବାଅ, ବେଳଯାଏ ବହି ।"

'ଦୁଃଖେ ସୁଖେ ସମଂ କୃତ୍ୱା ଲାଭାଲାଭୌ ଜୟାଜୟୌ'—ଏ ତ ଭଗବଦ୍-ଗୀତାର ସ୍ଥିତପ୍ରଜ୍ଞ ବ୍ୟକ୍ତିର ଲକ୍ଷଣ । ଦୁଃଖର କଷାଘାତ ତା'ର ପ୍ରାଣରେ ଯେତିକି ନିର୍ମମଭାବରେ ବାଜେ, ପରମାନନ୍ଦମୟ ଆତ୍ମାର ଚରମ ପରିତୃପ୍ତିର ରସ ସେ ସେତିକି ଆସ୍ୱାଦନ କରେ । ଦୁଃଖ ନ ପାଇଲେ ସୁଖ ଆସିବ କାହିଁ ? ବିଚ୍ଛେଦ ନ ଥିଲେ ପ୍ରେମର ମହତ୍ତ୍ୱ ଓ ମାଧୁର୍ଯ୍ୟ କାହିଁ ? ସେଥିପାଇଁ ଗୋପବନ୍ଧୁ ଲେଖିଛନ୍ତି—

"ବିଚ୍ଛେଦେ ବିକାଶେ ପ୍ରେମ ଅତି ମଧୁମୟ
ଶୀତ ଅନ୍ତେ ଶୋଭେ ଯିନା ନବ କିଶଳୟ ।"

କବି ଶେଲି ମଧ୍ୟ ଯଥାର୍ଥ କହିଅଛନ୍ତି—

'Most wretched men are cradled into
poetry by wrong,
They learn in suffering what they
teach in song.'

ଯାହାର ବକ୍ଷରେ ଅପାର ବେଦନାର ଭାର, ସେହି କେବଳ ଏହି ଧୂଳି-ଧୂସରିତ ଧରଣୀରେ ଅଲୌକିକ କାବ୍ୟାନନ୍ଦର ରସ ପରିବେଷଣ କରି ଆମ୍ଭମାନଙ୍କର ନୟନର ଜଳକୁ ଆଉରି ସୁନ୍ଦର ଓ ଆଉରି ଉଜ୍ଜ୍ୱଳ କରିପାରେ ।

## ପ୍ରେମର ସ୍ୱରୂପ

ଗୋପବନ୍ଧୁ ଥିଲେ ଜଣେ ଆଦର୍ଶ ପ୍ରେମିକ । ଏ ପ୍ରେମ କାମନାକଳୁଷିତ, ଦେହଜ ପ୍ରେମ ନୁହେ—ଏ ପ୍ରେମ ଅନନ୍ତମୁଖୀ—ଏ ପ୍ରେମରେ ସେ କେବଳ ଭଗବାନଙ୍କୁ ନୁହେ, ଚେତନ ଓ ଅଚେତନ ସମସ୍ତଙ୍କୁ ଆପଣାର କରିପାରିଥିଲେ । ତାଙ୍କ ପ୍ରେମରେ ସାନ ବଡ଼ ଉଚ୍ଚନୀଚ ଓ ଭେଦାଭେଦ ନ ଥିଲା । ଅବନ୍ଧୁ ଜୀବନ ତାଙ୍କପ୍ରତି ଥିଲା ଏକ ଅସହ୍ୟ ବେଦନା । ତାଙ୍କର ମାନବ ପ୍ରେମ ଭଗବତ୍ ପ୍ରେମର ରୂପାନ୍ତର ମାତ୍ର, ଏବଂ ଭଗବତ୍‌ପ୍ରେମ ମାନବପ୍ରେମର ଅନ୍ୟ ଦିଗ ମାତ୍ର । ମାନବୀୟ ପ୍ରେମ କେତେବେଳେ ତାଙ୍କୁ ଭଗବତ୍‌ପ୍ରେମର ସର୍ବୋଚ୍ଚ ଶିଖରରେ ଆରୂଢ଼ କରିଅଛି, ଏବଂ କେତେବେଳେ ସକଳପ୍ରାଣୀଠାରେ ଭଗବତ୍ ଶକ୍ତିର ଅଧିଷ୍ଠାନ, ଏହି ବିଶ୍ୱାସ ତାଙ୍କୁ ଉଚ୍ଚକୋଟିର ମାନବପ୍ରେମୀ କରିଅଛି । ପ୍ରେମରେ ଆବିଲତା ଓ ଅଶୁଚି ଦେଖିଲେ ତାଙ୍କର ପ୍ରାଣ ହାହାକାର କରିଛି । ଆତ୍ମୀୟ ବନ୍ଧୁ ସ୍ୱଜନମାନଙ୍କ ବିରହ କାତରତାରେ ତାଙ୍କର ହୃଦୟକୁ ଏପରି ବିମଥିତ କରିଛି ଯେ ସେହି ପ୍ରେମାଶ୍ରୁରେ ରଚିତ କେତୋଟି କବିତା ଯେ କୌଣସି ପ୍ରେମିକ ଲୋକର ଏବେ ସୁଦ୍ଧା ପରମ ସମ୍ପଦ ହୋଇ ରହିଛି । ତାଙ୍କର ଭଗବତ୍‌ପ୍ରେମ ସମୟେ ସମୟେ ମାନବ-ପ୍ରେମକୁ ଅତିକ୍ରମ କରିଛି, କିନ୍ତୁ ମନୁଷ୍ୟକୁ ଅସ୍ୱୀକାର କରିନାହିଁ । ତାଙ୍କର ପ୍ରେମ ମୃତ୍ୟୁଞ୍ଜୟ, ତଥାପି ମାନବ-ପ୍ରେମର ମାଧୁର୍ଯ୍ୟ ଓ ମହତ୍ତ୍ୱକୁ ସେ କେଉଁଠାରେ ଉପେକ୍ଷା କରିନାହାନ୍ତି । ଜୀବନ ମଧ୍ୟରେ ସେ ଅନନ୍ତକୁ ଅନୁଭବ କରିଛନ୍ତି । ବିଶ୍ୱ-କବି ରବୀନ୍ଦ୍ରନାଥଙ୍କ ପ୍ରେମ ସାଧନା ପରି ଏହା ନିଜର ଅନ୍ତରକୁ ଆଲୋକିତ କରି ଅନ୍ୟର ଅନ୍ତରକୁ ବିଭାସିତ କରିଛି । ଦେଶ ଓ କାଳର ସୀମାକୁ ଅତିକ୍ରମ କରି ଏହା ବିଶ୍ୱପ୍ରୀତି ମଧ୍ୟରେ ପରିବ୍ୟାପ୍ତ ହୋଇଅଛି ।

ଜୀବନରେ ସାଂସାରିକ ପ୍ରେମର ମାଧୁର୍ଯ୍ୟ ସେ ଉପଭୋଗ କରିପାରି ନ ଥିଲେ । ଜନ୍ମର ଅଳ୍ପଦିନ ପରେ ତାଙ୍କର ମାତୃବିୟୋଗ ଘଟିଥିଲା । କଲେଜକୁ ଆସିବା ପୂର୍ବରୁ ପିତୃବିୟୋଗ ଘଟିଲା । ଚତୁର୍ଥବର୍ଷୀୟ ଶ୍ରେଣୀରେ ପଢ଼ୁଥିବା ସମୟରେ ତାଙ୍କର ପୁଅର ମୃତ୍ୟୁ । ୧୯୦୬ ମସିହାରେ ନୀଳଗିରି ଉଚ୍ଚଇଂରେଜୀ ବିଦ୍ୟାଳୟ ପ୍ରଧାନ ଶିକ୍ଷକ ଥିଲାବେଳେ ତାଙ୍କ ପତ୍ନୀଙ୍କର ପରଲୋକ ହୁଏ । ଏହିପରି ଦାରୁଣ ଶୋକାଘାତରେ ତାଙ୍କ ହୃଦୟର ସୁକୁମାର ଓ ସ୍ନେହମୟ ତନ୍ତୁ ଛିନ୍ନ ବିଚ୍ଛିନ୍ନ

ହୋଇ ପଡ଼ିଥିଲ । କର୍ମମୟ ଜୀବନରେ ମଧ୍ୟ ସେ ବନ୍ଧୁବାନ୍ଧବ ଓ ଦେଶବାସୀଙ୍କଠାରୁ କମ୍ ଆଘାତ ପାଇନାହାନ୍ତି । ଯେଉଁ ଜଣେ, ଦୁଇଜଣ ବନ୍ଧୁଙ୍କଠାରେ ତାଙ୍କର ପୂର୍ଣ୍ଣ ସ୍ନେହ, ମମତା ଓ ବିଶ୍ୱାସ ଥିଲ; ହୃଦୟଦେଇ ସେ ଯେଉଁମାନଙ୍କୁ ଗମ୍ଭୀର-ଭାବରେ ସ୍ନେହ କରୁଥିଲେ, ସେମାନେ ମଧ୍ୟ ଈର୍ଷାନଳରେ ପ୍ରଜ୍ୱଳିତ ହୋଇ ତାଙ୍କ ପ୍ରତି ବିଶ୍ୱାସଘାତକତା କଲେ । ଦୁଃଖ ଓ ନୈରାଶ୍ୟରେ ତାଙ୍କର ପ୍ରେମମୟ ହୃଦୟ ଭାଜିପଡ଼ିଥିଲ । ଦେଶର ବହୁମୁଖୀ କର୍ମରେ ସେ ନିଜକୁ ନିୟୋଜିତକରି ଏସବୁ ଦୁଃଖ ପ୍ରାୟ ଭୁଲିଯାଇଥିଲେ; କିନ୍ତୁ କାରାଗାରର ନିଃସଙ୍ଗ ଜୀବନ ମଧ୍ୟରେ ଏହି ମର୍ମଦାହୀ ସ୍ମୃତିଗୁଡ଼ିକ ପୁଣି ଉଜ୍ଜୀବିତ ହୋଇଉଠିଲ । ଦେଶବାସୀଙ୍କ ବିରହ ବ୍ୟଥାରେ ତ ପ୍ରାଣ ଅସ୍ଥିର, ସେଥିରେ ପୁଣି ବନ୍ଧୁ ବାନ୍ଧବ-ମାନଙ୍କର ଏହି ବିଶ୍ୱାସଘାତକତାର ସ୍ମୃତି ତାଙ୍କ ପ୍ରାଣକୁ ଏପରି ଆକୁଳ କରିଥିଲ ଯେ ସେ ପ୍ରେମ ସମ୍ବନ୍ଧରେ ତତ୍ତ୍ୱଦର୍ଶୀ ଦାର୍ଶନିକମାନଙ୍କପରି ବହୁ ସୂକ୍ଷ୍ମତତ୍ତ୍ୱ ତାଙ୍କର ପ୍ରେମ-କବିତାମାନଙ୍କରେ ଅତି ପ୍ରାଣସ୍ପର୍ଶୀ ଭାଷାରେ ଉପସ୍ଥାପିତ କରିଅଛନ୍ତି । ଅନୁଭୂତିର ଆବେଗ ଓ କରୁଣ ଉଚ୍ଛ୍ୱାସରେ ସେସବୁ କେବଳ ରସବନ୍ତ ନୁହେଁ, ମନୁଷ୍ୟ ଜୀବନର ଏକ ନିଗୂଢ଼ ବାସ୍ତବ ସତ୍ୟ । ହୃଦୟର ଅତଳ ପ୍ରଦେଶରୁ ଏ ସତ୍ୟର ଉଦ୍ଭବ ।

'ବ୍ୟଥିତ ପ୍ରାଣରେ ଅନ୍ତିମ ଅଶ୍ରୁ' ଏବଂ 'ପ୍ରେମର କି ଏହି ପରିଣାମ ?' ଏହି ଦୁଇଟି କବିତା ସମପର୍ଯ୍ୟାୟ ଭୁକ୍ତ । ଗୋଟିଏ ଅନ୍ୟଟିର ପରିପୂରକ । ବ୍ୟକ୍ତିଗତ ଦୁଃଖାନୁଭୂତି ଓ ନୈରାଶ୍ୟବୋଧରେ ଉଭୟ କବିତା ପ୍ରାଣବନ୍ତ । ନିଜର ଅଭିଜ୍ଞତାରୁ କବି ଏହି କବିତା ଦୁଇଟିରେ ପ୍ରେମର ନାନା ବିଭାବ ଉପରେ ଯେଉଁ ଆଲୋକପାତ କରିଅଛନ୍ତି ଏବଂ ଯେଉଁ ଦାର୍ଶନିକ ସୁଲଭ ସୂକ୍ଷ୍ମ ଆତ୍ମ-ଚିନ୍ତନ ଓ ଅନ୍ତର୍ମୁଖିତାର ପରିଚୟ ଦେଇ ଅଛନ୍ତି, ତାକୁ ଆଜିକାଲିର ଦେହସର୍ବସ୍ୱ ପ୍ରେମ-କବିତାମାନଙ୍କ ସହିତ ତୁଳନାକଲେ ଆକାଶ ପାତାଳ ପ୍ରଭେଦ ଦେଖିବାକୁ ମିଳେ ।

'ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ' ଗୋଟିଏ ଅନିନ୍ଦ୍ୟସୁନ୍ଦର ଦୀପ୍ତିମନ୍ତ ମୁକ୍ତାଫଳକି । ଏହାର ଗଠନଶିଳ୍ପ ଏବଂ ଭାବ ପ୍ରବାହ ମନୋହର ଓ ଅମୃତ-ନିସ୍ୟନ୍ଦୀ । 'ହିତଂ ମନୋହାରିଚ ଦୁର୍ଲ୍ଲଭଂ ବଚଃ'—ହିତକର ଓ ମନୋହାରୀ ବଚନ ଏକାଧାରରେ ଏକ ଦୁର୍ଲ୍ଲଭ ସାମଗ୍ରୀ—କିନ୍ତୁ ସେ ଦୁର୍ଲ୍ଲଭତା ଏହି କବିତାରେ ସୁଲଭ । ପ୍ରେମିକାର ପ୍ରତ୍ୟାଖ୍ୟାନ କିମ୍ବା ପ୍ରତିକୂଳ ଆଚରଣରେ ପ୍ରେମିକ ନୟନର ଅଶ୍ରୁ ଏ ନୁହେ । ଜଣେ ଆଜୀବନ ସହକର୍ମୀଙ୍କ ବିରୁଦ୍ଧାଚରଣ-ଜନିତ ବେଦନାରେ ଏହା କରୁଣରସାପ୍ଲୁତ । ପରପାଇଁ ଯେ ନିତି ମରୁଛି, ପରର

ଦୁଃଖକୁ ନିଜର ଦୁଃଖ ମନେକରି ଯେ ନିତି ଅଶ୍ରୁପାତ କରୁଛି, ସେ ଯଦି ତାର ସେହି ଘନିଷ୍ଠ ବନ୍ଧୁ ଓ ଆଜୀବନ ସହକର୍ମୀଙ୍କଠାରୁ ଶୁଣେ, ଏହି ଅଶ୍ରୁ ତା'ର ଛଳନାପୂର୍ଣ୍ଣ, ତେବେ ତା'ପ୍ରାଣରେ ଦାରୁଣ ଧକ୍କା ବାଜିବା ସ୍ୱାଭାବିକ । ଏ ଯେ ନିଃସ୍ୱାର୍ଥ ନିଷ୍କପଟ ଅନାବିଲ ବନ୍ଧୁତା । ଜଣେ ଯାହାକୁ ଦେଖୁଛି ଅମୃତମୟରୂପେ, ଅନ୍ୟ ଜଣକ ତାକୁ ଦେଖୁଛି ବିଷାକ୍ତ ନେତ୍ରରେ । ଜଣେ ହୃଦୟ ଅର୍ପି ଦେଇଛି, ଅନ୍ୟ ଜଣକ ଈର୍ଷାକାତରହୋଇ ତାକୁ ଗୋଡ଼ରେ ଦଳି ଦେଉଛି । ଅକୃତ୍ରିମ ପ୍ରେମ, ବନ୍ଧୁତା ଏବଂ ସହଯୋଗର ଯଦି ସଂସାରରେ ଏପରି ବିକୃତି ଓ ବିପର୍ଯ୍ୟୟ ଘଟେ, ତେବେ ପରର ଉପକାର ସାଧନ ନିମନ୍ତେ ଜୀବନ ଉତ୍ସର୍ଗ କରିଥିବା କବି ଗୋପବନ୍ଧୁ ହିଁ ଶଙ୍କାକୁଳ ଚିତ୍ତରେ ଲେଖିପାରନ୍ତି;

"ଜୀବନ କି ଖାଲି ନିରାଶର ବାଲି
ମରୁ-ମରୀଚି କି ସେନେହ ପ୍ରୀତି,
ତେବେ କି ଆଶାରେ କହ ଏ ସଂସାରେ
ପର ଲାଗି ନର ମରୁଛି ନିତି ?"

ଏହା ହିଁ ଗୋପବନ୍ଧୁଙ୍କ ପ୍ରେମତତ୍ତ୍ୱର ସ୍ୱରୂପ । ଏହି ପ୍ରେମ ହିଁ ତାଙ୍କ ଜୀବନର ସତେ ଯେପରି ଅଲଂଘନୀୟ ବୈଦିକ ମନ୍ତ୍ର, ଅବ୍ୟର୍ଥ ଦୈବବାଣୀ । ପ୍ରେମ ବିବର୍ଜିତ ହୃଦୟ ପରପାଇଁ ମରିବାକୁ ଯିବ କାହିଁକି ? ବନ୍ୟାପୀଡ଼ିତ ଅଞ୍ଚଳରେ କେଉଁଠାରେ ଦେଖି ଆସିଲେ ଜଣେ ନିରାଶ୍ରୟା ବୃଦ୍ଧା, ଭାତ ମୁଠିଏ ପାଇଁ ବିକଳହୋଇ ରାସ୍ତା କଡ଼ରେ ଗଡ଼ୁଛି, ଗୋପବନ୍ଧୁଙ୍କୁ ସେ କରୁଣ ଦୃଶ୍ୟ ଦାରୁଣ ମର୍ମାଘାତ ଦେଇଛି । ରାତିରେ ବସାକୁ ଆସି ବନ୍ଧୁଙ୍କ ପାଖେ ଶୋଇଲେ । ବନ୍ଧୁ ଗଭୀର ନିଦ୍ରାରେ ଅଭିଭୂତ । କାହାର ଜଣେ କଇଁ କଇଁ କାନ୍ଦ ଶୁଣି ବନ୍ଧୁ ଭୟରେ ଚମକି ଉଠି-ପଡ଼ିଲେ । ଭାବିଲେ ଏ ଘରେ କ'ଣ ଭୂତ ଅଛନ୍ତି ! ସକାଳେ ଉଠି ଗୋପବନ୍ଧୁଙ୍କୁ ପଚାରିଲେ, "କାଲି ରାତିରେ ଜଣେ କିଏ କଇଁ କଇଁ ହୋଇ କାନ୍ଦୁଥିବା ତୁମ୍ଭେ ଶୁଣିଛ ? ଏ ବଙ୍ଗଳାରେ ବୋଧହୁଏ ଭୂତ ଅଛନ୍ତି ।" ଗୋପବନ୍ଧୁ କହିଲେ, "ହଁ; ମୋ ପରି ଅନେକ ଭୂତ ଏ ବଙ୍ଗଳାରେ କାହିଁକି, ଏ ଦେଶରେ ଅଛନ୍ତି । ଆଚ୍ଛା କହିଲେ, ସେ ବୁଢ଼ିଟି ଯଦି ତୁମର ମା' ହୋଇଥାନ୍ତା, ତୁମର ମାଉସୀ ହୋଇଥାନ୍ତା, ତେବେ ତୁମେ କ'ଣ କରିଥାନ୍ତ ?" ଏହା କହୁ କହୁ ଗୋପବନ୍ଧୁ ଭୋ, ଭୋ ହୋଇ କାନ୍ଦି ପକାଇଲେ । ଏହି ଦରିଦ୍ରବନ୍ଧୁ ଓ ମହାମନା ପୁରୁଷଙ୍କ ଲେଖନୀରୁ ହିଁ ଏହା ସମ୍ଭବ !

"ପ୍ରେମ ପଥ ସଦେ ସନ୍ଧ ସୁଖ ଯାଏ,
ପ୍ରେମ ନ ଜାଣଇ କେବେ ଶୋଚନା,
ପ୍ରିୟଜନେ ନୁହେ ପ୍ରେମିକ ବିମୁଖ
ହେଲେ ହେଉ ଯେତେ ଗୁରୁ ଗଞ୍ଜନା ।"

ପ୍ରେମ ଏକ ଦୁଃସାଧ ବ୍ରତ । ଏଥିରେ ଅଘାତ ଆସିଲେ, ତାକୁ ଆନନ୍ଦରେ ବରଣ କରିନେବାକୁ ହେବ । ଏଥିରେ ବିଚ୍ଛେଦର ବ୍ୟବଧାନ ନାହିଁ, ଏହା ନିରନ୍ତ୍ର, ଅଚ୍ଛେଦ୍ୟ, ଏହା ସ୍ୱର୍ଗୀୟ ସୁଷମାରେ ମଣ୍ଡିତ । ଆତ୍ମାପରି ଏହା ଅବ୍ୟୟ, ଅକ୍ଷୟ ଓ ଅବିନଶ୍ୱର । ଏପରି ଦୃଷ୍ଟିରେ ଯେ ପ୍ରେମର ସାଧନା କରେନାହିଁ, ସେ ପ୍ରେମର ଗୌରବ ବୁଝିନାହିଁ । ଗୋପବନ୍ଧୁ ପ୍ରେମକୁ ଯେହ୍ଧ ବ୍ୟାପକ ଦୃଷ୍ଟିରୁ ଦେଖିଥିଲେ ବୋଲି ତାଙ୍କର ମାନବ-ପ୍ରେମ, ବିଶ୍ୱପ୍ରୀତି ଓ ଭଗବତ୍ ପ୍ରେମ ମଧ୍ୟରେ କୌଣସି ପ୍ରଭେଦ ନ ଥିଲା । ପ୍ରେମର ଏ ବିରାଟ ବିସ୍ତାରରେ ତାଙ୍କର ହୃଦୟ ମହୀୟାନ୍ ଥିବାରୁ ସେ ପ୍ରେମରେ ଭୂମାନନ୍ଦ ଉପଲବ୍ଧି କରୁଥିଲେ, ପ୍ରେମ ଯେଉଁଠାରେ ସଙ୍କୁଚିତ, ସ୍ୱାର୍ଥସର୍ବସ୍ୱ ଓ କୁଟିକାପଟ୍ୟପୂର୍ଣ୍ଣ, ସେପରି ପ୍ରେମ ତାଙ୍କ ଦ୍ୱାରା ଧିକୃତ । ମୃତ୍ୟୁରେ ଏ ପ୍ରେମର ପର୍ଯ୍ୟବସାନ ନାହିଁ । ଏହା ମୃତ୍ୟୁକୁ ଅତିକ୍ରମ କରି ପରଲୋକରେ ମଧ୍ୟ ଅଧିଷ୍ଠିତ । ଏହି ପ୍ରେମ ଆଗରେ ସୁନ୍ଦର, କୁତ୍ସିତ, ଉଚ୍ଚ ନୀଚ, ସାନ ବଡ଼ର ଭେଦ ନାହିଁ । ଗୋପବନ୍ଧୁଙ୍କର ଏ କେବଳ କବିଜନସୁଲଭ କଳ୍ପନା ନୁହେ । ଏହା ତାଙ୍କ ପକ୍ଷରେ ଏକ ବିରାଟ ବାସ୍ତବତା । ଏହି ପ୍ରେମର ପ୍ରେରଣାରେ ହିଁ ତାଙ୍କ ଜୀବନର କୃତିତ୍ୱ । ତେଣୁ ସେ ଏହି ବିଶ୍ୱାସଘାତକ ବନ୍ଧୁଙ୍କର ପ୍ରତିକୂଳତା ଓ ଅପପ୍ରଚାରରେ ମୁହ୍ୟମାନ ନୁହନ୍ତି । ଏଥିପାଇଁ ସେ ତାଙ୍କୁ ବରଂ ଆହୁରି ଆପଣାର କରିବାକୁ ଚେଷ୍ଟା କରିଅଛନ୍ତି । ବନ୍ଧୁଙ୍କର ନିର୍ମମତା ପ୍ରତି ତାଙ୍କର ଶୋଚନା ନାହିଁ । ଏ ବନ୍ଧୁଙ୍କ ପ୍ରେମ ଯେ ସେହି ଅନନ୍ତ ପ୍ରେମ-ସିନ୍ଧୁର ଗୋଟିଏ ବିନ୍ଦୁମାତ୍ର । ସୁନ୍ଦର ଓ କୁତ୍ସିତ, ସ୍ନେହ ଓ ତାପ ଏ ସକଳ ସେହି ବିଶ୍ୱବିଧାତାଙ୍କର ଦାନ । ତେଣୁ ଦୁଃଖ କରିବାର ପ୍ରୟୋଜନ ନାହିଁ । ଯେ ଅମୃତ ଆସ୍ୱାଦନ କରିଛି ସେ କାହିଁକି ଶୀତଳ ବାରିଧାରାକୁ ଭ୍ରୂକ୍ଷେପ କରିବ ? ଯାହାର ହୃଦୟ-ଦ୍ୱାର ଅନନ୍ତ ପ୍ରେମପାଇଁ ସଦା ଅବାରିତ ଓ ଉନ୍ମୁକ୍ତ, ସେହି କେବଳ ଆନନ୍ଦଗଦ୍‌ଗଦ ହୋଇ କହିପାରେ—

"ତାଙ୍କ ପ୍ରେମ-ରାଜ୍ୟେ ନାହିଁ ଅସୁନ୍ଦର
ଅସତ୍ୟ ଅନ୍ୟାୟ ଅଶୁଭ ବନ୍ଧୁ
କି ମୋର ଭାବନା ମୋ ପ୍ରାଣ-ପ୍ରବାହ
ଭେଟିଅଛି ଆଜି ସେ ପ୍ରେମ-ସିନ୍ଧୁ ।"

ଯେ ମାନବ-ଚେତନାର ସର୍ବୋଚ୍ଚ ଶିଖରରେ ଆରୂଢ଼, ବିଶ୍ୱଭୁବନରେ ଯେ ସମସ୍ତ ଚରାଚର ଜଗତକୁ ଦେଖେ, ବିଶ୍ୱପ୍ରୀତି ଯାହାର ପ୍ରତ୍ୟକ୍ଷ ଅନୁଭୂତ, ଯେ ସେହି ବିଶ୍ୱଭୁବନମଧ୍ୟସ୍ଥ ବ୍ରହ୍ମାଣ୍ଡନାଥଙ୍କଠାରେ ନିଜର ପ୍ରାଣକୁ ପୂର୍ଣ୍ଣ କରି ରଖେ, ତା'ର ମାନ ଅପମାନ କ'ଣ, ସୁଖ ଦୁଃଖ କ'ଣ, ଏ ସବୁ ତା ପ୍ରତି ସମାନ ।

ହୃଦୟର ଅନାବିଲ ଓ ସ୍ୱାର୍ଥବିରହିତ ପ୍ରେମରେ ବ୍ୟାଘାତ ବା ବିଚ୍ଛେଦ ଘଟିଲେ, ପ୍ରାଣରେ କି ଗଭୀର ବେଦନାର ଉଦ୍ରେକ ହୁଏ, ସେହି ବିଚ୍ଛେଦ ଓ ବ୍ୟବଧାନର ଚିତ୍ର ନାନା ଉପମା ଓ ରୂପକଳ୍ପଦ୍ୱାରା କବି 'ପ୍ରେମର କି ଏହି ପରିଣାମ ?' କବିତାରେ ଅଙ୍କନ କରି ଅଛନ୍ତି । କବିଙ୍କର ଏ ଦୁଃଖାନୁଭୂତି ନିଜପାଇଁ କେବଳ ନୁହେଁ, ତା'ଠାରୁ ଅଧିକ, ପ୍ରେମର ଆବିଲତା ଓ ପଙ୍କିଳତା ପାଇଁ, ଏବଂ ପ୍ରେମର ପ୍ରଗାଢ଼ତା ଓ ଐକାନ୍ତିକତାର ଅଭାବରେ । ତେଣୁ ସେ ଦୁଃଖରେ ଗାଇଅଛନ୍ତି—

"ଉପୁଜିଲା ଅଲକ୍ଷିତେ କାହିଁ ଅମ୍ଳବହ୍ନି
ସ୍ୱାର୍ଥତାପେ ଛୁଣ୍ଡାଇଲା ପ୍ରୀତି-ପୟସିନ୍ଧୁ,
ସହିତ ଶ୍ୟାମଳ ସ୍ନିଗ୍ଧ ଶୈଳଗର୍ଭେ ଲୀନ
ଥିଲା ଶିଳାଭେଦକ୍ଷମ ସୂକ୍ଷ୍ମ ବଜ୍ର ସୂଚୀ
ଅକସ୍ମାତେ ବିଦାରିଲା ଶଇଳ ଶିଖର
ଏକ ଶୃଙ୍ଗ ଦ୍ୱିଧା ଏବେ ଯୋଜନ ଅନ୍ତର ।"

ଯେଉଁ ପ୍ରେମ ନଭଶ୍ଚୁମ୍ବୀ ପର୍ବତର ଶୃଙ୍ଗପରି ଏତେ ଗମ୍ଭୀର, ମହୀୟାନ ଓ ଉନ୍ନତଶିର ଥିଲା, ତାହା କ୍ଷୁଦ୍ର ସ୍ୱାର୍ଥରେ ବିନଷ୍ଟ ହେବାର ଦେଖି କବି ମର୍ମାହତ ହୋଇ-ଅଛନ୍ତି । ଯେଉଁ 'ପ୍ରେମ' 'ନରପିଣ୍ଡରେ ଏକ ଅମର ସଞ୍ଚାର', କ୍ଷଣଭଙ୍ଗୁର 'ପାର୍ଥିବ ଜଗତରେ ଯେଉଁ ପ୍ରେମ ସ୍ୱର୍ଗ'ର 'ସୁଧାଧାରା ପରି', ଯାହା କେବଳ କବିର କଳ୍ପନା ନୁହେଁ, ଯାହା ମନୁଷ୍ୟ ଜୀବନର ପରମ ସମ୍ପଦ, ଯାହା ଏ ସୃଷ୍ଟିକୁ ସୁନ୍ଦର ଓ ସହିତ-କରି ରଖିଛି, ସେ ପ୍ରେମ ନୀଚ ସ୍ୱାର୍ଥର ଛଳନାରେ କାଳିମାଲିପ୍ତ ହେବାର ଦେଖି କବି ପ୍ରୌଢ଼ ଓ ପ୍ରବୀଣର କୁଟ ସାଂସାରିକ ବୁଦ୍ଧି ଓ କୌଶଳକୁ ଧିକ୍‌କାର କରି ଅଛନ୍ତି । ପ୍ରୌଢ଼ର ଔଦ୍ଧତ୍ୟ ଓ ଅହଙ୍କାର ମନୁଷ୍ୟ ହୃଦୟର ସ୍ନେହ ସରଳତାକୁ କିପରି ନଷ୍ଟ କରିପକାଏ ତା'ର ଅଭିବ୍ୟକ୍ତି ଆଉରି ମର୍ମସ୍ପର୍ଶୀ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣ—

"ଶୈଶବ ଉଦ୍ଦେଶ୍ୟହୀନ ସ୍ୱଚ୍ଛନ୍ଦ ସରଳ
ତରୁଣ ଉନ୍ମୁକ୍ତ ରମ୍ୟ କୋମଳ ତରଳ ।
ପ୍ରେମ-ପୁଲକିତ ନବ ମଧୁର ଯୌବନ
ସରିଥାନ୍ତା ଏଥି ହେଲେ ମାନବ-ଜୀବନ ।"

ପ୍ରେମର ଆବିଳତା ପ୍ରାଣକୁ ସ୍ପର୍ଶ କଲାପରେ ଆଉ ମନୁଷ୍ୟର ଜୀବନଧାରଣ ରହି କି ଲାଭ ? ତଥାପି ପ୍ରେମର ପୁଣ୍ୟ ମାଧୁରିମାରେ କବିଙ୍କର ବିଶ୍ୱାସ ଅଛି । ଆକୁଳ ପ୍ରାଣ ସେଥିପାଇଁ ଗୁହିଁରହିଛି । ଆତ୍ମ-ଜିଜ୍ଞାସାରେ ଅଗ୍ନିର ତରହି ସନ୍ତାପିତ ହୃଦୟରୁ ବାରମ୍ବାର ଏହି ପ୍ରଶ୍ନ ଉଚ୍ଚାରିତ ହୋଇଛି—ବିଚ୍ଛେଦର ଏ ଅତଳ ସାଗର ଆଉ କ'ଣ ଶୁଷ୍କ ହେବନାହିଁ ? ଯୁଗଳଯୋଜନା ଆଉ କ'ଣ ଏ ଜୀବନରେ ଘଟିବ-ନାହିଁ ? ପୂର୍ବ ଅନୁରାଗ ଆଉ କ'ଣ ଫୁଟିବନାହିଁ ? ପବିତ୍ର ପ୍ରେମର ଯଜ୍ଞାହୁତ ପୀନକଣ୍ଟକୀ ନମନ୍ତେ, କବି-ପ୍ରାଣର ଏ ବାଷ୍ପରୁଦ୍ଧ ବେଦନା ଆଉ କେଉଁ ପ୍ରେମିକ-କବି ଏପରି ବ୍ୟାକୁଳତାରେ ପ୍ରକାଶ କରିଛନ୍ତି ? ସର୍ବଶେଷରେ ଯେଉଁ ପ୍ରେମ-ମନ୍ତ୍ରରେ ତାଙ୍କର ଆତ୍ମା ଅଭିଷିକ୍ତ, ଯେଉଁ ପ୍ରେମ ହିଁ ତାଙ୍କର ଜୀବନ-ଦର୍ଶନର ମୂଳାଧାର, ସେହି ପ୍ରେମର ପୁନରାଗମନରେ ଆଶା ଓ ବିଶ୍ୱାସ ରଖି ସେ କହିଅଛନ୍ତି—

''ଏକକୁ ଅନାଇ ଆନ ନେତ୍ରୁ ଅଶ୍ରୁଧାର,
ବହିବ ନାହିଁ କି ଭେଦ ହୃଦୟ-ଦୁଆର ?
ତୁ ଗୁଣ୍ଡିଲେ ମୁଁ ତ ତତେ ନ ଚୁଞ୍ଜିବି କ୍ଷଣେ
କହିବ କି ଏକ ଆନେ ଇଙ୍ଗିତ ଈକ୍ଷଣେ ।
× × ×
ବିଗ୍ରସିବ ପ୍ରେମ ତେବେ ଅଭିନବ ରାଗେ
ଯୁଗଳ କମଳ କଳି ଫୁଟିବ ସରାଗେ ।''

ଏ ଯୁଗଳ କମଳକଳିର ପ୍ରସ୍ଫୁଟନର ଅନବଦ୍ୟ ରୂପାୟନ ଦେଖିବାକୁ ମିଳେ 'ବିଶ୍ୱର ମିଳନ ଚିତ୍ର' କବିତାରେ । କିନ୍ତୁ ସମାଲୋଚକମାନେ ଏଠାରେ ଦୋଷ ଦର୍ଶାଇ ପ୍ରଶ୍ନ ଉତ୍ଥାପନ କରିପାରନ୍ତି—ଏଇ ଗୋଟିଏ ଭାବାନୁଭୂତିର ଏତେ 'ପୌନଃପୁନିକତା'ର ଆବଶ୍ୟକ କ'ଣ ? ଏହା କବିମାନସର ଦୈନ୍ୟର ପରିଚାୟକ । କାବ୍ୟକବିତାରେ ନବ ନବ ଭାବ-ବିଳାସ ଏବଂ ରସ-ସମ୍ପଦର ବୈଚିତ୍ର୍ୟ ନ ଥିଲେ ପାଠକର ଅନ୍ତର ମୋହିତହେବ କିପରି ? ନବ ନବ ଉନ୍ମେଷଶାଳିନୀ ପ୍ରତିଭାର ପ୍ରକାଶ ନ ଦେଖିଲେ ସେ ନୀରସ ହୋଇଉଠିବ । ଭାବ ଏକ; କିନ୍ତୁ ସେ ଭାବ ଯଦି ମନୁଷ୍ୟ ଜୀବନର ସାର୍ଥକତା କିମ୍ବା ମହତ୍ତ୍ୱ ସମ୍ପାଦନର ଏକମାତ୍ର ବୀଜମନ୍ତ୍ର ବୋଲି କବିଙ୍କର ଦୃଢ଼ ପ୍ରତିଷ୍ଠିତ ଧାରଣା ହୋଇଥାଏ ଏବଂ ସେହି ଏକ ଅନୁଭୂତ ଯଦି ବିଭିନ୍ନ ରୂପରେ ପ୍ରକାଶ ପାଏ, ତେବେ ସେ ପାଠକ-ପ୍ରାଣରେ ଆଣେ ନବଭାବର ଉନ୍ମାଦନା—ନବ ରସର ସଞ୍ଚାର । 'ବିଶ୍ୱର ମିଳନ ଚିତ୍ର' କବିତାର ବୈଶିଷ୍ଟ୍ୟ, ଏହାର ଉପମା-ପ୍ରବାହ ଏବଂ ପ୍ରକୃତି-ରାଜ୍ୟରେ

କବିଙ୍କର ହୃଦୟ ପ୍ରସାରର ଚିହ୍ନ । ଅନ୍ୟ କବିତା ଦୁଇଟିରେ ବିଚ୍ଛେଦ ଏବଂ ପ୍ରେମର ଫଳ୍ଗୁଲତା କବିଙ୍କର ଉପଜୀବ୍ୟ ବିଷୟ । ଏଠାରେ କବିଙ୍କର ମିଳନ-ପିପାସା ହିଁ କବିତାର ପ୍ରାଣ-ପିଣ୍ଡ । ବିଚ୍ଛେଦ ଯାହାର ପ୍ରାଣକୁ ଆଘାତ ଦିଏ, ସେହି କେବଳ ମିଳନର ମହତ୍ତ୍ୱ ବୁଝେ । ଯେଉଁ ଗୋପବନ୍ଧୁଙ୍କ କର୍ମମୟ ଜୀବନର ଆଦର୍ଶ ହେଲା, 'ପ୍ରେମଭାବେ ଯା'ର ଅନ୍ତର ପୂରିତ, ସର୍ବ-ପ୍ରାଣୀ ହୃଦ ତା ହୃଦେ ଅଙ୍କିତ', ସେ କେବଳ ବିଚ୍ଛେଦ ବ୍ୟଥାରେ ଅହରହ ଅଶ୍ରୁମୋଚନ କରିବାକୁ ଜନ୍ମ ହୋଇ ନ ଥିଲେ । ଅନ୍ୟ ସହିତ ଆତ୍ମିକ ମିଳନରେ ସେ ଜୀବନର ସାର୍ଥକତା । ସେ ଜୀବନ କଦାପି ଏକକ ବନ୍ଧୁ ନିଃସଙ୍ଗ ହୋଇ ରହି ନ ପାରେ । କାରାଗାରର ନିର୍ଜନ ପ୍ରକୋଷ୍ଠର ନିଃସଙ୍ଗ ନିଃସହାୟ ଜୀବନ ତାଙ୍କର ଏହି ମିଳନ-ପିପାସାକୁ ଅଧିକ ତୀବ୍ରଭାବରେ ଉଦ୍ଦୀପ୍ତ କରିଦେଇଛି । ତେଣୁ ହୃଦୟର ମର୍ମ-ଗ୍ରନ୍ଥିକୁ ବିଦୀର୍ଣ୍ଣ କରି 'ଅନ୍ତର-ବିଦାରଣ' ବାଣୀର ନିଃସାର ହୋଇଛି—

> "ଶୂନ୍ୟ ସଂସାର ମୋର ଶୂନ୍ୟ ସଦନ
> ଚୁମ୍ବନ ଆଲିଙ୍ଗନ ମତେ ସ୍ୱପନ,
> କିଏ ବା ଦେବ ନେବ ପ୍ରେମ-ପୀୟୂଷ
> ନୀରବ ହାହାକାରେ ଯିବ ଆୟୁଷ ?",

ଏ କ'ଣ କେବଳ ନାଷ୍ଟ ଦେହର ଆଲିଙ୍ଗନ ଓ ଚୁମ୍ବନ-ପ୍ରୟାସୀ କବିର ଦେହଜ କାମନାବିଳାସ ? ଆଲିଙ୍ଗନ ଓ ଚୁମ୍ବନ ସକାଶେ କବିପ୍ରାଣ ପିପାସିତ ହୋଇଥିଲେହେଁ ଏ ସମ୍ଭୋଗର ଲାଳସା ଏହା ମଧ୍ୟରେ ନାହିଁ । ଏହାର ଅତିକ୍ରମଣ ଓ ଊର୍ଦ୍ଧ୍ୱାୟନରେ କବି-ହୃଦୟର ତୃପ୍ତି ଓ ପ୍ରାପ୍ତି । ଯେଉଁ ଆଲିଙ୍ଗନ ଓ ଚୁମ୍ବନ, ଅର୍ଥାତ୍ ପ୍ରେମ, ପ୍ରୀତି, ବନ୍ଧୁତା ଓ ମୈତ୍ରୀ ବୃହତ୍ତର ମାନବ-ସମାଜରେ ନିଜକୁ ବ୍ୟାପ୍ତ ଓ ପ୍ରସାରିତ କରିବାର 'ପୁଣ୍ୟ ପ୍ରେରଣା' ଆଣି ନ ଦେଲା, ସେ ଯଦି କ୍ଷୁଦ୍ର-ପରିସର ମଧ୍ୟରେ ସମ୍ଭୋଗରେ ଆବଦ୍ଧ ହୋଇ ରହିଲା, ତେବେ ପ୍ରେମର ମହତ୍ତ୍ୱ କ'ଣ ? ଏ ତ ନାଷ୍ଟଦେହ-ବିଳାସୀ କାମୁକ କବିର ସ୍ୱୈରାଚାର ନାମାନ୍ତର ମାତ୍ର । ତେଣୁ କବି ଯାହାର ପ୍ରେମପାଇଁ ଅନ୍ତରରେ ପ୍ରଦୀପ ଜାଳି ବସିଛନ୍ତି, ସେ ନାରୀ ନୁହଁ, ବା କୌଣସି ପୁରୁଷ-ବନ୍ଧୁ ନୁହଁ, ସେ ସତ୍ୟ ଶିବ ସୁନ୍ଦରର ଆଧାର ସେହି ଅଗତିର ଗତି ତାଙ୍କର ପ୍ରାଣପତି । କବି ଯେପରି ଜୀବନର ସକଳ ପ୍ରେମ-ସମ୍ପଦ ତାଙ୍କରି ପାଦପଦ୍ମରେ ଅଜାଡ଼ି ଦେଇଛନ୍ତି । ତାଙ୍କରି ସହିତ ମିଶି ନିଜର ଅସ୍ତିତ୍ୱ ପର୍ଯ୍ୟନ୍ତ ହରାଇଦେବାକୁ କବି କୁଣ୍ଠିତ ନୁହନ୍ତି । ଯେଉଁ ପିପାସା ଏ ମୃଣ୍ମୟ ଜଗତରେ ଚରିତାର୍ଥ ହୋଇପାରିଲାନାହିଁ, ତାକୁ ସେ ଅନନ୍ତ ଆଧାରରେ ଉପଭୋଗ କରିବାକୁ ଚାହାଁନ୍ତି । ପ୍ରେମର ଏ ବିରାଟ ବିସ୍ତୃତ ଏବଂ ବିଶ୍ୱମୟ

ପରିବ୍ୟାପ୍ତି ହିଁ ତାଙ୍କୁ ଦୀନ ଦୁଃଖୀ ଦରିଦ୍ର ସମସ୍ତଙ୍କପାଇଁ ଜୀବନ ଉତ୍ସର୍ଗ କରିବାର ପ୍ରେରଣା ଦେଇଥିଲା । ସେହି ବିଶ୍ୱଭାବ ହିଁ ପ୍ରକାଶପାଇଛି 'ବିଶ୍ୱର ମିଳନ ଚିନ୍ତ' କବିତାରେ । ପ୍ରକୃତ ପ୍ରେମ ଓ ବିଶ୍ୱପ୍ରେମର ମଧୁର ମିଳନରେ ହିଁ କବିତାର ପରିସମାପ୍ତି ।

"ଗିରି ସାଗର ନଦୀ ତପନ ଶଶୀ,
ସର୍ବେ ତୃପ୍ତିବେ ମୋତେ ପ୍ରେମେ ପରଶି
ମୋ ପ୍ରାଣ ପ୍ରେମଧାରେ ଭାସିବ ଧରା
ହେବ ଏ ବିଶ୍ୱ ମୋର ପ୍ରେମ-ପସରା ।"

ସ୍ୱର୍ଗତ ପଣ୍ଡିତ ଆର୍ତ୍ତବଲ୍ଲଭ ମହାନ୍ତି ଥରେ ଗୋପବନ୍ଧୁଙ୍କ କବିତା ପ୍ରତି ଆକ୍ଷେପ ପ୍ରକାଶକରି କହିଥିଲେ, 'ସେଥିରେ କ'ଣ ଅଛି, କେବଳ ପଦ-ଲାଳିତ୍ୟ', କିନ୍ତୁ ପ୍ରାଚୀନ ପୋଥି କର୍ଷଣକରି ସେ ଯେଉଁ ବୈଷ୍ଣବ କବିମାନଙ୍କର ପ୍ରଶସ୍ତି ଗାନ କରିଅଛନ୍ତି, କି ଉଦାରତର ଓ ଅଧିକ ମହାପ୍ରାଣ ଭାବରାଜି ସେଥିରେ ଅଛି, ତା ବୁଝିହୁଏ ନାହିଁ । ବରଂ ଡକ୍‌ଟର ରାଧାକୃଷ୍ଣନ କବିତା ସମ୍ବନ୍ଧରେ ଯାହା ଉଲ୍ଲେଖ କରିଅଛନ୍ତି, ତାହା ହିଁ ଗୋପବନ୍ଧୁଙ୍କର ଏହି କବିତାମାନଙ୍କ ପ୍ରତି ସମ୍ପୂର୍ଣ୍ଣଭାବରେ ପ୍ରଯୁଜ୍ୟ what matters is not the massiveness of thought on the importance of the subject, but the purity and profundity of the experience. The Poets' mind is finer, his heart more sensitive to the remotest murmur of things" ଅନୁଭୂତିର ଗମ୍ଭୀରତା ଏବଂ ବିଶୁଦ୍ଧତାହିଁ କବିତାର ପ୍ରାଣପିଣ୍ଡ ।

'ବନ୍ଦୀର ବିରହ ବ୍ୟଥାରେ ଅଭିବ୍ୟକ୍ତ ଲାଭକରିଛି ପ୍ରକୃତ ପ୍ରତି କବିଙ୍କର ସମବେଦନା, ବନ୍ଧୁ ପ୍ରୀତି ଓ ଦେଶପ୍ରୀତି । ପ୍ରେମରେ ଯାହାର ହୃଦୟ ସିକ୍ତ, ନିର୍ଜନ କାରାଗାରର ପ୍ରକୋଷ୍ଠରେ ସେ ଯେ ନିରନ୍ତର ବିରହ ବେଦନାରେ ବ୍ୟାକୁଳ ହେବ, ଏଥିରେ ସନ୍ଦେହ କ'ଣ ? ଏ ବିରହ ପ୍ରେମିକାଠାରୁ ପ୍ରେମିକର ବିଚ୍ଛେଦ-ବେଦନାରୁ ଆହୁରି ଗମ୍ଭୀର ଓ ବ୍ୟାପକ । କବିଙ୍କର ଏ ବିରହ-ବ୍ୟଥା କାହିଁକି ? ତା'ର ସ୍ପଷ୍ଟ ଉତ୍ତର ମଧ୍ୟ ଏ କବିତାରେ ଅଛି ।

"ଆହା, ପ୍ରିୟଜନ ବିରହ କି ଦାରୁଣ କଷଣ ?
ପ୍ରୀତିପାଶେ ବନ୍ଧା ଜଗତେ ସର୍ବେ ଜଡ଼ ଚେତନ ।

× × ×

ପ୍ରିୟଜନ ପ୍ରିୟସ୍ଥାନ ମୁଁ ଗୁଡ଼ି ବନ୍ଦୀ ଏଠାରେ,
ବିରହ ବିପଦ ବିଷେ ମୋ ମନ-ପରାଣଘାରେ ।"

ଏ ପ୍ରିୟଜନ କୌଣସି ନିର୍ଦ୍ଦିଷ୍ଟ ଆତ୍ମୀୟ ସ୍ୱଜନ ନୁହନ୍ତି । ଏ ପ୍ରିୟଜନ ମଧ୍ୟରେ ଅନ୍ତର୍ଭୁକ୍ତ ସମଗ୍ର ଉତ୍କଳବାସୀ, ଯାହାଙ୍କ ସେବାରୁ କାରାଗାର ଆଜି ତାଙ୍କୁ ଏପରି ନିଷ୍ଠୁରଭାବରେ ବଞ୍ଚିତ କରିଛି । ହୃଦୟକୁ ଦୁଃଖରେ ସାନ୍ତ୍ୱନା ଦେବା ନିମନ୍ତେ ସେ ବିଶ୍ୱ ପ୍ରକୃତି ଉପରେ ଦୃଷ୍ଟି ନିବଦ୍ଧ କରିଅଛନ୍ତି ।

"ବିଶ୍ୱ ପ୍ରକୃତିରେ ଦେଖିଲେ ସମ ହୃଦ-ବେଦନା,
ଚାପିତ ଅନ୍ତରେ ଆସିବ ଅବା କ୍ଷଣେ ସାନ୍ତ୍ୱନା ।"

କିନ୍ତୁ ବନ୍ଦଶାଳାରେ ଆବଦ୍ଧ ହୋଇ ବିଶ୍ୱପ୍ରକୃତିର ବିଚିତ୍ର ଲୀଳା ଦେଖିବାକୁ ବନ୍ଦୀର ଅବକାଶ କାହିଁ ? ଆକାଶରେ ଯେତିକି ଏହି ଲୀଳା ଦେଖିପାରିଛନ୍ତି, ସେତିକି ତାଙ୍କ ପକ୍ଷରେ ଯଥେଷ୍ଟ ହୋଇପାରିଛି । ସାନ୍ଧ୍ୟ ଗଗନର ରକ୍ତିମ ଆଭାରେ ସେ ଦେଖିପାରିଛନ୍ତି ପ୍ରାଚୀ-କପୋଳରେ ଅନୁରାଗ ରଙ୍ଗ; କିନ୍ତୁ ଏ ଅନୁରାଗ କ୍ଷଣକପାଇଁ । ପରମୁହୂର୍ତ୍ତରେ ସମଗ୍ର ପୃଥିବୀ ଅନ୍ଧକାରରେ ଆଚ୍ଛନ୍ନ ହୋଇଯିବ ; ଅନୁରାଗିଣୀ ପ୍ରାଚୀ ତେଣୁ ଦୁଃଖ-କାଳିମାରେ ଲିପ୍ତ । ଏ ବିରହହିଁ କବିଙ୍କ ମନରେ ନାନା ଦୁଃଖ ସ୍ମୃତି ଜାଗ୍ରତ କରିଛି । ସେହି ସ୍ମୃତିରେ ସେ ବ୍ୟଥାତୁର ହୋଇ ଗାଇଅଛନ୍ତି—

"ଏ ବିରହ ଦୃଶ୍ୟ ହିଅଇ ବନ୍ଦୀ ପରାଣେ ବ୍ୟଥା
—ପଲକେ ପଲକେ ପଡ଼ଇ ମନେ କେତେ କି କଥା
ସମ୍ଭାଳ ଟିକିଏ ପିପାସା ଗୃହ ନ ହୁଅ ଦ୍ୱାରେ
ପ୍ରଣୟ-ପ୍ରଭାବ ଦେଖିବି କ୍ଷଣେ ରହି ବାହାରେ ।"

ପ୍ରକୃତିର ପ୍ରଣୟ-ରହସ୍ୟ ଦେଖିବାକୁ କବିଙ୍କର କି ଉତ୍କଣ୍ଠା ! କିନ୍ତୁ ସେ ଇଚ୍ଛା କବିଙ୍କର ପୂରଣ ହେବାର ନୁହେଁ । ଏଠାରେ ଯେ ସ୍ୱାଧୀନତା ବନ୍ଦି ପ୍ରାପ୍ତ ! କବି ନିତାନ୍ତ ପରାଧୀନ । ଆଉରି ଟିକିଏ ସୂର୍ଯ୍ୟାସ୍ତର ସୌନ୍ଦର୍ଯ୍ୟ ଦେଖିବାକୁ କବି ପିପାସାକୁ କାକୁତି ମିନତି ପର୍ଯ୍ୟନ୍ତ କରିଅଛନ୍ତି । ସୌନ୍ଦର୍ଯ୍ୟପିପାସୁ କବି ଜୀବନର ମାଧୁରୀ ତ ଏହିଠାରେ । ପ୍ରକୃତି ସହିତ ସମପ୍ରାଣତାବୋଧରେ ତାଙ୍କ ନିପୀଡ଼ିତ ଅନ୍ତରର ପରମ ପରିତୃପ୍ତି ; କିନ୍ତୁ ସେ କି କରୁଣ ଦୃଶ୍ୟ, ନିର୍ମମ ପିପାସା କକ୍ଷ ଅବରୁଦ୍ଧ କରିଦେଲା । କବି ଶେଷରେ ନିରାଶ ହୋଇ କହିଛନ୍ତି:—

'ଯମଦୂତ ହୃଦେ କରୁଣା କାହିଁ ବସିବ ଛଳେ ?
ଏ ଧିକ ନ କହ ମର୍ଯ୍ୟାଦା ଜଗି ପଶିବ ବଳେ ।

## ସ୍ୱଦେଶ ପ୍ରୀତି

ବିଭୂପ୍ରୀତି, ବିଶ୍ୱପ୍ରୀତି, ପ୍ରକୃତି ପ୍ରେମ, ସ୍ୱଦେଶପ୍ରାଣତା ଓ ଦୁର୍ଦ୍ଦମ ସ୍ୱାଧୀନତା-ପ୍ରିୟତାର ଅମ୍ଫୁରନ୍ତ ଉତ୍ସ କାରାଗାର । ଭାବନା, ଆବେଗ ଓ ଉଚ୍ଛ୍ୱାସର କେନ୍ଦ୍ରଭୂମି ହଜାରିବାଗ ଜେଲର ଏହି ନିର୍ଜନ ପ୍ରକୋଷ୍ଠ । ମହାମିଳନ ପିପାସା ଓ ବିରହବ୍ୟଥାର ପୀଠସ୍ଥଳୀ କାରାରୂପକ ଏହି ପୁଣ୍ୟ ତପୋବନ । କେତେବେଳେ ଈଶ୍ୱରଙ୍କ ମଙ୍ଗଳମୟବିଧାନ ଉପରେ କବିଙ୍କର ପ୍ରଗାଢ଼ ବିଶ୍ୱାସ, କେତେବେଳେ ବନ୍ଧୁ-ବିୟୋଗର ଶୋକାଚ୍ଛନ୍ନ ଚିନ୍ତା, କେତେବେଳେ ମୈତ୍ରୀଭଙ୍ଗଜନିତ ଦାରୁଣ ବିରହ ବ୍ୟଥା, କେତେବେଳେ ନାନା ଅତୀତଘଟନାର ସ୍ମୃତି, ପୁଣି କେତେବେଳେ ସ୍ୱଦେଶଚିନ୍ତା, ଏ ସକଳ କବିଙ୍କ ପ୍ରାଣରେ ଅପୂର୍ବ ଭାବାବେଗ ସୃଷ୍ଟିକରିଛି । ସ୍ଥୂଳତଃ 'କାରାକବିତା'ରେ କବିଙ୍କର ବ୍ୟକ୍ତିତ୍ୱ ପରିସ୍ଫୁଟ । ତାଙ୍କର ହୃଦୟର ଦ୍ୱାର ଏଥିରେ ଉନ୍ମୁକ୍ତ । ଯେଉଁ ରାଜନୈତିକ ସ୍ୱାଧୀନତା ଲାଭକରିବା ନିମନ୍ତେ ସେ ସ୍ୱେଚ୍ଛାରେ ଏ କାରାକଷ୍ଟ ବରଣ କରିଅଛନ୍ତି—ସମୟେ ସମୟେ ସେହି କାରାନିବାହ ପ୍ରତି ତାଙ୍କର ମନ ବିଦ୍ରୋହୀ ହୋଇଉଠିଛି । କି ଅପରାଧରେ ସେ ଆଜି ଏପରି ଶୃଙ୍ଖଳାବଦ୍ଧ, ସେ କଥା ବି ମନେ ମନେ ସେ ବିଶ୍ଳେଷଣ କରିଅଛନ୍ତି; କିନ୍ତୁ ମୁହୂର୍ତ୍ତିକର ଏହି ଅବସାଦ ଓ ଆତ୍ମଗ୍ଲାନି ଅପସାରିତ ହୋଇ ତାଙ୍କ ହୃଦୟରୁ ସକଳ ସନ୍ଦେହ ଦୂର-ହୋଇଛି । ସତ୍ୟ, ଅହିଂସା ଓ ଦେଶସକାଶେ ଆତ୍ମୋତ୍ସର୍ଗ ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଜନ୍ମିଛି । ନବ ତେଜରେ ଉଦ୍ଭାସିତ ତାଙ୍କ ଅନ୍ତରରୁ ଆଶା ଓ ଉତ୍ସାହର ଆଶ୍ୱାସନାମୟୀ ବାଣୀ ଉଦ୍‌ଗୀତ ହୋଇ ତାଙ୍କୁ ଯେପରି ବଳିଷ୍ଠ ପ୍ରେରଣାଦେଇ କହୁଛି —

'ଉଡ଼ୁଅଛି ଅବଶେଷେ ସତ୍ୟର ନିଶାଣ
ବାଜୁଅଛି ସ୍ୱାଧୀନତା ବିଜୟ ବିଷାଣ ।
ହୋଇଅଛି ରାଜଶକ୍ତି ଲୀନ କାଳଗ୍ରାସେ
ପାଉଅଛି ଅପଯଶ ଭାବୀ ଇତିହାସେ !'

ଅବଶେଷରେ ସତ୍ୟ ଓ ଧର୍ମର ଜୟ ଅବଶ୍ୟମ୍ଭାବୀ, ଏହି ଚିନ୍ତାରେ ତାଙ୍କର ହୃଦୟ ଆଶ୍ୱସ୍ତ ହୋଇଅଛି; କିନ୍ତୁ ଏ ସବୁ ବିଚିତ୍ର ଭାବ-ଭାବନା, ମନର ଦୁଃଖ ଓ ନୈରାଶ୍ୟ ମଧ୍ୟରେ ସେ ନିଜର ଜନ୍ମଭୂମି ଉତ୍କଳକୁ ପାସୋରି ପାରିନାହାନ୍ତି । ସେ ହିଁ ଯେ ଜୀବନର ଅବିଚଳ ଧ୍ରୁବତାରା । ତେଣୁ ନିର୍ଜନ ପ୍ରକୋଷ୍ଠ ମଧ୍ୟରେ ତାଙ୍କର

ଚାଲିଛି ଅପୂର୍ବ ରମଣୀୟ ମାନସ-ଯାତ୍ରା ମଞ୍ଚୁଷାଠାରୁ ସମୁଦ୍ରର ପର୍ଯ୍ୟନ୍ତ । ଏ କେବଳ ସ୍ୱଦେଶଭକ୍ତ ବନ୍ଦୀ କବିଙ୍କର ମାନସ-ଯାତ୍ରା ନୁହେଁ, ଏ ଓଡ଼ିଶାର ଏକ କାବ୍ୟାନୁଭୂତ ମାନଚିତ୍ର ! ସୁଦୂର ଅତୀତ ସ୍ମୃତି ସହିତ ବର୍ତ୍ତମାନର ସ୍ମୃତି ବିଜଡ଼ିତ । ତା' ସହିତ ଓତପ୍ରୋତଭାବରେ ବିଜଡ଼ିତ ଅତୀତ ଉତ୍କଳର ଗୌରବୋଜ୍ଜ୍ୱଳ ପୁଣ୍ୟ ସ୍ମୃତି ହିଁ ଏହି କବିତାର ପ୍ରାଣ । ଜନ୍ମସ୍ଥଳୀର ଭାର୍ଗବୀ ନଦୀରୁ ଏହି ସ୍ମୃତିମୟୀ ମାନସଯାତ୍ରାର ସୂତ୍ରପାତ । ସମଗ୍ର ଉତ୍କଳକୁ ନିଜର ସାଧନାର ପୀଠ କରିଥିଲେ ମଧ୍ୟ ବାଲ୍ୟ ଓ କୈଶୋର ଜୀବନ ସହିତ ନାନା ଭାବରେ ଜଡ଼ିତ ସେହି ଭାର୍ଗବୀ ନଦୀକୁ ସେ ଭୁଲି ପାରିନାହାନ୍ତି । ପ୍ରଥମ ଛାନ୍ଦୋଜ୍ଜ୍ୱଳ ତାରି ଉଦ୍ଦେଶ୍ୟରେ ସମର୍ପିତ ହୋଇଛି । ତା ସହିତ ପଲ୍ଲୀ ଜୀବନର ନାନା ମଧୁମୟ ସ୍ମୃତିର ଚିତ୍ର ଅଙ୍କନ କରାଯାଇଅଛି । ଗାଈଆଳ ପିଲାମାନେ ବଂଶୀ ବଜାଇ ଗୋଠ ନେଇ ଫେରିଆସୁଅଛନ୍ତି । ବେପାରୀମାନେ ହାଟ କାମ ସାରି ଭକ୍ତି ଚଉପଦୀ ଗାଇ ଘରକୁ ଫେରିଆସୁଛନ୍ତି । ଯାଗେଶ୍ୱରୀଙ୍କ ପାଖରେ ସନ୍ଧ୍ୟା ଦୀପ ଜାଳି କୁମାରୀମାନେ ନିଜ ନିଜ ମଧ୍ୟରେ କଳହ କରି ଫେରି ଆସୁଛନ୍ତି । ନଈ ବନ୍ଧ ଉପରେ କାନ୍ଧରେ ଯାଉଁଳି ପକାଇ ଭାଇ ଭଉଣୀକୁ ଶାଶୁଘରକୁ ନେଉଛି । କାଖରେ ପିଲା ଏବଂ ନବ ଯୌବନର ଭାର, ସେଥିପାଇଁ ଭଉଣୀ ଶୀଘ୍ର ଚାଲିପାରୁ ନାହିଁ । ଏହା ଦେଖି ଯୁବାସଙ୍ଗୀମାନେ ସେହି ଯୁବତୀକୁ ଲକ୍ଷ୍ୟକରି କ'ଣ ସବୁ ଠାରାଠାରି ହେଉଛନ୍ତି । ଏ କେତେକାଳର ସ୍ମୃତି । ନାନା କର୍ମଜଞ୍ଜାଳରେ ଯାହା ବିସ୍ମୃତିଗର୍ଭରେ ଲୀନ ହେବାକୁ ବସିଥିଲା; ଆଜି ନିର୍ଜନତାର ଯାଦୁମନ୍ତ୍ରରେ ସେ ସବୁ ଜୀବନ୍ୟାସ ଲାଭକରିଅଛନ୍ତି । ତାର ରୂପାୟନ ପୁଣି କି ମଧୁର, କି ଲଳିତ, କି ମର୍ମସ୍ପର୍ଶୀ ଓ ଜୀବନ୍ତ !

> "ଯାଉଁଳି କାନ୍ଧରେ କେବେ ବା ବନ୍ଧରେ
> ଭଉଣୀ ଆଗରେ ଚାଲିଛି ଭାଇ,
> ଶାଶୁଘରେ ନିଏ ସନ୍ଧ୍ୟା ଦେଖି କହେ
> ଚାଲେ ଗୋଡ଼ କାଢ଼ି ଚାଲିବାପାଇଁ ।
> ନବ ଯଉବନୀ କାଖେ ପିଲା ଘେନି
> ଚାଲି ନ ପାରଇ ଜଘନଭାରେ
> ତା ଚାହିଁ ଚପଳ ଯୁବା ସଙ୍ଗିଦଳ
> ପରିହାସେ ଏକ ଆନକୁ ଠାରେ ।"

'କାରା-କବିତା'ର ଏହି 'ବନ୍ଦୀର ସ୍ୱଦେଶ ଚିନ୍ତା' କବିତାକୁ କେହି କେହି କାଳିଦାସଙ୍କ 'ମେଘଦୂତ' ଖଣ୍ଡ କାବ୍ୟ ସହିତ ତୁଳନାକରି 'ମେଘଦୂତ' ସହିତ 'ବନ୍ଦୀର ସ୍ୱଦେଶ-ଚିନ୍ତା'ର ସାମଞ୍ଜସ୍ୟ ଉପସ୍ଥାପନ କରନ୍ତି । ଅବଶ୍ୟ ଦୁଇଟି ଦିଗରୁ

ଏ ସାମଞ୍ଜସ୍ୟକୁ ସମର୍ଥନ କରିଯାଇପାରେ । ପ୍ରଥମତଃ 'ମେଘଦୂତ'ରେ ମେଘକୁ ଦୂତ କରାଯାଇଅଛି । ମଳୟ ପବନ 'ସ୍ୱଦେଶ-ଚନ୍ତା'ର ଦୂତ । ଦ୍ୱିତୀୟରେ ବିରହ-ବେଦନା ଉଭୟର ପ୍ରାଣପିଣ୍ଡ; କିନ୍ତୁ କାଳିଦାସଙ୍କ ବିରହୀ ଯକ୍ଷ ବିଚ୍ଛେଦ-ବେଦନାରେ ଆକୁଳହୋଇ ମେଘକୁ ତାର ସନ୍ଦେଶ ଦେଇ ପ୍ରିୟାପାଖକୁ ପଠାଇଛି, 'ସ୍ୱଦେଶ-ଚନ୍ତା'ରେ ସ୍ୱଦେଶରୁ ନିର୍ବାସିତ ହୋଇ ଜନ୍ମଭୂମିର ବିରହ-ବେଦନାରେ କବି ନିପୀଡ଼ିତ ହୋଇଅଛନ୍ତି । କାଳିଦାସ ମହାକବି । ଗୋପବନ୍ଧୁ ପ୍ରଧାନତଃ କର୍ମୀ—ଜନସେବକ, କବିତା ତାଙ୍କର କର୍ମନିଷ୍ଠାର ବହିଃପ୍ରକାଶ ମାତ୍ର । ତେଣୁ ମେଘଦୂତ ସହିତ 'ବନ୍ଦୀର ସ୍ୱଦେଶ-ଚନ୍ତା'ର ତୁଳନା ଆଉ ବେଶି ଦୂରକୁ ଟାଣିନେବା ଉଚିତ ନୁହେଁ ।

ସେ ଯାହାହେଉ, ବିଚ୍ଛିନ୍ନାଞ୍ଚଳର ଶୋଭା-ମଞ୍ଜୁଷା ମଞ୍ଜୁଷାଠାରୁ ଏହି ମାନସ ପରିକ୍ରମାର ଆରମ୍ଭ । ମଞ୍ଜୁଷାରୁ ମଳୟ ଯାଇଛି ଚିଲିକାକୁ । ଚିଲିକାରୁ ଯାଇଛି ଶ୍ରୀକ୍ଷେତ୍ରଧାମକୁ । ଜଗନ୍ନାଥଙ୍କର ପରମ ଭକ୍ତ ଗୋପବନ୍ଧୁ ସମୀରଣକୁ ପଚାରିଛନ୍ତି—

"ଗମ୍ଭୀରିରୁ କିବା ଶ୍ରୀମୁଖ ଆଦେଶ
ପଠାଇ ଅଛନ୍ତି ଦେବ ମୋପାଇଁ,
କହ ବେଗେ ବାୟୁ କ୍ଷୀଣ ହୁଏ ଆୟୁ
ରହିଥିବି କେତେ କାଳ ଅନାଇଁ ।"

ସେଠାରୁ ସମୀର ଯାଇଛି ଗୁପ୍ତ ବୃନ୍ଦାବନ ସାକ୍ଷିଗୋପାଳକୁ । ସାକ୍ଷି-ଗୋପାଳ ଗୋପବନ୍ଧୁଙ୍କର ସାଧନାର ପୁଣ୍ୟପୀଠ । ସେଥିପ୍ରତି ତାଙ୍କର ଆଦର ମମତା ଅଧିକ । ସେହି ସ୍ଥାନର ସମ୍ବାଦ ଶୁଣିବାକୁ ସେ ଅତ୍ୟନ୍ତ ଆଗ୍ରହୀ । ସେଠା ମନ୍ଦିରରେ ଥିବା ରାଧାକୃଷ୍ଣଙ୍କର ମଧ୍ୟ ଗୋପବନ୍ଧୁ ଜଣେ ପରମ ଭକ୍ତ । ସାକ୍ଷିଗୋପାଳଙ୍କୁ ଦର୍ଶନ ନ କଲେ ସେ ଅନ୍ନ ଜଳ ସ୍ପର୍ଶ କରନ୍ତିନାହିଁ । ଯୁଗଳମୂର୍ତ୍ତିର ସୁଷମା ବର୍ଣ୍ଣନା କରିବାକୁ ଯାଇ କବି କେବଳ ନିଜର ଭକ୍ତିମତ୍ତାର ପରିଚୟ ଦେଇନାହାନ୍ତି, ଦେଇ-ଛନ୍ତି ତାଙ୍କ କଳ୍ପନା-ବୈଭବର ଅପୂର୍ବ ନିଦର୍ଶନ ଏବଂ ଭାବାନୁରୂପ ଲଳିତ କୋମଳ ପଦବିନ୍ୟାସରେ ତାଙ୍କ ସିଦ୍ଧହସ୍ତତାର ପରିଚୟ ।

"ଦେଉଳେ ପ୍ରବେଶି ଗୋପୀନାଥ ବଂଶୀ
ରନ୍ଧ୍ରେ ରଚିଥିବ ଅସ୍ଫୁଟ ସ୍ୱନ,
ରାଧିକା-ଅଞ୍ଚଳ ଉଡ଼ାଇ ଚଞ୍ଚଳ
କରିଥିବ ଜାଣି ବେନିଙ୍କ ମନ ।

ହସି ଉଠିଥିବେ ଯୁଗଳ ମୂରତ
ଖସି ପଡ଼ିଥିବ ଶ୍ରୀଅଙ୍ଗୁ ଫୁଲ,
ନବଘନ-ଶିରେ ଆହା କ'ଣ ରୁଚିରେ
ହଲୁଥିବ ବାଙ୍କ ମୟୂରଚୂଳ ।"

ସେଠାରୁ ସେ ମଳୟଙ୍କୁ ପଠାଇଛନ୍ତି ପ୍ରାଚୀନ କୀର୍ତ୍ତିବଶୋଭିତ ଭୁବନେଶ୍ୱର ଓ ଖଣ୍ଡଗିରିକୁ । ଭୁବନେଶ୍ୱରର ଦେବାଳୟ ଓ ଖଣ୍ଡଗିରିର ଗୁମ୍ଫାମାନଙ୍କର ଜୀର୍ଣ୍ଣ-ଶୀର୍ଣ୍ଣ ଅବସ୍ଥା ସ୍ମରଣକରି ସ୍ୱଦେଶବତ୍ସଳ-ପ୍ରାଣରେ ତାଙ୍କର ଗଭୀର ଦୁଃଖ ଓ ଅନୁଶୋଚନାର ସଞ୍ଚାର ହୋଇଅଛି । କବି ସେଠାରେ ପବନକୁ ବେଶି ସମୟ ରଖାଁଇ ଦେଇନାହାନ୍ତି । ଅତୀତ ଗୌରବର ଏ ସବୁ ଧ୍ୱଂସାବଶେଷ ଦେଖି କିଏ ଧୈର୍ଯ୍ୟ ଧରି ରହିପାରିବ ? ତଥାପି—

ପୂର୍ବ ସୁଖ-ସ୍ମୃତି ଦୁଃଖେ ମନେ ଆସେ
ବଢାଏ ବିଷାଦ ଦ୍ୱିଗୁଣ ପ୍ରାଣେ,
ତଥାପି ଉଚିତ ବିଷାଦ ସଙ୍ଗୀତ
ସନ୍ତାପେ ସନ୍ତତ ସାନ୍ତ୍ୱନା ଆଣେ ।"

ପୂର୍ବ ସ୍ମୃତିର ଉଦ୍‌ବୋଧନରେ କବିଙ୍କର ଯେତିକି ଦୁଃଖ, ସେତିକି ସୁଖ । ଏ ସ୍ମୃତିରେ ତାଙ୍କର ପ୍ରାଣ-ବୀଣା କମ୍ପି ଉଠେ, ଏହା ହିଁ ତାଙ୍କର ଅନ୍ତରର ଧ୍ୱନି । ଏଥିରେ ତାଙ୍କର ସନ୍ତପ୍ତ ପ୍ରାଣ ଆଶ୍ୱାସନା ଲାଭକରେ ।

ଖଣ୍ଡଗିରିରୁ ମଳୟଙ୍କର ଯାତ୍ରା ମହାନଦୀକୁ । ମହାନଦୀ ତ କବିଙ୍କର ଅତି ପ୍ରିୟ—ଏଠାରେ ନଦୀ ନାହିଁ । ବହୁ ବିଚିତ୍ର ଭାବରେ ମହାନଦୀର ଏ ସୌନ୍ଦର୍ଯ୍ୟର ଉପଲବ୍ଧି କବିଙ୍କର ସ୍ୱଦେଶ-ପ୍ରାଣତାର ଜ୍ୱଳନ୍ତ ପରିଚୟ । ପ୍ରେମାନୁରଞ୍ଜିତା ନାୟିକା-ଦେହର ସାତ୍ତ୍ୱିକ ବିକାର ବର୍ଣ୍ଣନା କରିବାରେ ଗୋପବନ୍ଧୁ ମଧ୍ୟ ସୁନିପୁଣ ଶିଳ୍ପୀ । ପ୍ରେମିକ ସମୀରର ସଂସ୍ପର୍ଶରେ ଆସି ପ୍ରେୟସୀ ମହାନଦୀର ଶରୀରରେ ଯେଉଁ ପୁଲକ ବିକାର ଘଟିଥିବ, କବିଙ୍କ ଭାଷାରେ ତାହାର ରୂପାୟନ ଏହିପରି—

"ଫୁଲି ଉଠିଥିବ ମହାନଦୀ-ବକ୍ଷ
କମ୍ପି ଉଠିଥିବ ଲହରୀହାର,
ପଠା ଖଣ୍ଡପନ୍ତି ଥିବେ ମଥା ପୋତି
ମୃଦୁହାସେ ଦେଖି ଅଙ୍ଗ ବିକାର ।"

ମହାନଦୀ ସହିତ କବିଙ୍କର ଏ ଘନିଷ୍ଠ ଆତ୍ମୀୟତା, ତାହାର ଏହି ପ୍ରେମାନୁ-ଲିପ୍ତ ପୁଲକର ବର୍ଣ୍ଣନା, ତାହାର ଏହି ନାୟିକାଜନସୁଲଭ କାନ୍ତ କୋମଳ

ବାଁନ୍ଦ୍ରର ମାଧୁରୀ ପ୍ରକୃତି-ପୁତ୍ରୀ ସ୍ୱାଧୀନାଅ-ସାନ୍ନିଦ୍ଧ୍ୟରେ ନା ନାହିଁ ? ଖଣ୍ଡଗିରି ପରି ବାରବାଟୀର ବର୍ଣ୍ଣନା ମଧ୍ୟ ଏହି କବିତାରେ ଅତ୍ୟନ୍ତ ପ୍ରାଣସ୍ପର୍ଶୀ ଏବଂ ଅଶ୍ରୁପ୍ଲାବୀ । କେହି ଜଣେ ଆଧୁନିକ କବି ବାରବାଟୀ ଦୁର୍ଗର ଐତିହାସିକ ବିଭବ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି, ଦୁର୍ଗରେ ଥିବା ନାରୀମାନଙ୍କର ଅଲକ୍ତରଞ୍ଜିତ ପାଦପଦ୍ମ ସ୍ପର୍ଶରେ ଆସି ସେମାନଙ୍କର ସ୍ନାନ ସମୟରେ ମହାନଦୀର ଜଳ-ପ୍ରବାହ ରକ୍ତିମାଭ ହୋଇଯାଉଥିଲା । ଏଠାରେ ନାରୀର ପାଦ ଦୁଇଟି ଉପରେ ଏହି କବିଙ୍କର ଦୃଷ୍ଟି ନିବଦ୍ଧ; କିନ୍ତୁ ଗୋପବନ୍ଧୁଙ୍କ ଦୃଷ୍ଟି ବାରବାଟୀ ଦୁର୍ଗର ଅନ୍ତଃପୁରର ନାରୀମାନଙ୍କ ପାଦ ଉପରେ ନିବଦ୍ଧ ନୁହେଁ, ନିବଦ୍ଧ ସେମାନଙ୍କ ସ୍ନେହ-ସୁଧାମୟ ମନ ଉପରେ, ସେମାନଙ୍କର ଚକ୍ଷୁ-ନିଃସୃତ ଅଶ୍ରୁବିନ୍ଦୁର ପବିତ୍ରତା ଓ ମହନୀୟତା ଉପରେ ଏବଂ ସେମାନଙ୍କ ସେମାନଙ୍କର ନାରୀଜନୋଚିତ ଯଥାଯୁକ୍ତ ମର୍ଯ୍ୟାଦା ଦାନ ଉପରେ । ମୃତ୍ୟୁଶଯ୍ୟାଶାୟୀ ରାଜାଙ୍କୁ ମେଲାଣି ଦେଲାବେଳେ ମହିଷୀଙ୍କ ମୁଖର ସ୍ୱେଦକଣା ଏବଂ ଚକ୍ଷୁର ଅଶ୍ରୁ-ବିନ୍ଦୁକୁ ଅତି ପବିତ୍ର ମନେକରି ଏହି ସମୀର ତାକୁ ତଳେ ନ ପକାଇ ଧୋଇ ବିଚିତ୍ର କୌଶଳରେ ବହି ତାହା ହରଣ କରିଥିଲା, ଏବଂ ରାଣୀଙ୍କର ସନ୍ତପ୍ତ ମନକୁ ସୁଶୀତଳ ଓ ଆଶ୍ୱସ୍ତ କରିଥିଲା :—

> "ସ୍ନେହ-ସୁଧାବିନ୍ଦୁ ଯେତେ ମୁଖଇନ୍ଦୁ
> ମଣ୍ଡିଲା ପ୍ରସରି ନୟନ ମୃଗଲେ,
> ବହି ସୁଶୀତଳେ ହରିଲୁ-କୌଶଳେ
> ନ ପକାଇ ମୁକ୍ତାଫଳକୁ ତଳେ ।"

ଗଡ଼ଜାତକୁ ସେତେବେଳେ 'ଅନ୍ଧାର ମୁଲକ' କୁହାଯାଉଥିଲା । ରାଜାଙ୍କ ଅତ୍ୟାଚାରରେ ପ୍ରଜାମାନେ ଅତ୍ୟନ୍ତ ଉତ୍ପୀଡ଼ିତ ହେଉଥିଲେ । ସେହି ନିର୍ଯ୍ୟାତିତ ଓ ନିଃସହାୟ ଗଡ଼ଜାତବାସିମାନଙ୍କ ପ୍ରତି ଗୋପବନ୍ଧୁଙ୍କର କି ସହାନୁଭୂତି ଓ ସମବେଦନା ! ସେତେବେଳେ ଗଡ଼ଜାତ ପ୍ରାକୃତିକ ଉତ୍କଳରୁ ବିଚ୍ଛିନ୍ନହୋଇ ରହିଥିଲା । କୌଣସି ନେତା କିମ୍ବା ସମାଜସେବୀ ସେମାନଙ୍କର ଦୁଃଖ ଦୂର-କରିବା ନିମନ୍ତେ ରାଜାଙ୍କ ଭୟରେ ସେଠାରେ ପଶିପାରୁନଥିଲେ । ତଥାପି ଗୋପବନ୍ଧୁ ସେ ଅନ୍ଧାର ମୁଲକକୁ ନିଜର କର୍ମକ୍ଷେତ୍ରରୁ ବାଦ୍ ଦେଇନଥିଲେ । ସେମାନଙ୍କର ଦୁଃଖ ତାଙ୍କ ପ୍ରାଣରେ ଦାରୁଣ ଧକ୍କା ଦେଇଥିଲା । ସେଥିପାଇଁ ଜୀବନର ପ୍ରଥମ କର୍ମକ୍ଷେତ୍ରସ୍ୱରୂପ ସେ ନୀଳଗିରି ଗଡ଼ଜାତକୁ ବାଛିନେଇଥିଲେ । ସେଠାରେ ଶିକ୍ଷାର ପ୍ରସାର ନିମନ୍ତେ ପ୍ରଯତ୍ନ କରିଥିଲେ । ଆଜି କାରାବାସରେ ସେହି ଅନ୍ଧାରମୁଲକ କଥା ତାଙ୍କ ମନେପଡ଼ି ତାଙ୍କୁ ଦୁଃଖରେ ଅଧୀର କରୁଛି; କିନ୍ତୁ ଏହାର ପ୍ରାକୃତିକ ସୁଷମା ତାଙ୍କ ସ୍ମୃତିର ଅକ୍ଷୟ ସମ୍ପଦହୋଇ ରହିଛି । କବିଙ୍କ ଭାଷାରେ :—

"ଶୁଭ୍ର ଶୋଭାମୟ୍ୟ କମଳା-ଆଳୟ
ପ୍ରକୃତ ପ୍ରକାଶ ଅତି ବଚନ,
ଶାସକ-ସ୍ୱଭାବ ବନା ଯଦି ସଙ୍ଗ
ସ୍ୱରଗ ସୁନ୍ଦର ଭାବେ ସବନ ।"

ଗଡ଼ଜାତ ଜଙ୍ଗଲରେ ଦାବାନଳର ବର୍ଣ୍ଣନା କବି ଗଙ୍ଗାଧର ମେହେରଙ୍କ ବ୍ୟତୀତ, ଆଉ କୌଣସି କବିଙ୍କ ଲେଖାମାନରେ ଏପରି ସ୍ୱାଭାବିକ ଓ ଜୀବନ୍ତ ହୋଇ-ପାରିଛି ବୋଲି ମନେହୁଏନାହିଁ । ଗଡ଼ଜାତରୁ ମଲୟର ଯାତ୍ରା ସମ୍ବଲପୁରକୁ । ମଲୟକୁ ସମ୍ବୋଧନ କରି କବି କହୁଅଛନ୍ତି :—

"ଅତି ପ୍ରିୟ ମୋର ହେ ସମ୍ବଲପୁର
ଅଛନ୍ତି ତ ତହିଁ ଭଲ ସକଳ,
ଭଲ ଭାଷାରକ୍ଷା ଧରି ସେ ଯେ କକ୍ଷା
ଗାଇବ ସେ ଚିର ଯଶ ଉତ୍କଳ ।"

ଯେଉଁ ସମ୍ବଲପୁରବାସୀମାନେ ମହାନଦୀର ସ୍ୱଚ୍ଛନୀର ପାନକରନ୍ତି, ଶୈଳ-ସମୀର ସେବନ କରନ୍ତି, ସେମାନେ ସ୍ୱାଧୀନତା ସମରରେ ଯେ ଗୋଟିଏ ଗୋଟିଏ ବୀର ସୈନିକ ହେବେ, ଏଥିରେ କବିଙ୍କର ଅବିଶ୍ୱାସ ନାହିଁ; କିନ୍ତୁ କବିଙ୍କର ଦୁଃଖ, ଏଇ ବସନ୍ତ ସମୀର ଯେ ସମଗ୍ର ଉତ୍କଳ-ଖଣ୍ଡ ପରିକ୍ରମା କରି ଫେରି ବନ୍ଦୀଶାଳାର ବାହାରେ ତରୁଶାଖାପଲ୍ଲବକୁ ଦୋଳାୟିତ କରୁଛି ସେ କିନ୍ତୁ ତାଙ୍କ ପ୍ରକୋଷ୍ଠ ମଧ୍ୟରେ ପ୍ରବେଶକରି ତାଙ୍କୁ ସ୍ପର୍ଶର ପୁଲକ ଓ ମାଧୁର୍ଯ୍ୟ ଦେଉନାହିଁ । ଏଇ ତ ଭାଗ୍ୟର ବିଡ଼ମ୍ବନା; କିନ୍ତୁ ପ୍ରକୃତିର ଏ ଭେଦାଭେଦ ଜ୍ଞାନ କାହିଁକି ? ପ୍ରକୃତି ଦୃଷ୍ଟିରେ ତ ସମସ୍ତେ ସମାନ । ପ୍ରକୃତି ସମାଜପରି ଅନୁଦାର ଓ ନିଷ୍ଠୁର ନୁହେଁ । ସେ 'ଚରାଚର ବିଶ୍ୱର ନିଃଶ୍ୱାସ', ସେ ମହାପ୍ରାଣ, ସେ ବିଶ୍ୱବ୍ୟାପୀ, ସେ ଅସୀମପ୍ରସାରରେ ମହୀୟାନ୍, କବି ନିଜ ଜୀବନର ଅନୁଭୂତି ଓ ଆଦର୍ଶକୁ ସତେ ଯେପରି ପ୍ରକୃତିଠାରେ ପ୍ରତିଫଳିତ ହେବାର ଦେଖିପାରିଛନ୍ତି । ପ୍ରକୃତି ଓ ଗୋପବନ୍ଧୁଙ୍କର କବି-ପୁରୁଷ ଏଠାରେ ଏକାକାର; ତେଣୁ କବି ଲେଖିଅଛନ୍ତି :—

"ସମାଜ ନିଷ୍ଠୁର କରେ ଯାକୁ ଦୂର
ସେ ନୁହେଁ ପ୍ରକୃତି ପ୍ରେମୁ ବାହାର,
ଗଗନେ ପବନେ ଚନ୍ଦ୍ରମା ତପନେ
ଜଳେ ଫଳେ ଫୁଲେ ତା ଅଧିକାର ।"

× × ×

"ଆସିଅଛୁ ଭୂମି ଟେକେଟେ ପୁଣ୍ୟଧାମେ
ଲଗାଇ ତଥ ମୋ ଶିରେ ପ୍ରସାଦ,
ସେ ଧୂଳି ପରଶେ ଘୁଞ୍ଚୁ ଅବସାଦ
ଅପସରୁଁ ହୃଦୁଁ ମୋହ, ପ୍ରମାଦ ।"

ସନ୍ଦେହାକୁଳମନରେ ଏହି ପ୍ରଶ୍ନ ଜାଗିବା ସ୍ୱାଭାବିକ—'ବନ୍ଦୀର ସ୍ୱଦେଶ-ଚିନ୍ତା', ତଥା ସମଗ୍ର 'କାରା-କବିତା'ର ଚିରନ୍ତନ ସାହିତ୍ୟିକ ମୂଲ୍ୟ କଣ ? ଆଧୁନିକ ଯୁଗରେ ଏହାର ପ୍ରୟୋଜନୀୟତା କେଉଁଠାରେ ? ସମୀକ୍ଷାଶାସ୍ତ୍ରର କେଉଁ ସୂତ୍ର ଅବଲମ୍ବନକରି ଆମେ ଏହାର ମୂଲ୍ୟାୟନ କରିବା ? ଏ ପ୍ରଶ୍ନର ଉତ୍ତର ଅତି ସହଜ । କବିର ଏ ଅନୁଭୂତି 'ସ୍ୱତଃସିଦ୍ଧ' ସ୍ୱୟଂବେଦ୍ୟ' ଏବଂ 'ସ୍ୱୟଂ ପ୍ରକାଶ' । ଯୁକ୍ତିତର୍କ ଅଥବା ନ୍ୟାୟଶାସ୍ତ୍ର ଅବଲମ୍ବନରେ ଏହି ଅନୁଭୂତିକୁ ବିଶ୍ଳେଷଣକରିବା ଅସମ୍ଭବ, ସମୀକ୍ଷାର ସୂତ୍ର ଏଠାରେ ପରାଜୟ ସ୍ୱୀକାର କରେ । ଏହା ସକଳ ପ୍ରକାର ପ୍ରମାଣ-ପଞ୍ଜିକାର ଊର୍ଦ୍ଧ୍ୱରେ । ଡକ୍ଟର ରାଧାକୃଷ୍ଣଙ୍କ ଭାଷାରେ "This experience is its own cause and explanation ।" ପାଠକ ମନରେ ଏ କବିତା ଯେଉଁ ରସସଞ୍ଚାର କରିଛି, ଯେଉଁ ଧାରଣା ଓ ଭାବନାର ଉଦ୍ରେକ କରିଛି, ନିରପେକ୍ଷ-ଭାବରେ ସେତିକ ବ୍ୟକ୍ତ କରିବାରେ ହିଁ ସମୀକ୍ଷକର କର୍ତ୍ତବ୍ୟ ସୀମାବଦ୍ଧ । ଅଧ୍ୟାତ୍ମ-ବୋଧ ଓ ଦେଶାତ୍ମବୋଧର ଉଦ୍ଦୀପନା ସଞ୍ଚାରରେ ହିଁ ଏହାର ଚିରନ୍ତନ ସାହିତ୍ୟିକ ମୂଲ୍ୟର ସନ୍ଧାନ କରିବାକୁହେବ ।

## ଷଷ୍ଠ ପରିଚ୍ଛେଦ

## ବନ୍ଦୀର ଆତ୍ମକଥା

### ଜଗନ୍ନାଥ ସାନ୍ନିଧ୍ୟ

'ବନ୍ଦୀର ଆତ୍ମକଥା' ହିଁ ଗୋପବନ୍ଧୁଙ୍କର ଜୀବନଲିପି । ଅବଶ୍ୟ ଗୋପବନ୍ଧୁଙ୍କ ଜୀବନର ନାନା ଘଟଣା ଯେଉଁମାନେ ଏଥିରେ ଦେଖିବାର ଅଭିପ୍ରାୟ ପୋଷଣକରନ୍ତି, ସେମାନେ ନିରାଶ ହେବେ; କିନ୍ତୁ ତାଙ୍କ ଜୀବନର ଯାହା ସାରସତ୍ତ୍ୱ, ଜୀବନର ଯାହା ପ୍ରତ୍ୟକ୍ଷ ଅନୁଭୂତି, ଯେଉଁ ଜୀବନାଦର୍ଶକୁ ବାସ୍ତବ କର୍ମରେ ରୂପାୟିତ କରିବା ନିମନ୍ତେ ସେ କୌଣସି କଷ୍ଟକୁ କଷ୍ଟବୋଲି ମନେ କରୁ ନ ଥିଲେ, ଯେଉଁ ବିଶାଳ ମାନବିକତାବାଦ ତାଙ୍କୁ ଦେଶର ମୁକ୍ତି-ଯଜ୍ଞରେ ଆହୁତି ଦେବାକୁ ପ୍ରେରଣା ଦେଇଥିଲା ଏବଂ ଯେଉଁ ମନ୍ତ୍ର ତାଙ୍କୁ କର୍ମଯୋଗରେ ଉଦ୍‌ବୁଦ୍ଧ କରିଥିଲା, ପ୍ରାଣର ସେହି ମହାବାଣୀ 'ବନ୍ଦୀର ଆତ୍ମକଥା'ରେ ସରଳ ଓ ଜୀବନ୍ତ ଭାବରେ ପ୍ରକଟିତ । 'କାରା-କବିତା'ର ବିରହ-ବେଦନା 'ବନ୍ଦୀର ଆତ୍ମକଥା'ରେ ନାହିଁ । ବନ୍ଧୁ-ବିୟୋଗରେ କବି ଏଠାରେ ଅଶ୍ରୁତର୍ପଣ କରିନାହାନ୍ତି । ସହକର୍ମୀଙ୍କ ବିଶ୍ୱାସ-ଘାତକତାରେ ଏଥିରେ କବିଙ୍କର ମର୍ମନ୍ତୁଦ ବେଦନାର ଅଶ୍ରୁ-ଧାର ନାହିଁ । କବି 'କାରା-କବିତା'ରେ ସମୟେ ସମୟେ ବଡ଼ ବିଷାଦ-ବାଦୀ ହୋଇପଡ଼ିଛନ୍ତି; କିନ୍ତୁ 'ବନ୍ଦୀର ଆତ୍ମକଥା'ରେ କବିଙ୍କର ଲେଖନୀ ବୀର୍ଯ୍ୟଶାଳିନୀ । କବି ଏଠାରେ ଜଣେ ସଂଗ୍ରାମୀ ବୀର, ଏଥିରେ ଅହିଂସା-ମୁକ୍ତି ପାଇଁ ଦେଶବାସୀଙ୍କୁ ଆହ୍ୱାନ କରାଯାଇଅଛି । ସ୍ୱାଧୀନତା-ସଂଗ୍ରାମରେ ପ୍ରାଣ ଉତ୍ସର୍ଗକରିବାକୁ ଦେଶବାସୀଙ୍କୁ ଉଦ୍‌ବୋଧନ ଦିଆଯାଇଅଛି । 'କାରା-କବିତା' ପରି 'ବନ୍ଦୀର ଆତ୍ମକଥା'ରେ କବିଙ୍କର ଗଭୀର ଦେଶାତ୍ମବୋଧ ପରିସ୍ଫୁଟ । 'କାରା-କବିତା'ର 'ସ୍ୱଦେଶଚିନ୍ତା'ରେ କବି ସ୍ମୃତି-ଚାରଣ କରିଅଛନ୍ତି ଏବଂ କଳ୍ପନାରେ ଜନ୍ମଭୂମିର ଅତୀତ ମହିମା ପ୍ରତି ସଚେତନ ହୋଇ-ଅଛନ୍ତି । ଉତ୍କଳର ନାନା ପବିତ୍ର ଓ ଐତିହାସିକ ସ୍ଥାନର ମଧୁମୟ ସ୍ମୃତି କାରାଗାରର ନିର୍ଜନ ପ୍ରକୋଷ୍ଠ ମଧ୍ୟରେ କେତେବେଳେ ତାଙ୍କ ଚିତ୍ତକୁ ନୈରାଶ୍ୟରେ ବ୍ୟଥାକ୍ରାନ୍ତ କରିଛି, କେତେବେଳେ ଅବା ସେ ଅନ୍ଧକାରମୟ ପ୍ରକୋଷ୍ଠ ମଧ୍ୟରେ ତାଙ୍କ ପ୍ରାଣରେ ଆଣିଦେଇଛି ସ୍ନିଗ୍ଧ ଆଶ୍ୱାସନାର ଶାନ୍ତିପୂର୍ଣ୍ଣ ବାଣୀ । ସେ ସୁଖ ଓ ଦୁଃଖକୁ ସମାନ ଦୃଷ୍ଟିରେ ଦେଖିଅଛନ୍ତି; କିନ୍ତୁ 'ବନ୍ଦୀର ଆତ୍ମକଥା'ରେ ମନୁଷ୍ୟ ହିଁ ପ୍ରଧାନ ସ୍ଥାନ ଲାଭକରିଛି । ଏଥିରେ ଅବୋଧ ଅନୁଭୂତିର ବ୍ୟଞ୍ଜନା ନାହିଁ, କି କଳ୍ପନାର ସୁକୁମାର ବିଳାସ ନାହିଁ । ଏଥିରେ ଦେଖିବାକୁ ମିଳେ, ଗୋପବନ୍ଧୁଙ୍କ ବାସ୍ତବ

କର୍ମପ୍ରବୃତ୍ତ ଜୀବନର ଅକପଟ ଅଭିବ୍ୟକ୍ତି । 'ବନ୍ଦୀର ଆତ୍ମକଥା' ଓଡ଼ିଶାର ତତ୍‌କାଳୀନ ରାଜନୈତିକ ଓ ସାମାଜିକ ଜୀବନର ପ୍ରକଟ ଛବି । ବିଭିନ୍ନ ସ୍ଥାନର ଦୁଃଖ ଦୈନ୍ୟ-ପ୍ରପୀଡ଼ିତ ଲୋକମାନଙ୍କ ଦୁର୍ବିସହ ନର୍ଯ୍ୟାତନାର ଏ ଏକ ଜୀବନ୍ତ ଇତିହାସ । ଏଥିରେ କେବଳ ଅହିଂସାତ୍ମକ ଅସହଯୋଗ ଆନ୍ଦୋଳନର ବିବରଣ କିମ୍ବା ବାର୍ତ୍ତା ନାହିଁ । ଏହି ଆନ୍ଦୋଳନର ପଶ୍ଚାତ୍ତରେ ତାଙ୍କର ଯେଉଁ ଗଭୀର ଆଧ୍ୟାତ୍ମିକ ଚେତନା ପ୍ରତିଷ୍ଠିତ, ତାହାର ସୁନ୍ଦର ବିଶ୍ଳେଷଣ ଅଛି । ଏଥିରେ ନେତାର ଗୁରୁଗମ୍ଭୀର ଉପଦେଶ ନାହିଁ, ଦେଶର ଅବହେଳିତ ଓ ଅତ୍ୟାଚରିତ ଲୋକଙ୍କ ଦୁଃଖ ଦୁର୍ବିପାକରେ ନିଜକୁ ଏକା କରିଦେଇଥିବା ଏକ ମହାନ୍ ତ୍ୟାଗପୂତ ଜୀବନର ବିନମ୍ର ଆବେଦନ ଅଛି । ଏଥିରେ କେହି 'ନେତା' ନାହାନ୍ତି, ସମସ୍ତେ 'ମିତ' । ନେତା କେବଳ ସ୍ୱୟଂ ଜଗନ୍ନାଥ । ତେଣୁ ମନେହୁଏ, 'ବନ୍ଦୀର ଆତ୍ମକଥା'ହିଁ ଓଡ଼ିଶାର ବାସ୍ତବଧର୍ମୀ, ପ୍ରଗତିଶୀଳ ଓ ରାଜନୈତିକ ସାହିତ୍ୟରେ ପ୍ରଥମ ବଳିଷ୍ଠ ପଦକ୍ଷେପ । କେହିକେହି ମଧ୍ୟ ବନ୍ଦୀର ଆତ୍ମକଥାକୁ 'ଗୋପବନ୍ଧୁ-ଉପନିଷଦ୍' ଆଖ୍ୟା ଦେଇସାରିଲେଣି ।

'ବନ୍ଦୀର ଆତ୍ମକଥା'ରେ ମହାତ୍ମାଗାନ୍ଧିଙ୍କ ପ୍ରବର୍ତ୍ତିତ ଅସହଯୋଗ ଆନ୍ଦୋଳନର ଯେଉଁ ଚିତ୍ର ଦିଆଯାଇଛି, କିମ୍ବା ଦେଶର ସ୍ୱାଧୀନତା ସଙ୍ଗରେ ଜୀବନକୁ ଆହୁତି ଦେବାସକାଶେ ଯେଉଁ ପ୍ରେରଣାର ବାଣୀ ଏଥିରେ ଅଛି, ସେ ପ୍ରେରଣା ଗୋପବନ୍ଧୁଙ୍କର ଗାନ୍ଧିଙ୍କ ପ୍ରଭାବରେ ଆସିଛି, କହିଲେ ସତ୍ୟର ଅପଲାପ ହେବ । ଇଂରେଜ ସରକାର ସହିତ ଅସହଯୋଗ କରିବାର ଚିନ୍ତା ମହାତ୍ମାଜୀଙ୍କ ପ୍ରବର୍ତ୍ତିତ ଅସହଯୋଗ ଆନ୍ଦୋଳନପୂର୍ବରୁ ଏକ ଆଧ୍ୟାତ୍ମିକ ଚେତନାରୂପେ ଗୋପବନ୍ଧୁଙ୍କ ହୃଦୟରେ ପ୍ରତିଷ୍ଠିତ ହୋଇଥିଲା । ବିଦେଶୀ ଅମଲାତନ୍ତ୍ର ସରକାରର କାର୍ଯ୍ୟକଳାପରେ ତାଙ୍କର ସବୁବେଳେ ସନ୍ଦେହ ଓ ଅବିଶ୍ୱାସ ଥାଏ । ତେଣୁ ସତ୍ୟବାଦୀ ବିଦ୍ୟାଳୟ ନିମନ୍ତେ ସେ ସରକାରଙ୍କଠାରୁ ଆର୍ଥିକ ସାହାଯ୍ୟ ଗ୍ରହଣ କରି ନ ଥିଲେ । ସେ ଭାବୁଥିଲେ, ଏହି ହୃଦୟହୀନ ସରକାରଠାରୁ ଆର୍ଥିକ ସାହାଯ୍ୟ ନେଲେ, ତାଙ୍କର ଶାସନକଳଦ୍ୱାରା ପଦେପଦେ ନିୟନ୍ତ୍ରିତ ହେବାକୁ ପଡ଼ିବ । ଶିକ୍ଷା-ନୀତିର ନିୟନ୍ତ୍ରଣରେ ତାଙ୍କର କୌଣସି ସ୍ୱାଧୀନତା ରହିବନାହିଁ । ସ୍କୁଲ କେବଳ ଗୋଟିଏ ଗୋଲାମ ତିଆରି କାରଖାନାରେ ପରିଣତ ହେବ । ୧୯୧୯ ମସୀହାରେ ପୁରୀଜିଲାରେ ଉତ୍ତର ଅଞ୍ଚଳରେ ଯେଉଁ ଘୋର ଦୁର୍ଭିକ୍ଷ ହୋଇଥିଲା, ସରକାର ସେ ଦୁର୍ଭିକ୍ଷ ପ୍ରକାଶ୍ୟରେ ଘୋଷଣା କରନ୍ତୁ ବୋଲି ସେ କେତେ ଚେଷ୍ଟା କରି ନ ଥିଲେ । ତଥାପି ସରକାରଙ୍କପକ୍ଷରୁ ଦୁର୍ଭିକ୍ଷ ଘୋଷଣା କରାଗଲାନାହିଁ । ବରଂ କୁହାଗଲା ଗୋପବନ୍ଧୁ 'ମିଥ୍ୟାବାଦୀ' । ଗୋପବନ୍ଧୁ ସେତେବେଳେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟ ଥିଲେ । ଏଣେ ଲୋକମାନେ ଅନାହାରରେ

ଯୋଗଦେଇଛନ୍ତି ପରି ଚଳି ପଡ଼ୁଥାନ୍ତି । ସେତେବେଳେ ସେ ଉଦ୍ଦୀପ୍ତ କଣ୍ଠରେ ବ୍ୟବସ୍ଥାପକ ସଭାରେ କହିଥିଲେ, ଏ ପ୍ରଦେଶର କୌଣସି ନିର୍ଜନ କୋଣରେ ଯଦି କୌଣସି ସାମାନ୍ୟ ଲୋକ ଖାଇବା ବିନା ମରଯାଏ, ତେବେ ତା ସକାଶେ ପାପ ସରକାରଙ୍କ. ଏବଂ ତାହିଁ ସଙ୍ଗେ ସଙ୍ଗେ ଏ କଥାର ମଧ୍ୟ ସୂଚନା ଦେଇଥିଲେ ଯେ ଏପରି ନିର୍ମମ ସରକାରଙ୍କ ସହିତ ଅସହଯୋଗହିଁ ଏକମାତ୍ର ଅବ୍ୟର୍ଥ ପନ୍ଥା ।" ଯେ ପାପୀ. ତା'ଠାରୁ ଦୂରରେ ରହିବାହିଁ ଶ୍ରେୟସ୍କର, ଏହି ନୀତି କିମ୍ବା ଧର୍ମବୋଧ ହିଁ ସେ ଦିନ ତାଙ୍କୁ ପ୍ରେରଣା ଦେଇଥିଲା ଇଂରେଜ ସରକାର ସହିତ ଅସହଯୋଗ କରିବାକୁ ଓ ଅମଳତନ୍ତ୍ର ସରକାର ସହିତ ସକଳ ସମ୍ପର୍କ ଛିନ୍ନକରିବାକୁ ।

ଅସହଯୋଗ-ଆନ୍ଦୋଳନର ଲକ୍ଷ୍ୟଥିଲା ସ୍ୱରାଜ୍ୟ ପ୍ରାପ୍ତି । ମହାତ୍ମାଗାନ୍ଧିଙ୍କର ଏ ଆନ୍ଦୋଳନ ଅହିଂସା ଓ ସତ୍ୟ ଉପରେ ପ୍ରତିଷ୍ଠିତ ଥିଲା । ଏହି ବ୍ୟାପକ ରାଜନୈତିକ ଆନ୍ଦୋଳନକୁ ଗାନ୍ଧିଜୀ ଧର୍ମଉପରେ ପ୍ରତିଷ୍ଠିତ କରିଥିଲେ । ସତ୍ୟ, ପ୍ରେମ, ଆତ୍ମତ୍ୟାଗ ଓ ତିତିକ୍ଷା ଥିଲା ଏ ଆନ୍ଦୋଳନର ମୂଳମନ୍ତ୍ର । ଏହି ଆନ୍ଦୋଳନରେ ଯୋଗଦେଇଥିବା ଲୋକଙ୍କୁ ଗାନ୍ଧିଜୀ ଉଦ୍‌ବୋଧନ ଦେଇ କହୁଥିଲେ, 'ଇଂରେଜ ସରକାରକୁ ଏ ଦେଶରୁ ହଟାଇବାକୁ ଚେଷ୍ଟାକର; କିନ୍ତୁ ବ୍ୟକ୍ତିଗତଭାବେ କୌଣସି ଇଂରେଜ ଲୋକଙ୍କ ପ୍ରତି ଘୃଣାପ୍ରକାଶ କରନାହିଁ ।" ଏହି ନୀତିର ବ୍ୟତିକ୍ରମ ଦେଖିଲେ ଗାନ୍ଧିଜୀ ପାପର ପ୍ରାୟଶ୍ଚିତ୍ତ କିମ୍ବା ଆତ୍ମଶୁଦ୍ଧି ନିମନ୍ତେ ଆମରଣ ଅନଶନ କରୁଥିଲେ । ମହାତ୍ମାଗାନ୍ଧିଙ୍କ ପରି ଗୋପବନ୍ଧୁ ମଧ୍ୟ ଭାବୁଥିଲେ ଏହି ଜାତୀୟ ଭାବ କିମ୍ବା ଶକ୍ତି ଗୋଟିଏ 'ଈଶ୍ୱରଦତ୍ତ' ଭାବ । ଭାରତ ଜାତୀୟ-ଆନ୍ଦୋଳନ ସମ୍ବନ୍ଧରେ ସେ ଥରେ ଲେଖିଥିଲେ, "ଜାତୀୟ ଶକ୍ତି ଗୋଟିଏ ପ୍ରେରଣା । ଏହା ଗୋଟିଏ ଈଶ୍ୱରଦତ୍ତ ଭାବ, ଏଥିରେ ହିସାବ କିତାବ ନାହିଁ । ପ୍ରାଣରେ ଭାବ ଆସିଲେ ଆତ୍ମଶାସନବଳରେ ସମସ୍ତ ବନ୍ଧନ ଛିଣ୍ଡାଇଦେବାକୁ ହେବ । ପରାଧୀନଭାବ ଦାସତ୍ୱ, ସ୍ୱାଧୀନଭାବ ବିଭୁତ୍ୱ । ସ୍ୱାଧୀନତାର ଭାବରେ ସାକ୍ଷାତ୍ ଭଗବାନଙ୍କୁ ଆଗରେ ଦେଖି, ତାଙ୍କର ସତ୍ତା ଅନୁଭବ କରିବାକୁ ହେବ । ତାଙ୍କର ଆହ୍ୱାନ ଶୁଣିବାକୁ ହେବ। ସ୍ୱାଧୀନତା ବାହାରେ ନାହିଁ । ଏହା ଆତ୍ମାରେ ପ୍ରତିଷ୍ଠିତ । ଆତ୍ମ-ଶାସନ ହିଁ ଏହାର ସାଧନା । ତିତିକ୍ଷା ହିଁ ଏହାର ମୂଳମନ୍ତ୍ର । ଏ ଭାବ ବିଭୁକୃପାରେ ଥରେ ଜାଗିଲେ ଆଉ ଯନ୍ତ୍ରଣାର ଭୟ ରହେନାହିଁ, ଦୁର୍ବଳର ବଳ ଆସେ, ନିରକ୍ଷର ବାବଦୂକ ହୁଏ,' ହୃଦୟଗ୍ରନ୍ଥି ଭିନ୍ନ ହୁଏ, ସଂଶୟ ଛିନ୍ନ ହୁଏ ।"

ଏହି ସ୍ୱାଧୀନତାର ଭାବ କେବଳ କିପରି ବିଭୁକୃପାରେ ଜାଗି ଉଠେ, ତାହାର ଗୋଟିଏ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରାଯାଇପାରେ । ୧୯୨୦ ମସିହା

ସେପ୍‌ଟେମ୍ବର ମାସରେ କଲିକତାଠାରେ କଂଗ୍ରେସର ଯେଉଁ ସ୍ୱତନ୍ତ୍ର ଅଧିବେଶନ ହୋଇଥିଲା, ସେଥିରେ ସଭାପତି ହୋଇଥିଲେ, ସ୍ୱର୍ଗତ ଭାରତ-କେଶରୀ ଲାଲା ଲଜପତ ରାୟ । କଂଗ୍ରେସର ଇତିହାସରେ ଏହି ଅଧିବେଶନ ଅତ୍ୟନ୍ତ ତାତ୍ପର୍ଯ୍ୟ-ପୂର୍ଣ୍ଣ । ଏଠାରେ ମହାତ୍ମାଗାନ୍ଧି ତାଙ୍କର ଅସହଯୋଗ-ଆନ୍ଦୋଳନ ପ୍ରସ୍ତାବ ଉପସ୍ଥାପିତ କରିଥିଲେ । ଗୋପବନ୍ଧୁ ଏହି କଂଗ୍ରେସରେ ଯୋଗଦେବାକୁ ଯାଇଥାନ୍ତି । ସେଠାରୁ ଫେରି ସତ୍ୟବାଦୀରେ ତାଙ୍କର ଅନ୍ୟତମ ସହକର୍ମୀ, ବର୍ତ୍ତମାନର ଅଗ୍ରଣୀ ହରିହର ଦାସଙ୍କୁ କହିଲେ, "କଲିକତାର କଂଗ୍ରେସ ଅଧିବେଶନ ମୋତେ ଶ୍ରୀକ୍ଷେତ୍ରପରି ଲାଗିଲା । ସେଠାରେ ମଧ୍ୟ ମୁଁ ତ୍ରିମୂର୍ତ୍ତି ଦର୍ଶନ କଲି—ଏହି ତ୍ରିମୂର୍ତ୍ତି ହେଉଛନ୍ତି, ସଭାପତି ଲାଲା ଲଜପତ୍ ରାୟ, ମହାତ୍ମା ଗାନ୍ଧି ଏବଂ ଭଗିନୀ ଆନିବେଶାନ୍ତ । ମୋତେ ମନେହେଲା ଏ ତ୍ରିମୂର୍ତ୍ତି ଯେପରି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା । ଲଜପତ୍ ରାୟ ଜଗନ୍ନାଥ, କାରଣ ସେ ଶ୍ୟାମଳବର୍ଣ୍ଣ ଏବଂ କଂଗ୍ରେସ ଅଧିବେଶନର ପୁରୋଧା, ମହାତ୍ମାଗାନ୍ଧି ବଳରାମ, କାରଣ ସେ ଗୌରବର୍ଣ୍ଣ ଏବଂ ଶ୍ରୀମତୀ ବେଶାନ୍ତ ସୁଭଦ୍ରା, ଏବଂ ଏହି ତିନମୂର୍ତ୍ତିଙ୍କର ସମାବେଶରେ ଭାରତର ସ୍ୱରାଜଲାଭ ସୁନିଶ୍ଚିତ ।"

ଏହି ଜଗନ୍ନାଥ ଚେତନାରେ ସେ ଓଡ଼ିଶାର ନାନା ଉନ୍ନୟନ ଓ ସଗଠନ କାର୍ଯ୍ୟକୁ ଅସମାପ୍ତ ଅବସ୍ଥାରେ ରଖି ଏବଂ ନିଜର ପ୍ରିୟତମ ଶିକ୍ଷାନୁଷ୍ଠାନକୁ ବଳି ଦେଇ ଅସହଯୋଗ-ଆନ୍ଦୋଳନରେ ଯୋଗଦେଲେ । ପରାଧୀନତାର ଶୃଙ୍ଖଳରୁ ଦେଶକୁ ମୁକ୍ତକରିବା ନିମନ୍ତେ ଗ୍ରାମେ ଗ୍ରାମେ ବୁଲି ସ୍ୱାଧୀନତାର ବାର୍ତ୍ତା ପ୍ରଚାର କଲେ । ଇଂରେଜ ସରକାରଙ୍କ ବକ୍ରଦୃଷ୍ଟିରେ ପଡ଼ି ବହୁଭାବରେ ନିର୍ଯ୍ୟାତିତ ହେଲେ । ୧୪୪ ଧାରା ଜାରି କରାଯାଇ ତାଙ୍କର ମୁଖ ବନ୍ଦ କରିଦେବାକୁ ଚେଷ୍ଟା କରାଗଲା । ପୁଲିସ ତାଙ୍କ ବିରୁଦ୍ଧରେ ମାନହାନି ମକଦ୍ଦମା ଆଗତକରି ଏ ବାଟରେ ତାଙ୍କର ସକଳ ଚେଷ୍ଟା ପଣ୍ଡ କରିଦେବାକୁ ପ୍ରସ୍ତୁତ ହେଲା । ଅନ୍ଧାରେ ଦଉଡ଼ି ବାନ୍ଧି ତାଙ୍କୁ ରାସ୍ତାରେ ଘୋଷାରି ଘୋଷାରି ନିଆଗଲା । ଶେଷରେ ୧୯୨୧ ମସିହା ମେ ମାସରେ ସମଗ୍ର ଭାରତରେ କଂଗ୍ରେସ ଅନୁଷ୍ଠାନମାନଙ୍କୁ ସରକାର ବେଆଇନ୍ ଘୋଷଣା କରିବାରୁ ଉତ୍କଳପ୍ରାଦେଶିକ କଂଗ୍ରେସକମିଟିର ସଭାପତିରୂପେ ଫୌଜଦାରୀ ଆଇନର ୧୭ ଦଫା ଅନୁସାରେ ତାଙ୍କୁ ଗିରଫ କରାଗଲା, ଏବଂ ବିଚାରରେ ଦୁଇବର୍ଷ କାରାଦାଣ୍ଡ ମିଳିଲା ।

ଏ କଠିନ ଦଣ୍ଡ ଓ ସ୍ୱଦେଶରୁ ଦୀର୍ଘ ନିର୍ବାସନକୁ ସେ ବିଧାତାର ମଙ୍ଗଳମୟ ଆଶୀର୍ବାଦରୂପେ ଗ୍ରହଣ କରିଥିଲେ । ସେ ଯେଉଁଠାରେ ଥିଲେ ସୁଦ୍ଧା ଜଗନ୍ନାଥଙ୍କ ନୀଳଚକ୍ର ତଳେ ଅଛନ୍ତି ବୋଲି ମନେକରି ଆଶ୍ୱାସନା ଲଭୁଥିଲେ । ଅସହଯୋଗ-ଆନ୍ଦୋଳନରୂପକ ନନ୍ଦିଘୋଷ ରଥ ନିଷ୍ଟସ୍ଥ ହେଲେ ନାନା ବାଧା ବିଘ୍ନ

ଅଚିରେ ଜାତି ସ୍ୱାଧୀନତାର ସିଂହଦ୍ୱାରରେ ଉପନୀତ ହେବ, ଏହା କେବଳ ତାଙ୍କର ଆଶା କି ବିଶ୍ୱାସ ନ ଥିଲା; ଥିଲା ଏକ ଅବିଚଳିତ ଓ ଏକାନ୍ତ ଧର୍ମବିଶ୍ୱାସ । 'କରି କରାଉଥାଏ ମୁହିଁ, ମୋ ବିନୁ ଅନ୍ୟ ଗତି ନାହିଁ ।' ଏହି ଭାଗବତ ବାଣୀ ଥିଲା ତାଙ୍କ ଜୀବନ-ସାଧନାର ଅମୋଘ ମନ୍ତ୍ର । ସ୍ୱରାଜ୍ୟ-ଲାଭନିମନ୍ତେ ଏହି ରାଜନୈତିକ ଆନ୍ଦୋଳନକୁ ସେ ଗୋଟିଏ 'ଧର୍ମନାବ' ରୂପେ ଚିନ୍ତା କରିଅଛନ୍ତି । ତାଙ୍କ ଅନୁପସ୍ଥିତିରେ ଏହି ଆନ୍ଦୋଳନର ଗତି ଯେ ପୂର୍ବପରି ଉତ୍କଳରେ ଅବ୍ୟାହତ ରହିବ, ଏଥିରେ ତାଙ୍କର ଲବ ମାତ୍ର ସନ୍ଦେହ ନାହିଁ । ତେଣୁ ଦେଶବାସୀଙ୍କୁ ଉତ୍ସାହିତ କରିବାନିମନ୍ତେ ସେ ଲେଖିଅଛନ୍ତି—

'କର କି ଭାବନା କାଣ୍ଡାରି ବିହୁନେ
ଚାଲିବ ସ୍ୱରାଜ-ବୋଇତ କେସନେ ?
ନ ଅଟକେ କର୍ମ ନେତାର ଅଭାବେ
ଧର୍ମ-ନାବ ଚଳେ ଧର୍ମର ପ୍ରଭାବେ
ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ,
ଉତ୍କଳର ନେତା ନିଜେ ନାରାୟଣ ।'

ଏହି ନାରାୟଣ ଗୋପବନ୍ଧୁଙ୍କ ଦୃଷ୍ଟିରେ ଆଉ କିଏ ନୁହନ୍ତି ନୀଳାଚଳ-ବାସୀ ସ୍ୱୟଂ ଜଗନ୍ନାଥ । କାଞ୍ଚି-କାବେରୀ-କାହାଣୀର ସତ୍ୟତାରେ ଗୋପବନ୍ଧୁଙ୍କର ସନ୍ଦେହ ନାହିଁ । 'ପ୍ରଭୁ ନୀଳାଦ୍ରି ନାୟକ' ଯେ ଥରେ କାଞ୍ଚି ରାଜାଙ୍କ ସହିତ ଉତ୍କଳର ପ୍ରଧାନ ସେନାପତିରୂପେ ଯୁଦ୍ଧକରିବାକୁ ଯାଇଥିଲେ, ଏହା କଳ୍ପନାର କଥା ନୁହେଁ । ତାଙ୍କ ମତରେ ଏହା ନିରାଟ ସତ୍ୟ କଥା ଏବଂ ସେହି ନୀଳାଚଳନାଥଙ୍କ ସେନାପତିତ୍ୱରେ ହିଁ ଓଡ଼ିଶାର ଗଜପତି ପୁରୁଷୋତ୍ତମ ଦେବ କାଞ୍ଚିରାଜାଙ୍କୁ ପରାସ୍ତ କରିଥିଲେ, ଏହା ତାଙ୍କ ଦୃଷ୍ଟିରେ ଏକ ଐତିହାସିକ ସତ୍ୟ । ଯେଉଁ ଜାତିର ଏପରି ମହାନ୍ ଐତିହ୍ୟ ଓ ଗୌରବପୂର୍ଣ୍ଣ ପରମ୍ପରା ଅଛି, ନେତାର ଅଭାବରେ ସେ ମ୍ରିୟମାଣ ହେବ କାହିଁକି ? ତେଣୁ ତାଙ୍କର ନିର୍ଭୀକ ବାଣୀ:—

'କର୍ମଭୂମେ କିଏ ନେତା ଅବା ମିତ
ସରବେ ନିମିତ୍ତ ବିଧି-ନିୟୋଜିତ ?'

ଗୋପବନ୍ଧୁ ନେତା ଓ ମିତ ମଧ୍ୟରେ କୌଣସି ପ୍ରଭେଦ ଦେଖୁ ନ ଥିଲେ । ନେତୃତ୍ୱର ଅହଂକାର ତାଙ୍କଠାରେ ନ ଥିଲା । ଜନତା-ଜନାର୍ଦ୍ଦନର ସେ ଥିଲେ ଏକନିଷ୍ଠ ପୂଜାରୀ, ଦେଶର ହିତସାଧନ ସକାଶେ ସେମାନଙ୍କ ପାଦ-

ତିଲେ ସେ ସେପରି ନିଜ ଜୀବନକୁ ଉତ୍ସର୍ଗ କରିଦେଇଥିଲେ । ତେଣୁ ତାଙ୍କ ପ୍ରତି ଲୋକଙ୍କର ଥିଲା ଅସୀମ ମମତା, ଶ୍ରଦ୍ଧା, ଭକ୍ତି ଓ ସମ୍ମାନ ।

ନୀଳାଚଳ ପୁଣି ସର୍ବ ଧର୍ମ ସମନ୍ୱୟର ପୀଠସ୍ଥଳୀ । ସାମ୍ୟ, ମୈତ୍ରୀ ଓ ମୁକ୍ତିର ପୁଣ୍ୟତୀର୍ଥ । ଏଠାରେ ଉଚ୍ଚନୀଚ ଭେଦଭାବର ଅହଙ୍କାର ନାହିଁ । ପୁଣି ଉତ୍କଳର ଖଣ୍ଡଗିରି ଯୁଗ ଯୁଗ ଧରି ଅହିଂସା-ମନ୍ତ୍ରର ବିଜୟ ଘୋଷଣା କରିଆସିଛି । ଅସହଯୋଗ ଆନ୍ଦୋଳନ ଆଜି ସେହି ଅହିଂସା, ସାମ୍ୟ ଓ ମୈତ୍ରୀର ବିଜୟ-ଗୌରବ ଉଦ୍‌ଘୋଷିତ କରୁଛି । ଅସହଯୋଗ-ଆନ୍ଦୋଳନର ପ୍ରତିଷ୍ଠା ଓ ପ୍ରଚାର ପାଇଁ ଉତ୍କଳ ଗୋଟିଏ ପ୍ରଶସ୍ତ ସ୍ଥଳୀ । ତେଣୁ ନେତାର ଅଭାବରେ ଏ କାର୍ଯ୍ୟ ଅପୂର୍ଣ୍ଣ ରହିବ ନାହିଁ । ସତ୍ୟ, ପ୍ରେମ ଓ ଅହିଂସାରେ ଦୃଢ଼ ବିଶ୍ୱାସ ଥିଲେ :—

“ନୀଳାଚଳ ନାଥ ପ୍ରଭୁ ଶ୍ରୀନିବାସ
ପୂରାଇବେ ଆଶା ରଖ ଏ ବିଶ୍ୱାସ ।”

ଜଗନ୍ନାଥଙ୍କ ସାନ୍ନିଧ୍ୟ ଏବଂ ଜଗନ୍ନାଥ ଚେତନା ତାଙ୍କୁ କେବଳ ଜଣେ ଉତ୍କଳୀୟ କରି ରଖି ନ ଥିଲା, ତାଙ୍କୁ ଆଦ୍ୟ ଯୌବନରୁ ଉଦାର ମହାଭାରତୀୟ-ଭାବରେ ଉଦ୍‌ବୁଦ୍ଧ କରି ରଖିଥିଲା । ଅସହଯୋଗ-ଆନ୍ଦୋଳନରେ ଯୋଗଦେବା ପରେ ଏହି ମହାଭାରତୀୟତା ତାଙ୍କର ନବ ତେଜରେ ଶକ୍ତିମନ୍ତ ହୋଇ ଉଠିଥିଲା । ଭାରତରୁ ଉତ୍କଳ ସକଳ କ୍ଷେତ୍ରରେ ବିଚ୍ଛିନ୍ନ ରହି ଅତି ଦୟନୀୟ ଓ ଉପେକ୍ଷିତ ଅବସ୍ଥାରେ ଥିଲା । ଭାରତରେ ଉତ୍କଳ ଏକ ‘ମହାପୁଣ୍ୟଧାମ’ । ଭାରତ-ପାଞ୍ଜିରୁ ତା ନାମ ପୋଛି ଯାଇଥିଲା । ଭାରତ-ଜାତୀୟ କଂଗ୍ରେସରେ ଉତ୍କଳ ପାଇଁ ସ୍ୱତନ୍ତ୍ର ଆସନ ନ ଥିଲା; କିନ୍ତୁ ଏହି ଜଗନ୍ନାଥଙ୍କ ଅଲୌକିକ କୃପାରୁ ହିଁ ଅସହଯୋଗର ପବିତ୍ର ଜାହ୍ନବୀ-ସ୍ରୋତ ଉତ୍କଳରେ ପ୍ରବାହିତ ହେଲା ।

‘ଗାନ୍ଧି ଭଗୀରଥ ନିଜ ପୁଣ୍ୟବଳେ
ଆଣିଲେ ଅସଙ୍ଗ ଜାହ୍ନବୀ ଉତ୍କଳେ ।
ହିମାଚଳଠାରୁ ସୀମାଚଳ ଧରି
କୁମାରିକା ଯାଏ ଖେଳିଲା ଲହରୀ ।
ଉତ୍କଳେ ସେ ପୁଣ୍ୟ-ସ୍ରୋତ ଶତଧାରେ
ବହେ ପୁରପଲ୍ଲୀ କାନ୍ତାରେ ପ୍ରାନ୍ତରେ ।

× × ×

ସେ ଦଳରେ ମୁହିଁ ଅକିଞ୍ଚନ ଜଣେ
ମୋଡ଼ିଥିଲି ନାବ-ମଙ୍ଗ ପ୍ରାଣପଣେ ।
ସ୍ୱରାଜ୍ୟ-ବଇରୀ ଦଳ ହାତେ ପଡ଼ି
ମୋ ହାତେ ଲାଗିଛି ଏବେ ଲୁହା କଡ଼ି ।’

ବାସ୍ତବରେ ଗୋପବନ୍ଧୁ ହିଁ ଉତ୍କଳରେ ସ୍ୱରାଜ୍ୟ-ମନ୍ତ୍ରର ପ୍ରଥମ ବାର୍ତ୍ତାବହ, ଅସହଯୋଗ ଆନ୍ଦୋଳନର ପ୍ରଥମ ପୁରୋଧା ଓ ପ୍ରଚାରକ, ଭଗୀରଥଙ୍କ ପରି ସେ ଅସହଯୋଗ ଜାହ୍ନବୀକୁ ଉତ୍କଳ ଭୂମିର ଗ୍ରାମେ ଗ୍ରାମେ ପ୍ରବାହିତ କରାଇଥିଲେ । ଏହା ଇତିହାସର ସାକ୍ଷ୍ୟ; କିନ୍ତୁ ଶୁଦ୍ଧ ବୁଦ୍ଧ ବିନମ୍ର ଗୋପବନ୍ଧୁ ସେଥିପାଇଁ ଧରେ ହେଲେ ଗର୍ବ କିମ୍ବା ଦାମ୍ଭିକତା ପ୍ରଦର୍ଶନ ନ କରି ଅସହଯୋଗର ପବିତ୍ର ସରିତ୍ ଉତ୍କଳ ବକ୍ଷରେ ପ୍ରବାହିତ କରାଇ ସେଠାରେ ଯେ ମହାଭାରତୀୟ ଭାବର ସଞ୍ଚାର କଲେ, ସେଥିପାଇଁ ସେ ନିଜର କୃତିତ୍ୱକୁ ବଳ୍ପ-ପ୍ରୀତି ଓ ଆତ୍ମ-ପ୍ରସାରରେ ମ୍ଳାନ କରିଦେଇ ଜଗନ୍ନାଥଙ୍କ କରୁଣା ଉପରେ ତାହା ଆରୋପ କରି ପରମ ପରିତୃପ୍ତି ଲାଭ କରିଅଛନ୍ତି । ଜଗନ୍ନାଥଧାମ ପୁରୀକୁ ସେ ଉତ୍କଳର ସଙ୍କୀର୍ଣ୍ଣ ଗଣ୍ଡୀ ମଧ୍ୟରେ ଆବଦ୍ଧ କରି ରଖିନାହାନ୍ତି । ନୀଳାଚଳ ହିଁ ଭାରତ, ଏବଂ ଭାରତ ହିଁ ନୀଳାଚଳ, ଏହି ମହାଭାବର ପ୍ରେରଣାର ଉତ୍ସ ସେହି ଜଗନ୍ନାଥ-ଚେତନା । ଯାହାର ଜଗତର ନାଥଙ୍କଠାରେ ଅବିଚଳ ବିଶ୍ୱାସ, ତାଠାରେ କ୍ଷୁଦ୍ରତା ଓ ତୁଚ୍ଛତାର ସଙ୍କୋଚ ରହିବା ଅସମ୍ଭବ । ତା' ପ୍ରତି ଭାରତର ପ୍ରତି ବୃକ୍ଷ କଳ୍ପବଟ । ପ୍ରତି ପଙ୍କିଳର କର୍ଦ୍ଦମ ଶ୍ରୀହରିଚନ୍ଦନ । ପ୍ରଭୁ ଜଗନ୍ନାଥ ସର୍ବତ୍ର ବିଦ୍ୟମାନ । ତେଣୁ ଉତ୍କଳରୁ ନିର୍ବାସିତ ହୋଇ ସୁଦୂର ହଜାରିବାଗ ଜେଲରେ ଆବଦ୍ଧହୋଇ ରହିବାରେ ତାଙ୍କର ଦୁଃଖ ନାହିଁ ।

'ଥିଲେ ସହିଁ ତହିଁ ଭାରତ ଶଯ୍ୟାରେ
ମଣିବ ମୁଁ ଅଛି ନୀଳଚକ୍ର ତଳେ ।
ପ୍ରଭୁ ଜଗନ୍ନାଥ ପତିତପାବନ
ଜୀବନେ ମରଣେ ତୁମ୍ଭେ ମୋ ଶରଣ ।'

ଗୋପବନ୍ଧୁ ଉତ୍କଳବାସୀଙ୍କୁ ମହାଭାରତୀୟ ଭାବରେ ଉଦ୍‌ବୁଦ୍ଧ କରିବା ନିମନ୍ତେ ଏବଂ ଭାରତ-ଜାତୀୟକଂଗ୍ରେସରେ ଉତ୍କଳପାଇଁ ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରିବା ଉଦ୍ଦେଶ୍ୟରେ ଯେଉଁ ପ୍ରଯତ୍ନ କରିଥିଲେ, ତାହାର ସାକ୍ଷ୍ୟ ତାଙ୍କର ଜଣେ ସହକର୍ମୀ ଏହିପରି ଭାବରେ ପ୍ରଦାନ କରିଅଛନ୍ତି :—

"୧୯୨୦ ମସିହା ଅଗଷ୍ଟ ୨୦ ତାରିଖରେ କଲିକତାରେ କଂଗ୍ରେସର ଯେଉଁ ବିଶେଷ ଅଧିବେଶନ ଅନୁଷ୍ଠିତ ହୋଇଥିଲା, ସେ ଅଧିବେଶନରେ ଓଡ଼ିଆଙ୍କର ସ୍ଥାନ ନ ଥିଲା । ସେତେବେଳେ ଅନ୍ୟ ପ୍ରଦେଶର ନେତାମାନଙ୍କଠାରେ ଗୋପବନ୍ଧୁ ସମ୍ପୂର୍ଣ୍ଣ ଅପରିଚିତ । ଓଡ଼ିଆମାନେ ଅବହେଳିତ । ନିଖିଳ ଭାରତ କଂଗ୍ରେସ କମିଟିରେ ଓଡ଼ିଶାର ସ୍ୱତନ୍ତ୍ର ସ୍ଥାନ ନ ଥିଲା । ଏ ଜାତୀୟ ଅପମାନ ଗୋପବନ୍ଧୁଙ୍କୁ

ସେଠାରେ ବଢ଼ି ବାଧିଲା । ସେହି ଅଧିବେଶନରେ କେତେକ ଓଡ଼ିଆ ପ୍ରତିନିଧିଙ୍କୁ ସେ କହିଥିଲେ, ଆଗାମୀ ଅଧିବେଶନରେ ଓଡ଼ିଶାପାଇଁ ଏକ ସ୍ୱତନ୍ତ୍ର ପ୍ରାଦେଶିକ କମିଟି ନ ହେଲେ ଓଡ଼ିଶା ନିଜକୁ ଠିକ୍ ବାହାରେ ପ୍ରକାଶ କରିପାରିବ ନାହିଁ କି ମହାଭାରତୀୟ କ୍ଷେତ୍ରରେ ନିଜର ଅବଦାନ କିଛି ଦେଇପାରିବନାହିଁ । ଆଗାମୀ ନାଗପୁର କଂଗ୍ରେସରେ ଯେ କୌଣସିମତେ ଓଡ଼ିଶାର ସ୍ୱତନ୍ତ୍ର ସ୍ଥାନ ବଜାଏ ରଖିବାକୁ ହେବ ।" ଯେପରି ଭାବନା ସେହିପରି କର୍ମ । ତାଙ୍କରି ଚେଷ୍ଟାରେ ନାଗପୁର ଅଧିବେଶନରେ କଂଗ୍ରେସ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶରୂପେ ଗ୍ରହଣ କଲା । ସେହି ବର୍ଷ ଚକ୍ରଧରପୁରରେ ହୋଇଥିବା ଉତ୍କଳ-ସମ୍ମିଳନୀ ଅଧିବେଶନରେ ଗୋପବନ୍ଧୁ ପ୍ରସ୍ତାବ କଲେ, ସମ୍ମିଳନୀ କଂଗ୍ରେସର ନୀତି ଗ୍ରହଣ କରୁ । ସେ ପ୍ରସ୍ତାବ ମଧ୍ୟ ଗୃହୀତ ହେଲା । ଗୋପବନ୍ଧୁଙ୍କର ବିଶ୍ୱାସ ଥିଲା, ଏହାଦ୍ୱାରା ଦେଶମିଶ୍ରଣ ଦାବୀ ଅଧିକ ଶକ୍ତିଶାଳୀ ହୋଇଉଠିବ ଏବଂ ଏହି ଉତ୍କଳୀୟ ସମସ୍ୟା ମହାଭାରତ-ସମସ୍ୟାରେ କଂଗ୍ରେସ ଜରିଆରେ ପରିଣତ ହୋଇପାରିବ । ୧୯୨୧ ମାର୍ଚ୍ଚମାସରେ ବେଜୱାଡ଼ାଠାରେ ବସିଥିବା ନିଖିଳ-ଭାରତ କଂଗ୍ରେସକମିଟିରେ ସାତଜଣ ଓଡ଼ିଆ ପ୍ରଥମଥରପାଇଁ ସ୍ଥାନ ପାଇଥିଲେ । ଗୋପବନ୍ଧୁ ସେତେବେଳେ ଗର୍ବ ଓ ଆନନ୍ଦ ଅନୁଭବ କରି କହିଥିଲେ, 'ଭାରତ ଜାତୀୟ ପାର୍ଲାମେଣ୍ଟରେ ଓଡ଼ିଶା ଏତେଦିନେ ସ୍ଥାନ ପାଇଲା, ଅନ୍ୟ କୋଡ଼ିଏଟି ପ୍ରଦେଶ ଏହାର ସ୍ୱାତନ୍ତ୍ର୍ୟ ସ୍ୱୀକାର କଲେ, ଏହାହିଁ ଜଣେ ସହକର୍ମୀ ଓ ପ୍ରତ୍ୟକ୍ଷଦର୍ଶୀଙ୍କର ବିବରଣୀ ଏବଂ ଏହାହିଁ ଗୋପବନ୍ଧୁଙ୍କ ମହାଭାରତୀୟ ଭାବର ଐତିହାସିକ ପ୍ରମାଣ । ଏହି ଦୃଷ୍ଟିରୁ ବିଚାର କଲେ, ଗୋପବନ୍ଧୁ ନବ୍ୟ ଉତ୍କଳର ପ୍ରତିଷ୍ଠାତା—ଏକ ନବଯୁଗର ପ୍ରବର୍ତ୍ତକ । ଏହି ନବଯୁଗର ସ୍ୱାକ୍ଷର ଛନ୍ଦେ ଛନ୍ଦେ ବହନକରୁଛି ତାଙ୍କର 'ବନ୍ଦୀର ଆତ୍ମକଥା'; କିନ୍ତୁ ଅନ୍ୟ କୌଣସି ନେତା ହୋଇଥିଲେ ଏଥିପାଇଁ କେତେ ଉଚ୍ଚତ ଆତ୍ମଶ୍ଳାଘା ପ୍ରକାଶ କରୁଥାନ୍ତା; କିନ୍ତୁ ନୀଳାଚଳନାଥଙ୍କର ଅପାର ମହିମା ଆଗରେ ତାଙ୍କ ବ୍ୟକ୍ତିତ୍ୱର ସ୍ଥାନ କେଉଁଠାରେ ? ମୂଲ୍ୟ ବା ତା'ର କେତେ ? କ୍ଷୁଦ୍ର ମନୁଷ୍ୟର ଶକ୍ତି ସୀମିତ । ଭଗବାନଙ୍କର କରୁଣା ନ ହେଲେ ତା ପକ୍ଷରେ ସିଦ୍ଧି ଅସମ୍ଭବ; କିନ୍ତୁ ଗୋପବନ୍ଧୁଙ୍କର ବିଶ୍ୱାସ, କଲ୍ୟାଣ କରୁଥିବା ଲୋକର ଦୁର୍ଗତି ନାହିଁ । "ନ ହି କଲ୍ୟାଣକୃତ୍ କଶ୍ଚିତ୍ ଦୁର୍ଗତିଂ ତାତ ଗଚ୍ଛତି ।"

( ୨ )

## ପରାଧୀନତା ଓ ସ୍ୱାଧୀନତା

'ବନ୍ଦୀର ଆତ୍ମକଥା'ରେ ପରାଧୀନତାର ଗ୍ଳାନି ଯେପରି ପ୍ରକଟିତ ସ୍ୱାଧୀନତାର ବହ୍ନି ସେହିପରି ପ୍ରଜ୍ୱଳିତ । ପରାଧୀନତାର 'ଦାହକ୍ଷ୍ମ' ଯେପରି କବିତ୍ୱରେ ଚିତ୍ରିତ,

ସ୍ୱାଧୀନତାର 'ବିଭୂତି' ମଧ୍ୟ ସେହିପରି ସ୍ପନ୍ଦନମୟୀ ଭାଷାରେ ଅଭିବ୍ୟକ୍ତ । ପରାଧୀନର ପ୍ରାଣରେ ସ୍ୱାଧୀନତାର ଅଗ୍ନିମନ୍ତ୍ର 'ବନ୍ଦୀର ଆତ୍ମକଥା' ଯେପରି ଅସାମାନ୍ୟ ସାଫଲ୍ୟର ସହିତ ପ୍ରତିଷ୍ଠିତ କରିପାରିଛି, ଆଉ କୌଣସି ବିପ୍ଳବାତ୍ମକ ସାହିତ୍ୟ ଉତ୍କଳଭୂମିରେ ସେହିପରିଭାବରେ କରିପାରିଛି କି ନାହିଁ ସନ୍ଦେହ । ଏହାର କାରଣ, ଗୋପବନ୍ଧୁ ନିଜେ ଉତ୍କଳରେ ଥିଲେ ଏହି ମନ୍ତ୍ରର ପୁରୋଧା । ଏ ମୁକ୍ତି-ଯଜ୍ଞରେ ସେ ପ୍ରଥମେ ନିଜକୁ ଆହୁତି ଦେଇ ଅନ୍ୟମାନଙ୍କୁ ଏ ପବିତ୍ର ବେଦିରେ ଜୀବନ ଉତ୍ସର୍ଗ କରିବାକୁ ଆହ୍ୱାନ ଓ ଉଦ୍‌ବୋଧନ ଦେଇଅଛନ୍ତି । ଏଥିରେ ତାଙ୍କର ନେତା ହେବାର ଆକାଙ୍‌କ୍ଷା ନାହିଁ, କି ଅନ୍ୟମାନଙ୍କୁ ଏ ଅନଳ-କୁଣ୍ଡକୁ ଠେଲି ଦେଇ ନିଜେ ନିରାପଦରେ ରହି ବାହାଦୁରୀ ନେବାର ଅଭିଳାଷ ନାହିଁ । ସ୍ୱାଧୀନତାର ଏହି ମୁକ୍ତି-ମନ୍ତ୍ରକୁ ସେ କେବଳ ବୁଦ୍ଧିଦ୍ୱାରା ଗ୍ରହଣ କରିନାହାନ୍ତି, ମୁକ୍ତିତର୍କବଳରେ ଏହି ବୈପ୍ଳବିକ ପନ୍ଥା ଗ୍ରହଣ କରିବାର ସିଦ୍ଧାନ୍ତରେ ସେ ଉପନୀତ ହୋଇ ନାହାନ୍ତି । ଏ ସିଦ୍ଧାନ୍ତ ତାଙ୍କର ନିବିଡ଼ ଉପଲବ୍‌ଧି-ସଂଜାତ, ଏହା ତାଙ୍କର ଅନ୍ତରର ବାଣୀ, ତାଙ୍କର ଆଧ୍ୟାତ୍ମ ଚେତନା ସହିତ ଏ ସିଦ୍ଧାନ୍ତ ନିବିଡ଼ଭାବରେ ସମ୍ପୃକ୍ତ । ଯେଉଁ କଂଗ୍ରେସ ଅଧିବେଶନରେ ଗାନ୍ଧିଜୀଙ୍କ ଅସହଯୋଗ-ପ୍ରସ୍ତାବ ଗୃହୀତ ହେଲା, ସେଠାରେ ସେ କେବଳ ଲାଲ ଲାଜପତ୍‌ରାୟ ଏବଂ ଗାନ୍ଧିଜୀଙ୍କୁ ଦେଖୁ ନ ଥିଲେ, ଦେଖୁଥିଲେ ଜଗନ୍ନାଥ ଓ ବଳରାମ ମୂର୍ତ୍ତିଙ୍କୁ । ସେହି ଚେତନାରେ ଜାଗ୍ରତହୋଇ ସେ ଅସହଯୋଗ ଆନ୍ଦୋଳନରେ ଝାସଦେବା ପୂର୍ବରୁ ସତ୍ୟବାଦୀ ବିଦ୍ୟାଳୟରେ ସହକର୍ମୀମାନଙ୍କୁ ଆବେଗକମ୍ପିତ କଣ୍ଠରେ କହିଥିଲେ, "ତୁମ୍ଭେମାନେ ଯାହା କରୁଛ କର, କିନ୍ତୁ ମୋ ପକ୍ଷରେ "ମହାଜନୋ ଯେନ ଗତଃ ସ ପନ୍ଥା ।"

ଇଂରେଜ ସରକାର-ଶାସନରେ ଅତ୍ୟାଚରିତ ଓ ସର୍ବସ୍ୱ ଲୁଣ୍ଠିତ ଦରିଦ୍ର ଉତ୍କଳବାସୀଙ୍କର ଚିତ୍ର 'ବନ୍ଦୀର ଆତ୍ମ କଥା'ରେ ଯେଉଁ କରୁଣ ଦୃଶ୍ୟ ପାଠକ ସମ୍ମୁଖରେ ଉପସ୍ଥାପିତ କରେ, ତାହାହିଁ ପରାଧୀନତାର ଲାଞ୍ଛନା ଓ ଗ୍ଲାନି । ଏ ଦୃଶ୍ୟ କବିଙ୍କ କଳ୍ପନାପ୍ରସୂତ ନୁହେଁ । ଏହା ତାଙ୍କର ବାସ୍ତବ ଅନୁଭୂତିର ଜୀବନ୍ତ ପ୍ରକାଶ । ଓଡ଼ିଶାର ଅର୍ଥନୈତିକ ଓ ନୈତିକ ଦୁର୍ଗତିର ଏପରି ବାସ୍ତବ ବର୍ଣ୍ଣନା—ପଲ୍ଲୀର ଏପରି ଦୁଃଖ, ନୈରାଶ୍ୟ ଓ ହାହାକାରର ଚିତ୍ର ଉପନ୍ୟାସ, ଗଳ୍ପ ଓ କବିତାରେ ଆଶା କରିବା ବାତୁଳତା । ଔପନ୍ୟାସିକ ପରାଧୀନ ପଲ୍ଲୀଜୀବନର ଚିତ୍ର ଯେ ଅଙ୍କନ ନ କରିପାରେ ତାହା ନୁହେଁ, କିନ୍ତୁ ବାସ୍ତବାନୁଭୂତି ସେଥିରେ କଳ୍ପନା-ରଙ୍ଗରେ ଅନୁରଞ୍ଜିତ ହୋଇଥାଏ; କିନ୍ତୁ 'ବନ୍ଦୀର ଆତ୍ମକଥା'ରେ ପରାଧୀନ ପଲ୍ଲୀ-ଜୀବନର ଏ ଦୁର୍ଗତିର ବର୍ଣ୍ଣନା ପ୍ରତ୍ୟକ୍ଷ ଅନୁଭୂତିର ଫଳ । ଏଥିରେ ଅତିରଞ୍ଜନ କିମ୍ବା କଳ୍ପନାର ପ୍ରଲେପ ନାହିଁ । କର୍ମୀଭାବରେ ପଲ୍ଲୀଜୀବନର ସାକ୍ଷାତ୍ ସଂସ୍ପର୍ଶରେ ଆସି ନିରୀହ ଜନତାର ଯେଉଁ ହୃଦୟ-ବିଦାରକ ଦୁର୍ଦ୍ଦଶା ଗୋପବନ୍ଧୁ ନିଜେ

ଦେଖିଛନ୍ତି. ସେହି ଦୁର୍ଦ୍ଦଶାର ଜୀବନ୍ତ ଅନୁଲିପି. 'ବନ୍ଦୀର ଆତ୍ମକଥା'ର ବୈଶିଷ୍ଟ୍ୟ । ଏହା ପରାଧୀନ ଜାତିର ଜୀବନର ସତ୍ୟାଶ୍ରୟୀ ଇତିହାସ; କିନ୍ତୁ ପରାଧୀନ ପଲ୍ଲୀ-ଜୀବନର ଏ ଦାରୁଣ ଦୁର୍ଦ୍ଦଶା କବିଙ୍କ ସମ୍ବେଦନାପୂର୍ଣ୍ଣ ଚିତ୍ତରେ କି ତୀବ୍ର ବେଦନା ଉଦ୍ରେକ କରିଥିଲା, ତାହାର କାବ୍ୟରୂପ ଅନବଦ୍ୟ ଓ ପ୍ରାଣସ୍ପର୍ଶୀ ।

'କେତେ କେତେ ଗୃହୀ ଭଲ ଭଲ ଲୋକ
ନ ପାନ୍ତି ଦି'ବେଳା ପେଟପୂରା ତୋକ ।
× × ×
ଦେହେ ନାହିଁ ମାଂସ ଦୋହୁଲୁଛି କଣ୍ଠା
ଅନାହାରେ ଆହା ନ ଉଠଇ ଅଣ୍ଟା ।
× × ×
ଉତ୍କଳର କେତେ କନ୍ୟା ନାରଖାର
ନ କରନ୍ତି ପେଟ ପୂରାଇ ଆହାର ।
ଲଜ୍ଜା ଘୋଡ଼ିବାକୁ ନ ପାନ୍ତି ବସନ
ଫୁଟେନାହିଁ କେବେ ଅଙ୍ଗେ ଯଉବନ ।'

ଇଂରେଜଶାସକଙ୍କ ଅମଳରେ ପଲ୍ଲୀରେ ଉନ୍ନୟନର କୌଣସି ସୁବ୍ୟବସ୍ଥା ନ ଥିଲା । ଇଂରେଜ ସରକାରର ଉଦ୍ଦେଶ୍ୟ ଥିଲା, କେବଳ ଶାନ୍ତି ଶୃଙ୍ଖଳା ରକ୍ଷା-କରିବା, ପ୍ରଜାଙ୍କର ରକ୍ତ ଶୋଷଣକରି ରାଜକୋଷକୁ ଧନପୂର୍ଣ୍ଣ କରିବା, ଏ ଦେଶର କୁଟୀରଶିଳ୍ପ ଓ ବାଣିଜ୍ୟ-ବ୍ୟବସାୟ ମୂଳରେ କୁଠାରାଘାତ କରି ବିଦେଶୀ ଦ୍ରବ୍ୟର ପ୍ରସାର କରାଇବା । ଜନମଙ୍ଗଳ ସାଧନ କରିବା ସେ ଶାସନର ମୂଳମନ୍ତ୍ର ନ ଥିଲା । ଅର୍ଥଶୋଷଣ ହିଁ ଥିଲା ସେ ବୈଦେଶିକ ଶାସନର ପ୍ରଧାନ ଲକ୍ଷ୍ୟ । ଗ୍ରାମ ପଞ୍ଚାୟତ ପରିବର୍ତ୍ତେ କୋର୍ଟ-କଚେରିରେ ଯେଉଁ ବିଚାର ଚାଲିଲା, ସେଥିରେ ଲୋକେ ସର୍ବସ୍ୱାନ୍ତ ହେଲେ । ଇଂରେଜ ଶାସନରେ ଲୋକମାନଙ୍କର ଏ ଦୁର୍ଦ୍ଦଶାର ଚିତ୍ର କେତୋଟି ଉପମା ସାହାଯ୍ୟରେ ଅତ୍ୟନ୍ତ ପ୍ରାଞ୍ଜଳ ହୋଇଉଠିଛି—

"ସରିଲାଣି ସାର ପଡ଼ିଅଛି ସିଠା,
ନାହିଁ ଗର୍ଭେ ପୁର ଦିଶେ ପୋଲା ପିଠା ।
ଉଡେଇଛି ଖଣ୍ଡା ଦୋହଲାଇ ଖାପ,
ରହିଛି ଅଙ୍ଗାର ନାହିଁ ତେଜ ତାପ ।
× × ×

ସତିଁ ମଣ୍ଡ ଗଛେ ରହନ୍ତି ବକଳ
ସୁନ୍ଦର ସକଳ ବକଟ ବକଳ !
ଫେରିବ ଏ ଦଶା ସୁଖୀ ହେବ ପ୍ରଜା,
ଉଷୁନା ଧାନ କି ସତେ ହେବ ଗଜା ?"

ପରାଧୀନ ଜୀବନର ଏ ନିଦାରୁଣ ଚିତ୍ର ସନ୍ଦର୍ଶିତ ଗୋପବନ୍ଧୁ ସ୍ୱରାଜ୍ୟର ଯେଉଁ ମଙ୍ଗଳମୟ ସ୍ୱପ୍ନ ଦେଖୁଥିଲେ, ତାହାର ତୁଳନା କଲେ ଜଣାଯାଏ, ତାଙ୍କର ଦୃଢ଼ ଧାରଣା, ଏପରି କଦର୍ଯ୍ୟ କୁତ୍ସିତ ଦାସତ୍ୱ-ଶୃଙ୍ଖଳିତ ଜୀବନଠାରୁ ମୃତ୍ୟୁ ସହସ୍ରଗୁଣେ ଶ୍ରେୟସ୍କର । ଏ ଭାରତରେ ପଶୁପକ୍ଷୀ ସମସ୍ତଙ୍କର ସ୍ୱାଧୀନତା ଓ ସ୍ୱଚ୍ଛନ୍ଦ ବିହାର ଅଛି, କିନ୍ତୁ ମନୁଷ୍ୟର ନାହିଁ । ଯୌବନରେ ରଚିତ 'ଅବକାଶ-ଚିନ୍ତା'ର ଗୋଟିଏ କାଳିଣ ଗଛ କବିତାରେ ପରାଧୀନତାର ଯେଉଁ ଗ୍ଲାନି ସେ ଅନୁଭବ କରିଛନ୍ତି, ଅସହଯୋଗ ଆନ୍ଦୋଳନରେ ଯୋଗଦେବା ପରେ ପରିଣତ ବୟସରେ ସେ ଗ୍ଲାନି ଓ ବେଦନା ଶତଗୁଣିତ ହୋଇଅଛି । ସେହି ଦୁର୍ବିସହ ବେଦନାର ଅପରୂପ ରୂପ ଆମ୍ଭେମାନେ ଦେଖିବାକୁ ପାଉ ନିମ୍ନଲିଖିତ ପଙ୍‌କ୍ତିମାନଙ୍କରେ ।

'ବନେ କରେ ପଶୁ ସ୍ୱଚ୍ଛନ୍ଦେ ବିହାର
ନିର୍ଭୀକ ସେ, ନୁହେ ଅଧୀନ କାହାର ।
ଚମି ତିମିଙ୍ଗିଳ ମତ୍ସ୍ୟ ଜଳଚର
ଖେଳନ୍ତି ସଲିଳେ ନ ଜାଣନ୍ତି ଡର ।
ଭାରତେ କେବଳ ନର ଜନ୍ତୁ ହୀନ
ନୁହେଁ ସେ ସ୍ୱଚ୍ଛନ୍ଦ, ନୁହେଁ ସେ ସ୍ୱାଧୀନ ।
ନାହିଁ ରବିତଳେ କାହିଁ ତା'ର ସ୍ଥାନ,
ଦଣ୍ଡ ତାଡ଼ନା ଘୋର ଅପମାନ ।'

କିନ୍ତୁ ବିଧାତାଙ୍କ କୃପାରୁ 'ସ୍ୱରାଜ୍ୟ-କେତନ' ଆକାଶରେ ଉଡ଼ିଲେ, ସ୍ୱରାଜ୍ୟ-ଙ୍କେ ସିଂହଦ୍ୱାରରେ ବାଜିଲେ ଏବଂ ସ୍ୱରାଜ୍ୟ-ଶାସନ ପ୍ରତିଷ୍ଠିତ ହେଲେ, ଭାରତ ତା'ର ପୂର୍ବଗୌରବ ଓ ଲକ୍ଷ୍ମୀ ତା'ର ପୂର୍ବ ସୁଖ-ସମୃଦ୍ଧି ଫେରିପାଇବ । ଧନଜନ ଗୋପଲକ୍ଷ୍ମୀରେ ଏ ଧରା ଆଉଥରେ ହସି ଉଠିବ । ଭାଗବତ ଘରେ ପୁଣି ଦୁଆ ଉଠିବ । ଗ୍ରାମରେ ପଞ୍ଚାୟତ ଶାସନ ପ୍ରତିଷ୍ଠିତ ହେବ । ଲୋକେ ଧର୍ମଭାବରେ ଅନୁପ୍ରେରିତ ହେବେ । ଶୋଷଣ-ପୀଡ଼ନର ଅବସାନ ଘଟିବ । ଭାରତ ଯେ ପର୍ଯ୍ୟନ୍ତ ସ୍ୱାଧୀନ ହୋଇନାହିଁ, ସେ ପର୍ଯ୍ୟନ୍ତ ବିଶ୍ୱରେ ଏକତା ନାହିଁ କି ସମତା ନାହିଁ ।

ସେ ପର୍ଯ୍ୟନ୍ତ ନିଖିଳ ମାନବାତ୍ମା ଅପୂର୍ଣ୍ଣ ବୋଲି ବୁଝିବାକୁ ହେବ। ସେ ପର୍ଯ୍ୟନ୍ତ ସ୍ୱର୍ଗରେ ଦେବତାମାନଙ୍କର ବି ଶାନ୍ତି ନାହିଁ।

'ଉତ୍କଳ ଅମ୍ବରେ ସ୍ୱରାଜ୍ୟ-କେତନ
ପ୍ରତିଷ୍ଠିତ ହେବ ସ୍ୱରାଜ୍ୟ-ଶାସନ।
ଦେବ ପ୍ରତିଷ୍ଠିତ ମହର୍ଷିସମ୍ମତ
ଜାଣିବ ଭାରତ, ଦେଖିବ ଜଗତ।
ବିରାଜିବ ବିଶ୍ୱେ ଏକତା ସମତା,
ଶାନ୍ତି ଉଚ୍ଚାରିବେ ସ୍ୱରଗେ ଦେବତା।'

କିନ୍ତୁ ଏ ସ୍ୱରାଜ-ପ୍ରାପ୍ତି ସହଜ ସାଧ୍ୟ ନୁହେଁ। କେବଳ ଇଂରେଜ ସରକାର ସହିତ ଅସହଯୋଗ କରି କାରାବାସରେ ଆବଦ୍ଧ ହେଲେ କିମ୍ବା ବୁଲି ବୁଲି ଲମ୍ବା ଲମ୍ବା ବକ୍ତୃତା ଦେଲେ ଏ ସ୍ୱରାଜ୍ୟ-ପ୍ରାପ୍ତିର ଆଶା ବୃଥା। ଏଥିପାଇଁ ଗୋପବନ୍ଧୁ ମହାତ୍ମାଗାନ୍ଧିଙ୍କ ପରି ଅମୋଘ ନିର୍ଦ୍ଦେଶ ଦେଇଛନ୍ତି—

'ହେଉ ପଛେ ହେବ ଆଉ ଯେ ଯାତନା
ସତ୍ୟେ ଚାଲି କର ସତ୍ୟର ସାଧନା।
ସତ୍ୟେ ମାନବର ସତ୍ତ୍ୱ ପରିକାଶେ
ଧ୍ରୁବ ରାଜଶକ୍ତି ନାଶେ ସତ୍ୟ ପାଶେ—'।

ଏ ସତ୍ୟର ତତ୍ତ୍ୱ କ'ଣ ? ଏ ସତ୍ୟ କ'ଣ କେବଳ ମିଥ୍ୟାର ବିପରୀତ ? ଏ ସତ୍ୟ କ'ଣ ଜନସେବା ଓ ରାଜନୀତି କ୍ଷେତ୍ରରେ ଅନୁସୃତ ଗାନ୍ଧିଜୀଙ୍କ 'ସତ୍ୟ'ର ଅନୁସରଣ ମାତ୍ର ? ଏ କ'ଣ କେବଳ ଗାନ୍ଧିଙ୍କ ମତକୁ ଉତ୍କଳରେ ପ୍ରଚାରକରିବା ନିମନ୍ତେ ଏକ ରାଜନୈତିକ ଚତୁରତା ? ୧୯୦୯ ମସିହା'ରେ ଗୋପବନ୍ଧୁ ଓକିଲାତି କରୁଥିବା ସମୟରେ ଗୋଟିଏ 'ଭବିଷ୍ୟତ୍ କାର୍ଯ୍ୟବାହିନୀ'ର ମୂଳଭିତ୍ତି ଗଠନ କରିବା ନିମନ୍ତେ ପଚିଶଜଣ ପର୍ଯ୍ୟନ୍ତ ଯୁବକଙ୍କୁ ଧରି କଟକରୁ ଧବଳେଶ୍ୱର ଯାଇ-ଥିଲେ। ଏହି ଧର୍ମପୀଠରେ ଯୁବକମାନଙ୍କୁ ଜଣ ଜଣ ହୋଇ ଦେଶ-ସେବା-ବ୍ରତରେ ନିଜ ନିଜକୁ ବଳି ଦେବା ନିମନ୍ତେ ଶପଥ ଗ୍ରହଣକରିବାକୁ ହେବ। ସେଥି ମଧ୍ୟରୁ ଜଣେ ଯୁବକ (ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ର) ଏହି ଘଟଣାର ପ୍ରତ୍ୟକ୍ଷ ବିବରଣୀ ଦେଇ ଲେଖିଅଛନ୍ତି, 'ଦେବତା ସିଂହାସନରେ ବସିଥାନ୍ତି, ପୂଜକ ଗୋପବନ୍ଧୁ ପାଖେ ପାଖେ ରହିଥାନ୍ତି। ଆମ୍ଭେମାନେ ଜଣ ଜଣ ହୋଇ ଦେଶ-ସେବା-ବ୍ରତରେ ନିଜକୁ ବଳିଦେବାକୁ ବୁଲିଥାଉଁ। × × × ଆମ୍ଭେମାନେ ଗୋଟିଏ

ଗୋଟିଏ ଗୁଣରେ ନିଜ ନିଜକୁ ଶପଥ ନେବାଲାଗି ଯାଇଥିଲୁ । ସତ୍ୟ, ନିଷ୍ଠା, ସେବା, କ୍ଷମା, ସାହସ, ଅହିଂସା, ଆର୍ଜବ ଆଦି କେତେଗୁଡ଼ାଏ ଗୁଣ ସ୍ଥିର କରାଗଲା । ସବୁ ଗୁଣଗୁଡ଼ିକ ତ ମନୁଷ୍ୟର ଦରକାର; କିନ୍ତୁ ଜଣେ ଜଣେ ଗୋଟିଏ ଗୋଟିଏ ଗୁଣର ସମଧିକ ବୃଦ୍ଧି ନିଜ ଜୀବନରେ ସାଧନ କରିବାକୁ ସଙ୍କଳ୍ପପାଇଁ ଯାଇଥିଲୁ । ମୁଁ ସତ୍ୟ ବାଛି ନେଇଥିଲି । × × × କେହି କେହି ଏକାଧିକ ଗୁଣ ବରଣ କରିନେଲେ । ଆମ୍ଭେମାନେ ମିଥ୍ୟା, କପଟ, ହିଂସା, ଭୀରୁତା ଆଦି ମନୁଷ୍ୟ-ସୁଲଭ ଦୋଷଗୁଡ଼ାକ ସେ ପୁଣ୍ୟ ଯଜ୍ଞପୀଠରେ ବଳିଦେଲୁ । ଗୋପବନ୍ଧୁ ଆମ୍ଭମାନଙ୍କ ପାଇଁ ପ୍ରାର୍ଥନା କଲେ ।"

୧୯୦୯ ମସିହାରେ ଧବଳେଶ୍ୱର-ଶିବପୀଠରେ ଏହି ଯେଉଁ ସତ୍ୟ-ଯଜ୍ଞ ଅନୁଷ୍ଠିତ ହୋଇଥିଲା, ଯୁବକମାନେ ଯେଉଁ ଯେଉଁ ଗୁଣ ଜଣଜଣକର ଗ୍ରହଣ କଲେ, ଏବଂ ଯେଉଁ ଦୋଷ ସବୁ ପରିହାର କରିବେ ବୋଲି ପ୍ରତିଜ୍ଞା କଲେ, ତାହା ହିଁ ଗୋପବନ୍ଧୁଙ୍କ ସତ୍ୟର ବ୍ୟାପକ ସ୍ୱରୂପ । ମହାତ୍ମାଗାନ୍ଧି ଯେଉଁ ଅହିଂସା ଓ ପ୍ରେମକୁ ସତ୍ୟର ଅପରିହାର୍ଯ୍ୟ ଅଙ୍ଗରୂପେ ଗ୍ରହଣ କରିଥିଲେ ଗୋପବନ୍ଧୁଙ୍କ ସତ୍ୟ ମଧ୍ୟରେ ସେହି ସବୁ ଗୁଣ ଅଙ୍ଗୀଭୂତ ଥିଲା । 'ବନ୍ଦୀର ଆତ୍ମକଥା'ରେ ସେ ଯେଉଁ 'ସତ୍ୟ'ର ସାଧନା ନିମନ୍ତେ ଉଦ୍‌ବୋଧନ ଦେଇଅଛନ୍ତି, ସେହି ସତ୍ୟ ନିର୍ବୀର୍ଯ୍ୟ ଓ ନିଷ୍କ୍ରିୟତାର ସତ୍ୟ ନୁହେଁ, ତାହା ନେତିବାଚକ ନୁହେଁ, ତାହା ମାନବଜୀବନର ସାରତତ୍ତ୍ୱ, ମାନବତ୍ୱର ମହିମା ସେହି ସତ୍ୟ-ସାଧନାରେ ହିଁ ଅନ୍ତର୍ନିହିତ । ଏହି ସତ୍ୟସାଧନା ରାଜନୀତିଜ୍ଞଙ୍କର ସ୍ୱାର୍ଥସାଧନର କୂଟନୀତିପୂର୍ଣ୍ଣ କୌଶଳ ନୁହେଁ, ଏହା ହିଁ ମାନବାତ୍ମାର ତତ୍ତ୍ୱଜୀବନର ଧ୍ରୁବତାରା । ଏହା ଏକ ଆଧ୍ୟାତ୍ମିକ ଶକ୍ତି—ଏକ ଦିବ୍ୟ ଚେତନା । ଏହା ଈଶ୍ୱରଙ୍କର ବାଣୀ । ଜୀବନର ମହତ୍ ଲକ୍ଷ୍ୟ ସାଧନ ନିମନ୍ତେ ଏହା ହିଁ ନିଷ୍କଳଙ୍କ ପବିତ୍ର ଉପାୟ । ଯାହାର ଏହି ତତ୍ତ୍ୱରେ ବିଶ୍ୱାସ ନାହିଁ, ଯେ ଯେ କୌଣସି ଅସାଧୁ ଉପାୟ ଅବଲମ୍ବନକରି କାର୍ଯ୍ୟ ହାସଲ କରିବାକୁ ବସେ, ସେ ମାନବ-ସମାଜର ଘୋର ଶତ୍ରୁ—ମାନବତାବାଦର ସେ ପ୍ରବଳ ପରିପନ୍ଥୀ । ସେ ନିଜର ଆତ୍ମାକୁ କଳୁଷିତ କରି ଅନ୍ୟମାନଙ୍କୁ ଅସତ୍ ପଥରେ ପରିଚାଳିତ କରେ । ସତ୍ୟର ହିଁ ଜୟ । ମିଥ୍ୟାର ଜୟ ଅସମ୍ଭବ । ଏହା ହିଁ ମାନବ-ସମାଜର ଶାଶ୍ୱତ ବାଣୀ । ଏ ବାଣୀରେ ଜୀବନର ମୂଲ୍ୟବୋଧ ପରିବର୍ତ୍ତନର କୌଣସି ପ୍ରଶ୍ନ ନାହିଁ । ଆଜି ଆମେ ଚିତ୍କାର କରୁଥାଉଁ, ଏ ବୈଜ୍ଞାନିକ ଯୁଗରେ ଜୀବନର ମୂଲ୍ୟବୋଧର ପୁନର୍ବିଚାର ଆବଶ୍ୟକ । ପରମ୍ପରାକୁ ଛିନ୍ନକରି ଆମକୁ ନୂତନ ସତ୍ୟର ଆଲୋକରେ ଜୀବନର ଲକ୍ଷ୍ୟ ସାଧନ ପ୍ରତି ନିର୍ବିଘ୍ନରୂପରେ ଅଗ୍ରସର ହେବାକୁ ପଡ଼ିବ; କିନ୍ତୁ ଏ ଯୁଗରେ ଜୀବନର କି ଲକ୍ଷ୍ୟ ? ସ୍ୱାର୍ଥ-ସାଧନ,

ଅର୍ଥୋପାର୍ଜନ, କ୍ଷମତାର ମୋହାନ୍ଧତା ଓ ଅନାଚାରର ପୈଶାଚିକ ଲୀଳା । ଏଥିପାଇଁ ତ ସେ କୌଣସି ଅସାଧୁ ପନ୍ଥା ତ ଶ୍ଳାଘନୀୟ । ତେଣୁ 'ସଦାଚାରସମିତି' ଗଠନର ଆହ୍ୱାନ ଓ ଆବଶ୍ୟକତା । ଜୀବନରେ ଆମର କି ନୂତନ ମୂଲ୍ୟବୋଧ ଜାଗି ଉଠିଛି ଯେ ଯେଉଁ ସନାତନ ଜୀବନାଦର୍ଶ ଯୁଗଯୁଗ ଧରି ଆମ ସଂସ୍କୃତି ଓ ସମାଜକୁ ଏ ପର୍ଯ୍ୟନ୍ତ ଦୃଢ଼କରି ରଖିଛି, ଆମେ ତାକୁ ଆଧୁନିକତାର ଦୋହାଇ ଦେଇ ଗୋଡ଼ରେ ଦଳି ଦେବା ? ସେହି ପୁରାତନ ମୂଲ୍ୟବୋଧ ସ୍ଥାନରେ ଆମ୍ଭେମାନେ କି ନୂତନ ମୂଲ୍ୟବୋଧ ସମାଜକୁ ଦେଇଥାଉଁ ? ମହାତ୍ମାଗାନ୍ଧିଙ୍କ ଆଦର୍ଶରୁ ବିଚ୍ୟୁତହୋଇ କଂଗ୍ରେସ ଆଜି ପଥଭ୍ରଷ୍ଟ ହୋଇଛି ବୋଲି କେତେକ ନେତୃସ୍ଥାନୀୟ ଲୋକଙ୍କର ମତାମତ । ତେବେ ଯେଉଁମାନେ କହନ୍ତି, ଗୋପବନ୍ଧୁଙ୍କ ଆଦର୍ଶରେ କିଛି ନୂତନତ୍ୱ ନାହିଁ, ବର୍ତ୍ତମାନ ସମାଜରେ ତାହା ନିତାନ୍ତ ଅଚଳ, ସେମାନଙ୍କର ଏ ମତବାଦର ଯୁକ୍ତିଯୁକ୍ତତା କେଉଁଠାରେ ? ଗୋପବନ୍ଧୁ ଯଥାର୍ଥରେ ମହାନ୍ ପ୍ରଗତିଶୀଳ । ଆମ ଦେଶ ଓ ସମାଜର ଅଗ୍ରଗତି ଏବଂ ଏହାର ଭବିଷ୍ୟତ୍ କଲ୍ୟାଣ, ତାଙ୍କ ମତରେ ନିହିତ ଅଛି, ଆମର ଏହି ସତ୍ୟ ଓ ଅହିଂସା, ନୀତିବଳ, ଆତ୍ମଶୁଦ୍ଧି, ମାନବତାବାଦ, ଭ୍ରାତୃତ୍ୱ, ବିଶ୍ୱବୋଧ ଏବଂ ଈଶ୍ୱରପରାୟଣତାରେ । ସେଥିରେ ଅଟଳ ବିଶ୍ୱାସ ଥିଲେ, ମନୁଷ୍ୟର ଦୁଃଖ ନାହିଁ । ସେ ସତ୍ୟରେ ଅକାଟ୍ୟ ପ୍ରତୀତି ଜନ୍ମିଲେ ଅତ୍ୟାଚାରୀର ଅତ୍ୟାଚାରିତା ପ୍ରତି ଦୁଃସହ ହୁଏନାହିଁ । ଏହି ସତ୍ୟ ଅତ୍ୟାଚାରିତ ପ୍ରାଣରେ ଅଲକ୍ଷିତଭାବରେ ଏପରି ଦୁର୍ଦ୍ଦମନୀୟ ଶକ୍ତିର ସଞ୍ଚାର କରୁଥାଏ ଯେ ସେ ଶକ୍ତି ସଞ୍ଚୟ ଫଳରେ ଅତ୍ୟାଚାରୀର ଭୀମ ରାଜଶକ୍ତି ଧନେ ବିନଷ୍ଟ ହୋଇଯାଏ । ତେଣୁ ଦୁଃଖିନୀ ଓ ନିର୍ଯ୍ୟାତିତା ଜନନୀକୁ ସେ ପ୍ରବୋଧନା ଦେଇ କହୁଛନ୍ତି—

'ନିରାଶ ହୃଦୟେ ବହେ ଦୀର୍ଘଶ୍ୱାସ,
ହେ ଜନନୀବାସୀ, ରଖ ଏ ବିଶ୍ୱାସ ।
ସେ ଉଷ୍ଣ ନିଃଶ୍ୱାସ ଅଶ୍ରୁ ବିସର୍ଜନ,
ସେ ଦାରୁଣ ନାଦ ପ୍ରାଣପ୍ରକମ୍ପନ ।
ନୁହେ ନିରର୍ଥକ ନ ଯାଏ ବିଫଳ,
ହୁଏ ସେ ଲୋତକେ ହିମାଚଳ ଜଳ ।
ସେ ନାଦେ କମ୍ପଇ ସ୍ୱର୍ଗ-ସିଂହାସନ
ଶୀତଳ ସେ ଉଷ୍ଣଶ୍ୱାସେ ହୁତାଶନ ।
ସେ ପ୍ରାଣ ପ୍ରକମ୍ପେ କମ୍ପେ ବସୁମତୀ,
କାଳେ ପ୍ରକଟଇ ଏ ଭୀମ ଶକତି ।'

ଧର୍ମ ଓ ଅଧର୍ମର ଦ୍ୱନ୍ଦ୍ୱରେ ପରିଶେଷରେ ଧର୍ମର ଜୟ ସୁନିଶ୍ଚିତ, ଏହି ସତ୍ୟର ମହିମା ଏଠାରେ କବି ପ୍ରକାଶ କରିଅଛନ୍ତି । ଜଡ଼ବାଦୀ ଏଠାରେ ଯୁକ୍ତିଛଳରେ

କହିପାରେ, ଯେଉଁମାନେ ଦୁର୍ନୀତିଗ୍ରସ୍ତ ଏବଂ ଅସାଧୁ ଉପାୟରେ ଆଜିକାଲି ଧନ ସଞ୍ଚୟ କରୁଅଛନ୍ତି, ସେମାନେ ଏ ସମାଜରେ ବେଶ୍ ମୁଣ୍ଡଟେକି ଠିଆ ହୋଇଛନ୍ତି । ସମ୍ମାନର ଉଚ୍ଛ୍ୱସିତ ପୂର୍ଣ୍ଣପାତ୍ର ତ ସେହିମାନଙ୍କ ହାତରେ; କିନ୍ତୁ ସେ ସମ୍ମାନ କେତେଦିନ ପାଇଁ ? ଯେଉଁ ସମ୍ମାନ ତ୍ୟାଗ, ତତିକ୍ଷା, ଓ ନିଃସ୍ୱାର୍ଥ ଜନକଲ୍ୟାଣ ସାଧନା ଉପରେ ପ୍ରତିଷ୍ଠିତ ନୁହେଁ, ତାହା ଶୂନ୍ୟଗର୍ଭ, ନିରର୍ଥକ ଓ ଅନ୍ତଃସାର-ଶୂନ୍ୟ ।

ଅସହଯୋଗ ଆନ୍ଦୋଳନକୁ ଦବାଇଦେବା ନିମନ୍ତେ ନିର୍ମମ ଇଂରେଜ ସରକାର ସେତେବେଳେ ନାନାପ୍ରକାର ପାଶବିକ ଦମନନୀତିର ଆଶ୍ରୟ ନେଇଥିଲେ । ଏଥିମଧ୍ୟରେ ନିରୀହ ପଲ୍ଲୀବାସୀଙ୍କର ଗୃହରେ ଅଗ୍ନିସଂଯୋଗ ଅନ୍ୟତମ । ଗାଁକୁ ଗାଁ ଜଳିଉଠିଲା । ବିପନ୍ନଲୋକଙ୍କର କରୁଣ ହାହାକାରରେ ହୃଦୟବାନ୍ ଲୋକେ ଧୈର୍ଯ୍ୟ ଧରି ରହିପାରିଲେନାହିଁ । ଗାଁର କେତେଜଣ ଖଳଲୋକଙ୍କୁ ହାତ କରି ସରକାରଙ୍କ ଇଙ୍ଗିତରେ ପୁଲିସ୍ ବୋଧହୁଏ ଏପରି କାଣ୍ଡ କରୁଥିଲା, ଉଦ୍ଦେଶ୍ୟ, ଲୋକଙ୍କ ମଧ୍ୟରେ ପ୍ରଚାର କରିବା ଅସହଯୋଗ ଆନ୍ଦୋଳନ ଫଳରେ ଭାରତ ସ୍ୱାଧୀନତା ପାଇଲେ, ଶାସନ-ଶୃଙ୍ଖଳା ଅଭାବରୁ ଲୋକଙ୍କୁ ଏହିପରି ନାନ ପ୍ରକାର ବିପଦ ଘଟିବ । ଗୋପବନ୍ଧୁଙ୍କର କୋମଳ ହୃଦୟ ପଲ୍ଲୀବାସୀଙ୍କର ଏ ଦୁଃଖ ଦୁର୍ଦ୍ଦଶା ଦେଖି ବ୍ୟଥିତ ହୋଇଉଠିଥିଲା । ବନ୍ଦୀର ଆତ୍ମକଥାରେ ଏହି ଅଗ୍ନିସଂଯୋଗକୁ ଲକ୍ଷ୍ୟ କରି ସେ କହି ଅଛନ୍ତି—

'ହେଲା ଗୃହେ ଯେଉଁ ଅଗ୍ନି ପ୍ରଜ୍ୱଳିତ<br>
ନୁହେ ବୃଥା ତାହା, ବିଧାତା-ଇଙ୍ଗିତ ।<br>
ବୁଝିଲେ ଦେଖିବ ତହିଁ ଗୂଢ଼ ତତ୍ତ୍ୱ<br>
ଜାଳି ହୃଦେ ଅଗ୍ନି ଶୁଦ୍ଧ କର ସତ୍ତ୍ୱ ।'

ଏ ଅଗ୍ନି ପ୍ରାନ୍ତର ହିନେ ଅବସାନ ଘଟିବ । ବୁଝିବାକୁ ହେବ ଏ ଅଗ୍ନିଦାହ ବିଧାତାଙ୍କର ଇଙ୍ଗିତ । ଇଂରେଜ ସରକାର ବିରୁଦ୍ଧରେ ଅସହଯୋଗ-ସଂଗ୍ରାମରେ ଆତ୍ମୋତ୍ସର୍ଗ କରିବା ନିମନ୍ତେ ଏ ଏକ ଦୈବୀ ପ୍ରେରଣା । ସରକାର ପକ୍ଷରୁ ନିର୍ଯ୍ୟାତନା, ଅତ୍ୟାଚାର ଓ ଉତ୍ପୀଡ଼ନ ଯେତିକି ଭୟଙ୍କର ହୋଇ ଉଠିବ, ଆତ୍ମଶୁଦ୍ଧିଦ୍ୱାରା ହୃଦୟକୁ ଶୁଦ୍ଧ କରି ସ୍ୱରାଜପ୍ରାପ୍ତି ନିମନ୍ତେ ସେତିକି ତତ୍ପର ହେବାକୁ ପଡ଼ିବ । ସତ୍ୟରୂପକ ଅଗ୍ନିରେ ହୃଦୟକୁ ପ୍ରଜ୍ୱଳିତ ନ କଲେ, ଦେବତ୍ୱର ପ୍ରତିଷ୍ଠା ନର-ପ୍ରାଣରେ ଅସମ୍ଭବ । ସାର୍ବଜନୀନ ପ୍ରେମରେ ଉଦ୍‌ବୁଦ୍ଧ ନ ହେଲେ, ଏହି ମୁକ୍ତି-ଆନ୍ଦୋଳନରେ ସାଫଲ୍ୟ ଲାଭକରିବାର ଆଶା ସୁଦୂର ପରାହତ । ଏହା ହିଁ

'ବନ୍ଦୀର ଆତ୍ମକଥା'ରେ ଗୋପବନ୍ଧୁଙ୍କ ତତ୍ତ୍ୱର ସ୍ୱରୂପ । ତେଣୁ ଗୋପବନ୍ଧୁଙ୍କର ନିର୍ଦ୍ଦେଶ :—

'ମାନବ ଜୀବନ ନୁହେ ମିଥ୍ୟାସ୍ୱପ୍ନ
କିବା କୁହୁକିନୀ କୌଶଳ ପ୍ରଧାନ ।
ଏ ଜୀବନ ସତ୍ୟ ଶୁଦ୍ଧ ସାରତତ୍ତ୍ୱ
ତତ୍ତ୍ୱ ଅନୁବନ୍ଧ ମାନବର ସତ୍ତ୍ୱ ।
ଯା ଜୀବନ-ଗତି ତତ୍ତ୍ୱ-ଅଭିମୁଖୀ
ସେହି ଏକା କୃତୀ, ସେହି ଏକା ସୁଖୀ—'

ମାନବ-ଜୀବନର ଏହି ମହାସ୍ୱାନ୍ ଓ ଉଦାର ତତ୍ତ୍ୱ ସମ୍ବନ୍ଧରେ ଗୋପବନ୍ଧୁ ଯେଉଁ ମତ ବ୍ୟକ୍ତକରିଅଛନ୍ତି, ତାହା ମାନବ-ସଭ୍ୟତାର ଚିରନ୍ତନ ସତ୍ୟ । ରାଜନୀତି, ସମାଜ-ନୀତି ଓ ସାହିତ୍ୟ-ଚର୍ଚ୍ଚା ଏ ସକଳ କ୍ଷେତ୍ରରେ ଏ ତତ୍ତ୍ୱର ଗଭୀର ପ୍ରୟୋଜନୀୟତା ଅଛି । ଆଜି ସ୍ୱାଧୀନତା ଲାଭପରେ ପଞ୍ଚାୟତ-ରାଜ ପ୍ରତିଷ୍ଠିତ ହୋଇଅଛି; କିନ୍ତୁ ସେ ପଞ୍ଚାୟତ-ଶାସନ କ'ଣ ବାସ୍ତବରେ ସାଫଲ୍ୟମଣ୍ଡିତ ହୋଇଅଛି ? ଗ୍ରାମରୁ କ'ଣ ଉଚ୍ଚନୀଚ ଭେଦଭାବଜନିତ ସଙ୍କୀର୍ଣ୍ଣତା ଲୋପପାଇଛି ? ଗ୍ରାମରୁ କ'ଣ ଏବେ ଈର୍ଷା, ଦ୍ୱେଷ ଓ ପରଶ୍ରୀକାତରତାର ଅବସାନ ଘଟିଲାଣି ? ନାନା ଦୁର୍ନୀତି, ଅପଚାର ଓ ବ୍ୟଭିଚାରର ଦୁଷ୍କର୍ମରେ ପଲ୍ଲୀର ବାତାବରଣ କ'ଣ ଦୂଷିତ ହୋଇନାହିଁ ? ମହାତ୍ମାଗାନ୍ଧି ଯେଉଁ ରାମ-ରାଜ୍ୟ ପ୍ରତିଷ୍ଠା କରିବାର କଳ୍ପନା କରିଥିଲେ, ସେ କଳ୍ପନା କ'ଣ ବାସ୍ତବତାରେ ରୂପାୟିତ ହୋଇଅଛି ? ସତ୍ୟ, ପ୍ରେମ ଓ ନୈତିକତାର ଏକନିଷ୍ଠ ପୂଜାରୀ ଗୋପବନ୍ଧୁ 'ବନ୍ଦୀର ଆତ୍ମକଥା'ରେ ଦେଶବାସୀଙ୍କୁ ତତ୍ତ୍ୱାଭିମୁଖୀ, ମାନବତାବାଦୀ ଓ ନିର୍ମଳଚରିତ୍ର ହେବାକୁ ଯେଉଁ ଉଦ୍‌ବୋଧନ ଦେଇଛନ୍ତି, ତାହା ଏ ଯୁଗର ଲୋକଙ୍କର ପ୍ରତି ମଧ୍ୟ ସମ୍ପୂର୍ଣ୍ଣରୂପେ ପ୍ରଯୋଜ୍ୟ । ତେଣୁ ଯେଉଁମାନେ କହନ୍ତି 'ବନ୍ଦୀର ଆତ୍ମକଥା', 'ଗୋପବନ୍ଧୁ-ଉପନିଷଦ', କିମ୍ବା 'ସ୍ୱରାଜ୍ୟ-ଗୀତା' ବେଦର ବାଣୀ ପରି ସେ କଥା ଅଭ୍ରାନ୍ତଭାବରେ ସତ୍ୟ । ଏହା ହିଁ 'ବନ୍ଦୀର ଆତ୍ମକଥା'ର ଚିରନ୍ତନ ସାହିତ୍ୟିକ ମୂଲ୍ୟ । କବି ହିଁ ଜାତୀୟ ଜୀବନର ପ୍ରତିଷ୍ଠାତା, ଜାତୀୟ ମନ୍ତ୍ରର ପୁରୋଧା, ସେ ତ୍ରିକାଳଦର୍ଶୀ, ସୁଦୂର ଭବିଷ୍ୟତ ଉପରେ ତା'ର ଦୃଷ୍ଟି ନିବଦ୍ଧ । ସାମୟିକତା ତା'ର ଅବଲମ୍ବନ; କିନ୍ତୁ ଦୃଷ୍ଟି ଚିରନ୍ତନୀ । ଜଣେ ପାଶ୍ଚାତ୍ୟ ସମାଲୋଚକଙ୍କ ମତରେ 'He is a doer, a maker, a revealer, a creator'; ଗୋପବନ୍ଧୁ ସେହିପରି ଜଣେ ଦ୍ରଷ୍ଟା, ସ୍ରଷ୍ଟା, କର୍ମୀ ଓ ଭାବୁକ । ପଲ୍ଲୀର ଉନ୍ନୟନ ନିମନ୍ତେ ସେ କାରାଗାର ମଧ୍ୟରୁ ପ୍ରାଣର ଗଭୀର ଆକୁଳତାରେ ଦେଶବାସୀଙ୍କୁ ଯେଉଁ ନୀତି-ଉପଦେଶ ଦେଇଅଛନ୍ତି, ତାହା ଏବେ ମଧ୍ୟ ପଲ୍ଲୀ-ସଂଗଠକମାନଙ୍କର ପ୍ରଣିଧାନଯୋଗ୍ୟ :—

'ସତ୍ୟ-ବହ୍ନି-ବର୍ଷେ ଦଗ୍ଧ ମଳିନତା,
ପରକାଶୁ ନର-ପସ୍ତାଣେ ଦେବତା ।

× × ×

ସତ୍ୟ ଶାନ୍ତିପଥେ ଚଳ ଅବିରତ,
ଗ୍ରାମେ ଗ୍ରାମେ ସର୍ବେ କର ପଞ୍ଚାୟତ ।
ଚଳାଅ ଅରଟ ଗୁଡ଼ ମନୁ ଖେଦ,
ତେଜ ଉଚ୍ଚ ନୀଚ ଘୃଣା ଭେଦ-ନୀତି ।
ଚେର ନାଞ୍ଚ ନିଶା ଆଦି ଦୁରାଚାର,
ନ କରୁଁ ଦୂଷିତ ଗ୍ରାମ ପରିବାର ।
ଏ ଆଚାରେ ହେବ ଜଗତ ମଙ୍ଗଳ,

× × ×

'ବନ୍ଦୀର ଆତ୍ମକଥା'ରେ ଗୋପବନ୍ଧୁ ମାନବାତ୍ମାର ଊର୍ଦ୍ଧ୍ୱାୟନ ନିମନ୍ତେ ଯେଉଁ 'ତତ୍ତ୍ୱ'ର ଦିଗ୍‌ଦର୍ଶନ ଦେଇଅଛନ୍ତି, ଋଷିଆର ଋଷି ଟଲଷ୍ଟୟ ଥରେ ସେହି କଥା କହିଥିଲେ, "ଆମ୍ଭେମାନେ ସମସ୍ତେ ପୃଥିବୀକୁ ଆସିଛୁ ଭଗବାନଙ୍କ ଇଚ୍ଛାରେ, ଭଗବାନ୍ ମନୁଷ୍ୟକୁ ଏହିପରିଭାବରେ ସୃଷ୍ଟି କରିଅଛନ୍ତି ଯେ, ମନୁଷ୍ୟ ନିଜର ଆତ୍ମାକୁ ଧ୍ୱଂସ କରିପାରେ, ରକ୍ଷା ମଧ୍ୟ କରିପାରେ । ନିଜର ଆତ୍ମାକୁ ରକ୍ଷାକରିବା ମନୁଷ୍ୟ-ଜୀବନର ସମସ୍ୟା, ତେଣୁ ମନୁଷ୍ୟକୁ ଭଗବତ୍-ବିଧାନ ଅନୁସାରେ ଜୀବନ-ଯାପନ କରିବାକୁ ହେବ । ଭଗବତ୍-ବାଣୀ ଓ ଭଗବତ୍-ବିଧାନ ଅନୁସାରେ ଜୀବନ-ଯାପନ କରିବାକୁ ହେଲେ, ମନୁଷ୍ୟକୁ ଜୀବନର ସକଳ ଭୋଗ ଆଗ୍ରହ ତ୍ୟାଗ କରିବାକୁ ହେବ, କାୟିକ ଶ୍ରମ କରିବାକୁ ହେବ, ବିନୀତହେବାକୁ ହେବ, ଧୈର୍ଯ୍ୟଶୀଳ ହେବାକୁ ପଡ଼ିବ, ପ୍ରତ୍ୟେକ ମନୁଷ୍ୟ ପ୍ରତି କରୁଣାରେ ଜାଗ୍ରତ ହେବାକୁ ହେବ ।"

## କରୁଣା ଓ ମାନବତାବାଦ

ତତ୍ତ୍ୱରେ ଏହି କରୁଣାର ନିତ୍ୟ ଜ୍ୱଳନ୍ତ ଜାଗରଣରେ ହିଁ ଗୋପବନ୍ଧୁଙ୍କର ମାନବତାବାଦ କିମ୍ବା ମାନବସେବାର ତତ୍ତ୍ୱ ଅନୁସନ୍ଧାନ କରିବାକୁ ହେବ । ମହାତ୍ମାଗାନ୍ଧି ଥରେ ଦୃଢ଼ତାର ସହିତ କହିଥିଲେ 'As I am nearing the end of my earthly life, I can say that purity of life is the highest and truest art ।' ହୃଦୟର ପବିତ୍ରତା ହେଲା ସର୍ବଶ୍ରେଷ୍ଠ ଆର୍ଟ । ମହାକବି ଗେଟେ ମଧ୍ୟ କହିଥିଲେ 'one must be something in order to do something' କୌଣସି କାର୍ଯ୍ୟ କରିବାକୁ ହେଲେ ନିଜକୁ

ଓତପ୍ରୋତଭାବରେ ସେଥିରେ ମିଶାଇ ଦେବାକୁ ହେବ, ନିଜକୁ ସେହି କର୍ମର ସେପରି ଜୀବନ୍ତ ଅବତାର କରିବାକୁ ହେବ, ନିଜକୁ ସେଥିରେ ହଜାଇ ଦେଇ ଆତ୍ମବିଭୋର ହେବାକୁ ହେବ । ଗୋପବନ୍ଧୁଙ୍କ କବିତା ଏହି ପବିତ୍ରତା ଏବଂ ଆତ୍ମ-ତନ୍ମୟତାର ବହିଃ ପ୍ରକାଶ । କରୁଣାରୁ ହିଁ ପ୍ରେମର ଉଦ୍ଭବ । ଏହି ପ୍ରେମରେ ପର ଆପଣାର ଭେଦଭାବ ନାହିଁ । ଏହାର ଚରମ ପରିଣତି ବିଶ୍ୱଜନୀନ ଓ ଭଗବତ୍-ପ୍ରେମରେ । ତେଣୁ 'ବନ୍ଦୀର ଆତ୍ମକଥା'ରେ ସେ ସ୍ୱାଧୀନତା-ଆନ୍ଦୋଳନରେ ଯୋଗଦେବାକୁ ଦେଶବାସୀଙ୍କୁ ନିବେଦନ କରିବା ସଙ୍ଗେ ସଙ୍ଗେ 'ବିଶ୍ୱଜନ-ପ୍ରୀତି'କୁ ଜୀବନର ନୀତିରୂପେ ଗ୍ରହଣ କରିବାକୁ ଇଙ୍ଗିତ ଦେଇଅଛନ୍ତି । ବସ୍ତୁତଃ ଗୋପବନ୍ଧୁଙ୍କ ଦୃଷ୍ଟିରେ ଜାତୀୟ ମମତା ଓ 'ବିଶ୍ୱଜନ-ପ୍ରୀତି' ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ତେଣୁ ଭଗବାନଙ୍କଠାରେ ସେ ଭିକ୍ଷା ମାଗିଛନ୍ତି—

"ଜାତୀୟ ମମତା ବିଶ୍ୱଜନ-ପ୍ରୀତି
ଉତ୍କଳବାସୀର ହେଉ ଏହା ନୀତି
ନୀରବ ନିଷ୍ଠୁଳେ ବସି ବନ୍ଦୀଘରେ
ମାଗେ ଏହି ଭିକ୍ଷା ପ୍ରଭୁ ଶ୍ରୀପାଦରେ ।"

କିନ୍ତୁ 'ଜାତୀୟ-ମମତା' କିମ୍ବା 'ବିଶ୍ୱଜନ-ପ୍ରୀତି'ର ଶିକ୍ଷା 'ବନ୍ଦୀର ଆତ୍ମ-କଥା'ର ଏକମାତ୍ର ବିଷୟ ନୁହେଁ । ଧନହୀନ ଭାଇଭଉଣୀମାନଙ୍କର ଦାରୁଣ ଦୁଃଖର ବିସ୍ତୃତ ବିବରଣୀ ଏହାର ଅନ୍ୟତମ କାବ୍ୟିକ ବିଭବ । ଏ ବିଭବର ଅନ୍ତରାଳରେ ବିଦ୍ୟମାନ କବିଙ୍କର କରୁଣା ତଥା ଉଦାର ମାନବିକ ପ୍ରେମ । ନୀତିଶିକ୍ଷା କିମ୍ବା ଧର୍ମୋପଦେଶ ଏଥିରେ ଥିଲେ ମଧ୍ୟ ଏହାର ଭିତ୍ତିଭୂମି ସେହି ମାନବିକ ପ୍ରେମ ଉପରେ ପ୍ରତିଷ୍ଠିତ । ମନୁଷ୍ୟ-ମନୁଷ୍ୟମଧ୍ୟରେ ଏତେ ଯେ ଈର୍ଷା, ଦ୍ୱେଷ, ମତାନ୍ତର, ମନାନ୍ତର, ଦ୍ୱନ୍ଦ୍ୱ ଓ ସଂଘର୍ଷ ଦେଖିବାକୁମିଳେ ତାହାର କାରଣ ମାନବ-ସମାଜରେ ନୀତଶିକ୍ଷାର ଅଭାବ ନୁହେଁ, ଅଭାବ ଆତ୍ମ-ପ୍ରସାରର, ଅଭାବ ହୃଦୟରେ କରୁଣା ଓ ପ୍ରେମର । 'ବନ୍ଦୀର ଆତ୍ମକଥା'ରେ ଗୋପବନ୍ଧୁ ଦୈନ୍ୟ, ଦୁଃଖ, ନିର୍ଯ୍ୟାତନ ଓ ଶୋଷଣର ଯେଉଁ ଚିତ୍ର ଦେଇଅଛନ୍ତି, ତାହା ତାଙ୍କର ପ୍ରତ୍ୟକ୍ଷ ଅନୁଭବର କଥା । ସେ ନିଜେ ଯାହା ଆଖିରେ ଦେଖିଛନ୍ତି, ଅଙ୍ଗରେ ନିଭାଇଛନ୍ତି, ଏବଂ ଯେଉଁ ଦୁଃଖ ଦୁର୍ବିପାକର ନିଷ୍ପେଷଣମଧ୍ୟରେ ନାନା ଯାତନା କ୍ଳେଶ ନିଜେ ବରଣ କରିଆଣିଛନ୍ତି, ତାହାର ମର୍ମସ୍ପର୍ଶୀ ଚିତ୍ର ଜଣେ ସୂକ୍ଷ୍ମପୂର୍ଣ ବାସ୍ତବଧର୍ମୀ ଲେଖକଭାବରେ ସେ ଅତି ଚିତ୍ତାକର୍ଷକଭାଷାରେ ତାହା ବର୍ଣ୍ଣନା କରିଅଛନ୍ତି । ପ୍ରେମର ଆଉ ଗୋଟିଏ ଲକ୍ଷଣ ଅନୁଭୂତିର ବିସ୍ତୃତି ଓ କଳ୍ପନାର ପ୍ରସାରଣଶୀଳତା । ତେଣୁ ଯେଉଁ ସ୍ଥାନର ଦୁଃଖ ଦୁର୍ଦ୍ଦଶା ସେ ନିଜେ ପ୍ରତ୍ୟକ୍ଷ ଦେଖିପାରି ନାହାନ୍ତି,

ସେଠାକୁ ଯାଇ ଦୁଃସ୍ଥ ଓ ନିପୀଡ଼ିତ ଜନତାର ସେବା କରିବାକୁ ତାଙ୍କର ପ୍ରବଳ ଇଚ୍ଛା ଥିଲେ ମଧ୍ୟ, ନାନା ଅନିବାର୍ଯ୍ୟ କାରଣରୁ ସେ ସେଠାକୁ ଯାଇ ଜନ-ସେବାରେ ଆତ୍ମନିୟୋଗ କରିପାରିନାହାନ୍ତି, ସାମ୍ବାଦିକର ସମ୍ବାଦ ଉପରେ ନିର୍ଭର କରି କବିତା କଳ୍ପନାରେ ସେ ସ୍ଥାନର ଲୋକମାନଙ୍କର ଯେଉଁ ଦୁଃଖ ଦୁର୍ଦ୍ଦଶାର ଚିତ୍ର ଅଙ୍କନ କରିଅଛନ୍ତି, ତାହା କେଲେବେଳେ ପ୍ରତ୍ୟକ୍ଷ ଅନୁଭୂତିର ବର୍ଣ୍ଣନାଠାରୁ ଆହୁରି ମର୍ମଭେଦୀ ଓ କରୁଣ-ରସାତ୍ମକ ହୋଇପାରିଛି । ଏ କେବଳ ଦରିଦ୍ର-ନାରାୟଣର ପୂଜାରୀ ଗୋପବନ୍ଧୁଙ୍କ ମାନବିକତା, କରୁଣା ଓ ସାର୍ବଜନୀନ ପ୍ରେମର ପରିଣାମ । ତତ୍କାଳୀନ ରାଜାଙ୍କ ଅତ୍ୟାଚାରରେ କନିକାର ଦୁଇଜଣ ପ୍ରଜା ନିହତ ହେଲେ, କୁଳାଙ୍ଗନାମାନଙ୍କ ଉପରେ ଘୋର ଅତ୍ୟାଚାର ହେଲା ଏବଂ ନିରୀହ ପ୍ରଜାମାନଙ୍କର ସର୍ବସ୍ୱ ଅପହୃତ ହେଲା । ନିର୍ଯ୍ୟାତିତ କନିକାବାସୀ ଗୋପବନ୍ଧୁଙ୍କ ଆଗମନକୁ ଅପେକ୍ଷାକରି ରହିଥିଲେ । ଗୋପବନ୍ଧୁ ଏହା ପୂର୍ବରୁ ଥରେ ସେଠାର ଦୁର୍ଭିକ୍ଷପୀଡ଼ିତ ଲୋକମାନଙ୍କର ସେବା କରିବାକୁ ଯାଇଥିଲେ କିନ୍ତୁ ଏହି ପୀଡ଼ନ ଓ ଶୋଷଣ ସମୟରେ ସେ କନିକାକୁ ଯାଇପାରି ନ ଥିଲେ । ସେଥିପାଇଁ ବନ୍ଦୀ-ଶାଳାରେ କରୁଣାସିକ୍ତ କବିଙ୍କ ହୃଦୟରେ କି ଦୁଃଖ ! ତଥାପି ସେ ଏ ବିଷୟରେ ନିଶ୍ଚିନ୍ତ ନ ଥିଲେ । ପୁଲିସର ଅତ୍ୟାଚାର ବିରୁଦ୍ଧରେ 'ସମାଜ'ରେ ନିର୍ଭୀକ-ଭାବରେ ଲେଖାଲେଖି କରୁଥିଲେ ବୋଲି କଟକଜିଲାର ପୁଲିସ୍‌ସାହେବ ତାହାଙ୍କ ନାମରେ ମାନହାନି ମକଦ୍ଦମା ଆଗତ କରିଥିଲେ; କିନ୍ତୁ ପୁଲିସ୍‌ର ଆହୁରି ଅନେକ ଉତ୍କଟତର ଅତ୍ୟାଚାରର କାହାଣୀ ପ୍ରକାଶ ପାଇବ ବୋଲି ଭୟରେ ସେ ମକଦ୍ଦମା ପ୍ରତ୍ୟାହାର କରାଯାଇଥିଲା, କଳ୍ପନାରେ ଗୋପବନ୍ଧୁ ସେ ପୈଶାଚିକ କନିକାକାଣ୍ଡର ଯେଉଁ ଚିତ୍ର ଦେଇଅଛନ୍ତି, ତାହା ଯେ କୌଣସି ମାନବଧର୍ମୀ କବିର ଗର୍ବ ଓ ଗୌରବର ସାମଗ୍ରୀ । ସେହି ଅତ୍ୟାଚାରିତ କନିକାବାସୀଙ୍କର ଲୁହରେ ଲୁହ ମିଶାଇ ପାରିଲେନାହିଁ ବୋଲି ତାଙ୍କର କି ଗଭୀର ଅନୁଶୋଚନା । ଏପରି ସମ୍ବେଦନା ଓ ସହାନୁଭୂତି ଯେ ଅନ୍ୟ କୌଣସି କବିଙ୍କ କାବ୍ୟରେ ନ ଥିବ, ତାହା ନୁହେଁ; କିନ୍ତୁ ଯାହାର ଜୀବନର ମନ୍ତ୍ର ଦେଶ-ସେବା; ଦରିଦ୍ର-ନାରାୟଣର ସେବା କରିବାକୁ ଯାହାର ଜନ୍ମ, ଯେଉଁ ନିଃସ୍ୱାର୍ଥ ସେବାଦମ୍ଭ ଖରେ ମୃତ୍ୟୁ ପରାଜୟ ସ୍ୱୀକାର କରିଛି, ସେହି ସେବାରେ ମନପ୍ରାଣ ଉତ୍ସର୍ଗ କରିଥିବା କବିର ଲେଖନୀରୁ ଯେତେବେଳେ ନିଃସୃତ ହୁଏ—

'ନିରୀହ ନର୍ଦ୍ଦେ ଷ ପବିତ୍ର ଶୋଣିତ
କରିଛି କନିକା-ଭୂମି ଯହିଁ ସିକ୍ତ
ସେ ଶୁଦ୍ଧ ମୃତ୍ତିକା ଲଗାଇ ମୁଁ ଶିରେ,
ତେଜି ନେତ୍ରନୀର ସର୍ବେବର ତୀରେ,

'ଲଭିଥାନ୍ତି ଏଠାରେ ଅନ୍ତରେ ସାନ୍ତ୍ୱନା,
ଅପୂର୍ଣ୍ଣ ରହିଲା ଆହା ମୋ ବାସନା ।'

ମନେହୁଏ କାବ୍ୟର ଏ ଅନାସ୍ୱାଦିତ ଅଭିନବ ରସ-ମାଧୁରୀ ଓ ତା'ର ଆ-ସ୍ୱାଦିତ୍ୟର ଅକ୍ଷୟ ବିଭବ । କଳ୍ପନାରେ କଳିକାର ଅତ୍ୟାଚାରର ହୃଦୟବିଦାରକ ବର୍ଣ୍ଣନା ଏହିପରି,—

'କୁଳାଙ୍ଗନା ପରେ ଘୋର ଆକ୍ରମଣ
ବିକଳେ ବିଧିରି କରଇ ରୋଦନ ।
କଳିକାର ରାଜଧାନୀ ଚଉପାଶେ
ପ୍ରେତଆତ୍ମା ବେନି ଉଡ଼ଇ ଆକାଶେ ।
ବନ୍ଧୁ ବନ୍ଧୁ ଚକ୍ଷୁ ପଡ଼େ ତହିଁ ତଳେ,
ସେ ରକ୍ତେ ଭୀଷଣ ଅଗ୍ନିଶିଖା ଜଳେ ।
ସିଞ୍ଚି ସିଞ୍ଚି ଶୁଖେ ଗଙ୍ଗା-ନଦୀଜଳ
ନ ଲିଭି ପ୍ରବଳ ଜଳେ ସେ ଅନଳ ।
×　　×　　×
ମହା ବିପର୍ଯ୍ୟୟ, ମହା ବିଭୀଷିକା
କମ୍ପେ ମହାତଙ୍କେ ଦୁଃଖିନୀ କଳିକା ।
ବହେ ଅନୈସର୍ଗିକ ଝଡ଼ ଝଞ୍ଜା ବାତ
ଏ କି ଭୟଙ୍କର ଅଦ୍ଭୁତ ଉତ୍ପାତ ।
ଏ କି ମୋ କଳ୍ପନା—ସତ୍ୟ ନା ସ୍ୱପନ ?
ବାଜେ ରେଲ୍ ଘଣ୍ଟି ଆସିଲା ଚେତନ ।'

କଳ୍ପନାରେ କବି କେବଳ ଅଶ୍ରୁବିନ୍ଦୁ ନିଗାଡ଼ି ନାହାନ୍ତି, ଚତୁର୍ଦ୍ଦିଗରେ ବିକୀର୍ଣ୍ଣ ଓ ବିଚ୍ଛୁରିତ କରିଦେଇଅଛନ୍ତି ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ କ୍ରୋଧୋଦ୍ଦୀପ୍ତ ହୃଦୟର ଅଗ୍ନିବାଣ ଅଗ୍ନି-ସ୍ଫୁଲିଙ୍ଗ । ଯେଉଁ କରୁଣା ଓ ପ୍ରେମର ପ୍ରେରଣା ଏବଂ ଜାଗରଣରେ ସେ ଦୁର୍ଗତ କଳିକାବାସୀଙ୍କ ପାଇଁ କାନ୍ଦିଛନ୍ତି, ତାହାର ଉଦ୍ଦୀପନାରେ ସେ ଅତ୍ୟାଚାରୀ ଶାସକ ବିରୁଦ୍ଧରେ ବିଦ୍ରୋହରେ ଗର୍ଜି ଉଠିଛନ୍ତି । ବାସ୍ତବମୁଖିତା, କରୁଣ ରସ, ଏବଂ ଭୟାନକ ରସର ତ୍ରିବେଣୀ ସଙ୍ଗମରେ କଳିକାର ଏ ଦାରୁଣ ଚିତ୍ରର ପଟାନ୍ତର ନାହିଁ । କର୍ମକ୍ଷେତ୍ରରେ ଅଶ୍ରୁନିର୍ଝର ମଧ୍ୟରେ ଯେଉଁ ବୀରସୁଲଭ ଉତ୍ସାହ ଉନ୍ମାଦନା ଓ ଆଶାର ଦୀପ୍ତି, କାବ୍ୟରେ ମଧ୍ୟ ସେହି ବୀର୍ଯ୍ୟଶାଳିତା, ବଳିଷ୍ଠ ଆଶାବାଦ ଓ ଜାଗ୍ରତ ଧର୍ମବୋଧ ।

କିନ୍ତୁ କବି ଯେଉଁ କରୁଣ ଦୃଶ୍ୟ ନିଜ ଆଖିରେ ଦେଖିଥିଲେ, (ଔପନ୍ୟାସିକ ଓ କବିଙ୍କ ପରି ପଲ୍ଲୀଜୀବନର ଛବିଦେବା ଉଦ୍ଦେଶ୍ୟରେ ନୁହଁ, ହତଶ୍ରୀ ଓ ମୁମୂର୍ଷୁ ପଲ୍ଲୀରେ ଜୀବନ୍ୟାସ ମନ୍ତ୍ର ଦେବା ଉଦ୍ଦେଶ୍ୟରେ) ତାହାର ବର୍ଣ୍ଣନା ତାଙ୍କର ପ୍ରିୟତମ ସାହିତ୍ୟ-ସାଧକ ଫକୀରମୋହନ ସେନାପତିଙ୍କ ଉପନ୍ୟାସମାନଙ୍କରେ ବର୍ଣ୍ଣିତ ଗ୍ରାମ୍ୟ-ଜୀବନର ଛବିଠାରୁ ଅଧିକ ହୃଦୟଗ୍ରାହୀ ନୁହେ କି ? ଅସ୍ୱୀକାର କରିବାର କୌଣସି ଉପାୟ ନାହିଁ, ଫକୀରମୋହନ ହିଁ ଉତ୍କଳର ଗ୍ରାମ୍ୟ ଜୀବନର ପ୍ରଥମ ଚିତ୍ରକାର; କିନ୍ତୁ ତାଙ୍କର ସ୍ୱଭାବସୁଲଭ ବ୍ୟଙ୍ଗାତ୍ମକତା, ଔପନ୍ୟାସିକ ସୁଲଭ କଳ୍ପନାପ୍ରବଣତା ଏବଂ ଚରିତ୍ର ଚିତ୍ରଣ-ପ୍ରତି ପ୍ରଗାଢ଼ ଅନୁରାଗପ୍ରିୟତା ଏ ଚିତ୍ରର ଶାଣିତ ବାସ୍ତବତାକୁ କେତେକ ପରିମାଣରେ ମ୍ଳାନ କରିପକାଉଛି ଏବଂ ସେ ବର୍ଣ୍ଣନା ହୁଏତ ଓଡ଼ିଶାର ପ୍ରତ୍ୟେକ ପଲ୍ଲୀପ୍ରତି ପ୍ରଯୋଜ୍ୟ ହୋଇ ନ ପାରେ । ଅନ୍ୟାନ୍ୟ ଔପନ୍ୟାସିକ କିମ୍ବା କବି ଯେଉଁମାନେ ଗ୍ରାମର ଦୃଶ୍ୟ ବର୍ଣ୍ଣନା କରିଅଛନ୍ତି, ସେମାନେ ପଲ୍ଲୀଜୀବନ ସହିତ ପ୍ରତ୍ୟକ୍ଷଭାବରେ ସମ୍ପୃକ୍ତ ନୁହନ୍ତି, ପଲ୍ଲୀପ୍ରତି ସେମାନଙ୍କର ଯେଉଁ କରୁଣା କିମ୍ବା ସହାନୁଭୂତି ଅଛି, ତାହା ତାଙ୍କର ଏକ ବିଳାସ ମାତ୍ର । ବାସ୍ତବକ୍ଷେତ୍ରରେ ପଲ୍ଲୀବାସୀଙ୍କ ପ୍ରତି ଆତ୍ମ-ଗର୍ବରେ ନାସିକା କୁଞ୍ଚନ କରି କାବ୍ୟକବିତାରେ ସେମାନଙ୍କ ଦୁଃଖରେ କପଟାଶ୍ରୁ ମୋଚନ କରିବା ଯଶ-ପିପାସୁ ଲେଖକଙ୍କର ଅଭାବ ଆମ ସାହିତ୍ୟରେ ନାହିଁ; କିନ୍ତୁ ଗୋପବନ୍ଧୁଙ୍କର ବର୍ଣ୍ଣନା କେବଳ ପ୍ରତ୍ୟକ୍ଷଦର୍ଶୀର ବର୍ଣ୍ଣନା ନୁହଁ, ଏହା ଜଣେ ମାନବିକତାଧର୍ମୀ ପଲ୍ଲୀ-ସେବକର ଜୀବନ୍ତ ଅନୁଭୂତି । ତେଣୁ କବି ଗୋପବନ୍ଧୁ ହିଁ ଆମ ଦେଶର କନ୍ୟାମାନଙ୍କ ସମ୍ବନ୍ଧରେ ଲେଖିପାରନ୍ତି ।

'ଲଜ୍ଜା ଢାଙ୍କିବାକୁ ନ ପାନ୍ତି ବସନ
ଫୁଟେ ନାହିଁ କେବେ ଅଙ୍ଗେ ଯଉବନ ।'

କିନ୍ତୁ ଆମର ଆଧୁନିକ ଔପନ୍ୟାସିକମାନେ ଦୁର୍ଭିକ୍ଷର ହାହାକାର ଓ କରୁଣ ଚିତ୍କାର ମଧ୍ୟରେ ଅନଶନଗ୍ରସ୍ତ ଯୁବକ-ଯୁବତୀଙ୍କ ଦେହମନରେ ଯୌନଲିପ୍ସାର ଆକର୍ଷଣ ଅନୁଭବ କରନ୍ତି । ବଧବାକୁ ଅସ୍ଥିକଂକାଳମାନ ଅନ୍ନକାଙ୍ଗାଳ ସହିତ ପ୍ରେମ-ଲିପ୍ତ କରାନ୍ତି । ଯେଉଁମାନେ ଏପରି କରନ୍ତି, ସେମାନେ ଅବଶ୍ୟ ଆଧୁନିକ ମନସ୍ତତ୍ତ୍ୱକୁ ଆଣି ତାଙ୍କପକ୍ଷର ସମର୍ଥକରୂପେ ଉପସ୍ଥାପିତ କରିବେ; କିନ୍ତୁ ଦରଦୀ ଗୋପବନ୍ଧୁ ବୁଝି-ଥିଲେ, ମୁଠେ ପେଟପୂରାଇ ଖାଇବାକୁ ଯେଉଁ ଲୋକେ ପାଉନାହାନ୍ତି, ସେମାନଙ୍କର ଯୌବନ କାହିଁ, ସେମାନଙ୍କର ଦେହ-ବିଳାସ କାହିଁ ? ସେମାନଙ୍କର ମନୁଷ୍ୟତାର ବିକାଶ କାହିଁ ? ଏଥିରେ ପ୍ରେମର ବା ସ୍ଥାନ କାହିଁ ? ଗୋପବନ୍ଧୁ ଗ୍ରାମର ଯେଉଁ ମର୍ମନ୍ତୁଦ ଦୃଶ୍ୟ ଦେଖିଥିଲେ, ତାହାର ବାସ୍ତବ ପ୍ରତିଚ୍ଛବି ଏହିପରି —

'ଉଦରଜ୍ୱାଳାରେ କେତେ ନରନାରୀ
ଛାଡ଼ି ଘରଦ୍ୱାର ଯାଆନ୍ତି ବାହାରି ।
ପଡ଼ିଅଛି ତହିଁ କାହିଁ ବା ଗୃହିଣୀ
ଶ୍ମଶାନ ପରାୟେ ଦିଶେ ନଗ୍ରାଟିଆ ।
ପଶିଗଲେ ଗ୍ରାମେ ନ ଶୁଭେ ଶବଦ
ବେଦମନ୍ତ୍ର କିବା ଭାଗବତ ପଦ ।'

ଦୋଷଦର୍ଶୀ ସମାଲୋଚକ ଏଠାରେ ପଚାରିପାରେ, ଏତ କେବଳ ବିବୃତି ପ୍ରଧାନ ବର୍ଣ୍ଣନା, ଏଠାରେ ଗୋପବନ୍ଧୁ ସାମ୍ବାଦିକ ନା କବି ? ଏଥିରେ କବିର କଳ୍ପନା କାହିଁ ? ଶିଳ୍ପର ନୈପୁଣ୍ୟ କାହିଁ ? ସୌନ୍ଦର୍ଯ୍ୟର ମନୋହାରିଣୀ ଭଙ୍ଗିମ ଛଟା କାହିଁ ? ରୂପକଳ୍ପର ବିଦ୍ୟୁତ୍ ଝଲକ କାହିଁ ? ଯାହା ନାହିଁ ତାହା ହିଁ ଗୋପବନ୍ଧୁଙ୍କ କବିତାର ସୌନ୍ଦର୍ଯ୍ୟ । ପ୍ରତ୍ୟକ୍ଷ ଅନୁଭୂତି ହିଁ ଏ କବିତାର ପ୍ରାଣ । ଗଣଚେତନା ସୃଷ୍ଟିକରିବା ଏହାର ଉଦ୍ଦେଶ୍ୟ । ଛଳନା, ପେଖନା ଓ କଳ୍ପନାରେ ସତ୍ୟକୁ ପ୍ରଚ୍ଛନ୍ନକରି ଆତ୍ମପ୍ରସାଦ ଲାଭକରିବା ତାଙ୍କର ସାହିତ୍ୟ ନୀତି ନୁହେଁ । ତାଙ୍କର ସୁନ୍ଦର, ଶିବ ଓ ସତ୍ୟ ସହିତ ଅଙ୍ଗାଙ୍ଗୀଭାବରେ ଜଡ଼ିତ, କିନ୍ତୁ ସମଗ୍ର 'ବନ୍ଦୀର ଆତ୍ମକଥା' ବହିଟି ପଢ଼ିଲେ ଏହାର ଗଠନ ଶୃଙ୍ଖଳା ଓ ବିଷୟ ଉପସ୍ଥାପନରେ ଯେ କଳା-କୌଶଳ ନାହିଁ, ତାହା କେହି ଅସ୍ୱୀକାର କରିପାରିବ ନାହିଁ । ଯେଉଁଠାରେ ମହାକରୁଣା ଓ ମାନବିକତାର ଅମୃତମୟ ସ୍ପର୍ଶ, ସେଠାରେ କାବ୍ୟର କୁଟିଳତାର ସ୍ଥାନ ବା କାହିଁ ?

---

## ସପ୍ତମ ପରିଚ୍ଛେଦ

### ଧର୍ମପଦ ଓ ନଚିକେତା

'ଧର୍ମପଦ' ଏକ କିମ୍ବଦନ୍ତୀମୂଳକ ଗାଥାକାବ୍ୟ । 'ନଚିକେତା ଉପାଖ୍ୟାନ' କଠୋପନିଷଦର ଅନୁବାଦ । 'ଧର୍ମପଦ' ଓ 'ନଚିକେତା' ଉଭୟେ ଅଳ୍ପବୟସ୍କ ବାଳକ; କିନ୍ତୁ ଅସାମାନ୍ୟ ଶକ୍ତିସମ୍ପନ୍ନ । ବାଳକମାନଙ୍କଠାରେ ଏପରି ଅଲୌକିକ ଶକ୍ତିର ଆବିର୍ଭାବରେ କବି ଗୋପବନ୍ଧୁଙ୍କର ଅବିଶ୍ୱାସ କିମ୍ବା ସନ୍ଦେହ ନାହିଁ । ସେହି ଲୀଳାମୟ ବିଶ୍ୱବିଧାତାଙ୍କ ବିଚିତ୍ର ସୃଷ୍ଟିରେ ସବୁ ସମ୍ଭବ । ତେଣୁ ବାରବର୍ଷ ବୟସ୍କ ବାଳକ ପକ୍ଷରେ କୋଣାର୍କ ମନ୍ଦିରର ଅସମ୍ପୂର୍ଣ୍ଣ କାର୍ଯ୍ୟ ଗୋଟିଏ ରାତିମଧ୍ୟରେ ସମ୍ପନ୍ନ କରିବା ଅସମ୍ଭବ ନୁହେଁ କି ଶିଶୁ ନଚିକେତାଙ୍କ ପକ୍ଷରେ ଯମଲୋକକୁ ଯାଇ ମୃତ୍ୟୁ-ଦେବତା ଯମଙ୍କଠାରୁ ବ୍ରହ୍ମତତ୍ତ୍ୱ ଶିକ୍ଷା କରି ତାକୁ ମର୍ତ୍ତ୍ୟମଣ୍ଡଳରେ ପ୍ରଚାର କରିବା କାର୍ଯ୍ୟ ମଧ୍ୟ ଅବିଶ୍ୱାସ ନୁହେଁ । ଏ ଯୁଗରେ ମଧ୍ୟ ଏପରି ନୈସର୍ଗିକ ପ୍ରତିଭାସମ୍ପନ୍ନ ବାଳକ ବାଳିକା ଦେଖାଯାନ୍ତି, ଯେଉଁମାନେ ସେମାନଙ୍କର ବିଦ୍ୟା, ବୁଦ୍ଧି, ମେଧା ଓ ସ୍ମୃତି-ଶକ୍ତିରେ ଜଗତକୁ ସ୍ତମ୍ଭୀଭୂତ କରି ଦେଇଥାନ୍ତି । ପୁରାଣ ଓ ଇତିହାସର ଦୃଷ୍ଟାନ୍ତ କଥା ଛାଡ଼ । ଗୋପବନ୍ଧୁ ନିଜେ ତାଙ୍କ 'ଧର୍ମପଦ'ର ଭୂମିକାରେ ଲେଖିଅଛନ୍ତି, 'ସମ୍ପ୍ରତି ବ୍ରହ୍ମଦେଶରେ ପାଞ୍ଚବର୍ଷର ଗୋଟିଏ ବାଳକ ଧର୍ମବିଷୟକ ନାନା ଗୂଢ଼ ତତ୍ତ୍ୱ ପ୍ରଚାର କରୁଅଛନ୍ତି ।' ଏତ ଖୁବ୍ ଅଳ୍ପଦିନର କଥା—କୁମାରୀ କଳ୍ପନା ତାଙ୍କ ଗୁରୁଙ୍କ ସହିତ କଟକ ଆସି ଏକ ବିରାଟ ଜନସଭାରେ ନାନା ଶ୍ଳୋକର ଆବୃତ୍ତି ଓ ବ୍ୟାଖ୍ୟା କରି ଶ୍ରୋତାମାନଙ୍କୁ ମୁଗ୍ଧ କରି ଦେଇଥିଲେ । ତାଙ୍କର ବୟସ ସେତେବେଳେ ବାର କିମ୍ବା ତେର ।

କିଶୋର ଧର୍ମପଦ ଓ ନଚିକେତାଙ୍କର ଅସାଧ୍ୟ ସାଧନ ଗୋପବନ୍ଧୁଙ୍କ ଅଧ୍ୟାତ୍ମପ୍ରେରଣା ଓ ମାନବିକତାକୁ ଜାଗ୍ରତ ଓ ଉଦ୍‌ବୁଦ୍ଧ କରିଅଛି । ତାଙ୍କର ତ୍ୟାଗପୂତ ଜୀବନକୁ ଅଧିକ ମହୀୟାନ୍ ଓ ଶକ୍ତିଶାଳୀ କରିଅଛି । ତାଙ୍କର ପ୍ରାଣକୁ ସ୍ପନ୍ଦିତ

କରିଅଛି । ଯାହା ଜଣେ ଦୁଇଜଣ କିଶୋର ପକ୍ଷରେ ସମ୍ଭବ, ତାହା ଯୁବକ ଓ ବର୍ଷୀୟାନମାନଙ୍କ ପକ୍ଷରେ ଦୁଃସାଧ୍ୟ ନୁହେଁ, ଏହି ଭାବରେ ଅନୁପ୍ରାଣିତ ହୋଇ ସେ ଜନଶ୍ରୁତିକୁ ଅବଲମ୍ବନ କରି 'ଧର୍ମପଦ' ରଚନା କରିଅଛନ୍ତି, ଏବଂ ଉପନିଷଦକୁ ଅବଲମ୍ବନ କରି ନଚିକେତା ଉପାଖ୍ୟାନ ପ୍ରଣୟନ କରିଅଛନ୍ତି । 'ଧର୍ମପଦ' ଓ 'ନଚିକେତା ଉପାଖ୍ୟାନ' ଏହି ଦୁଇଟି ପୁସ୍ତକରେ କବିଙ୍କର ଅନ୍ତର୍ଗତ ଜୀବନ-ସାଧନା ମନ୍ତ୍ର ପ୍ରତିଫଳିତ ହୋଇଅଛି । ସମଗ୍ର ଶିଳ୍ପିକୁଳର କଲ୍ୟାଣ ନିମନ୍ତେ ଧର୍ମପଦ ନୀରବରେ ଆତ୍ମୋତ୍ସର୍ଗ କରିଅଛି । ନିଜେ ମରି ବାରଶହ ବଢ଼ାଇଙ୍କି ବଞ୍ଚାଇଛି । ବୃହତ୍ତର ମାନବ-ସମାଜର କଲ୍ୟାଣ ନିମନ୍ତେ ସେ ନିଜ ଜୀବନକୁ ଅକାତରେ ଆହୁତି ଦେଇଛି । ବହୁ ଜନର ସର୍ବାଧିକ ହିତ ସାଧନ କରି ସେ ନିଜ-ଜୀବନକୁ ସାର୍ଥକ କରିଅଛି । ମାନବ ଜୀବନର ପୂର୍ଣ୍ଣତାର ପ୍ରମାଣ-ଲିପି ଦେଇଯାଇଛି । ସେ ନିଜକୁ ବ୍ୟକ୍ତିତ୍ୱର ସଙ୍କୀର୍ଣ୍ଣ ଗଣ୍ଡୀରୁ ମୁକ୍ତ କରି ବିଶ୍ୱମୟ କରିଦେଇଛି । କବି ଗୋପବନ୍ଧୁ 'ଧର୍ମପଦ'ର ଭୂମିକାରେ ଲେଖିଅଛନ୍ତି—'ଏହା ବିକ୍ଷିପ୍ତ ହୃଦୟର ସାମୟିକ ସ୍ପନ୍ଦନ ମାତ୍ର ।' ଦେଶ ଓ ଦଶ ନିମନ୍ତେ ଯେ ଆତ୍ମୋତ୍ସର୍ଗ କରିଅଛି, ଏବଂ ଏହି ଆତ୍ମୋତ୍ସର୍ଗହିଁ ଯାହା ଜୀବନର ମୂଳମନ୍ତ୍ର, ସେହି କେବଳ ଏହି ଆତ୍ମତ୍ୟାଗର ମହିମା ଜାଣେ, ଏବଂ ସେହି ସୌଭାଗ୍ୟରୁ ବଞ୍ଚିତ ହେଲେ ତା'ର ହୃଦୟ ବେଦନାର୍ତ୍ତ ଓ ବିକ୍ଷିପ୍ତ ହେବା ସ୍ୱାଭାବିକ । ଏପର୍ଯ୍ୟନ୍ତ କବି କର୍ମକ୍ଷେତ୍ରରେ ଦୀନ ଦରିଦ୍ର ଓ ନିପୀଡ଼ିତମାନଙ୍କର ସେବା କରି ଯେଉଁ ତୃପ୍ତି ଲାଭ କରୁଥିଲେ, ସେ ତୃପ୍ତି କର୍ମକ୍ଷେତ୍ରରୁ ଆସି ବର୍ତ୍ତମାନ ଚିନ୍ତାକ୍ଷେତ୍ରରେ ସୀମାବଦ୍ଧ ହୋଇ ରହିଲା । ଦେଶ ଓ ଦଶ ନିମନ୍ତେ ଆତ୍ମୋତ୍ସର୍ଗରେ କି ସୁଖ ଓ ଗୌରବ ଅଛି···ଏହି ଚିନ୍ତା କାରାଗାରର ନିର୍ଜନ ପ୍ରକୋଷ୍ଠ ମଧ୍ୟରେ ତାଙ୍କ ହୃଦୟକୁ ଘନ ଘନ ଆଲୋଡ଼ିତ କଲା । 'ଧର୍ମପଦ'ର ସୃଷ୍ଟି କବି-ଚିତ୍ତର ଏହି ଆନ୍ଦୋଳନ ଓ ସ୍ପନ୍ଦନର ଫଳ । ଯେଉଁ ଜନଶ୍ରୁତିରେ ଏହି ଆତ୍ମୋତ୍ସର୍ଗର ଗୌରବ ପ୍ରକଟିତ, ଏବଂ ମନୁଷ୍ୟର ଉଦାର କର୍ତ୍ତବ୍ୟବୋଧର ଆଦର୍ଶ ଅନ୍ତର୍ନିହିତ, ଜନକଲ୍ୟାଣକାମୀ କବିପକ୍ଷରେ ସେ ଜନଶ୍ରୁତି ଉପେକ୍ଷଣୀୟ ନୁହେଁ; ତାଙ୍କ ମତରେ ଏହି ଜନଶ୍ରୁତିକୁ ଅବଲମ୍ବନ କରି କାବ୍ୟ, କାହାଣୀ କିମ୍ବା ଉପନ୍ୟାସ ରଚନା କଲେ ଏହା ଦେଶବାସୀଙ୍କ ପ୍ରାଣରେ ଗଭୀର ଆଲୋଡ଼ନ ସୃଷ୍ଟି କରିବ । ସେମାନେ ଦେଶ ଓ ଦଶର ଚିନ୍ତା କରିବାକୁ ପ୍ରେରଣା ପାଇବେ । ସମାଜର କଲ୍ୟାଣ ନିମନ୍ତେ ଆତ୍ମନିୟୋଗ କରିବେ । ତେଣୁ କାରାଗାରର ନିର୍ଜନ ପ୍ରକୋଷ୍ଠ ମଧ୍ୟରେ 'ବାରଶହେ ବଢ଼େଇରେ ଦାୟ, କି ପୁଅରେ ଦାୟ'···ଏହି ଜନଶ୍ରୁତିକୁ ଉପଜୀବ୍ୟ କରି ଧର୍ମପଦ ଗାଥାକାବ୍ୟ ସେ ରଚନା କଲେ ।

ଓଡ଼ିଶାର ଅକ୍ଷୟ କୀର୍ତ୍ତିସ୍ତମ୍ଭ କୋଣାର୍କ ମନ୍ଦିରର ନିର୍ମାଣ ସହିତ ଜଡ଼ିତ ଥିବା ଏହି ଜନଶ୍ରୁତିକୁ ଅବଲମ୍ବନ କରି ଗୋପବନ୍ଧୁଙ୍କ ପୂର୍ବରୁ କେହି କାବ୍ୟ-କାହାଣୀ

କିମ୍ବା ଉପନ୍ୟାସ ରଚନା କରି ନ ଥିଲେ । କରିଥିଲେ ମଧ୍ୟ ସେମାନେ ତାଙ୍କ ଲେଖାରେ ଏତେ ଜୀବନୀଶକ୍ତିର ସଞ୍ଚାର କରିପାରି ନଥାନ୍ତେ । ହୁଏତ ସେ ଲେଖାରେ କାବ୍ୟ କଳାର ସୌନ୍ଦର୍ଯ୍ୟ ଦେଖିବାକୁ ମିଳିଥାନ୍ତା, ଶବ୍ଦର ଝଙ୍କାରରେ ପାଠକର ପ୍ରାଣ ବିମୋହିତ ହୋଇଥାନ୍ତା; କଳ୍ପନାର ରସାଳତାରେ ଚିତ୍ତରଂଜିତ ହୋଇଥାନ୍ତା, କିନ୍ତୁ ସେଥିରେ ଆମେ ଜୀବନ ସହିତ ସାହିତ୍ୟର ସୁସାମଞ୍ଜସ୍ୟ ଦେଖିବା ସୌଭାଗ୍ୟରୁ ବଞ୍ଚିତ ହୋଇଥାନ୍ତୁ । ଦେଶ ଓ ଦଶ ପାଇଁ ଉତ୍ସର୍ଗୀକୃତ ହୋଇଥିବା ଆତ୍ମାର ମର୍ମବାଣୀ ସେଥିରେ ପ୍ରକାଶ ପାଇନଥିବାରୁ ତାହା ଆମ ଚିତ୍ତକୁ ଏପରି ପ୍ରବଳ ଭାବରେ ସ୍ପନ୍ଦିତ କରି ନ ଥାନ୍ତା । ସେ କାବ୍ୟ କିମ୍ବା କାହାଣୀକୁ ଆମେ ପଢ଼ି ଜନଶ୍ରୁତିର କଥାବସ୍ତୁକୁ କେବଳ କେତେ ଦିନ ସକାଶେ ସ୍ମୃତିକୋଷରେ ସମାଧି ଦେଇଥାନ୍ତୁ; କିନ୍ତୁ କବିଙ୍କ ବ୍ୟକ୍ତିତ୍ୱର ନିବିଡ଼ ସମ୍ପର୍କ ଲାଭ କରନ୍ତୁ ନାହିଁ । କବି ରହନ୍ତେ ଚିର କାଳ ନିମନ୍ତେ ଯବନିକାର ଅନ୍ତରାଳରେ । କିନ୍ତୁ 'ଧର୍ମପଦ'ରେ ଆମ୍ଭେମାନେ ଦେଖିବାକୁ ପାଉ; ଗୋପବନ୍ଧୁ ଏଠାରେ ନିଜେ ଧର୍ମପଦ । ଧର୍ମପଦର ଜୀବନାଦର୍ଶହିଁ ତାଙ୍କର ଜୀବନ-ସାଧନାର ମନ୍ତ୍ର । ଅବଶ୍ୟ 'ଧର୍ମପଦ' ଏକ ନୈର୍ବ୍ୟକ୍ତିକ କାବ୍ୟ । ଏଥିରେ ଗୋପବନ୍ଧୁ ନିଜର ଚିନ୍ତା କେଉଁଠାରେ ଉତ୍କଟ ଭାବରେ ପ୍ରକାଶ କରି ନାହାନ୍ତି । ନୀତି ଉପଦେଷ୍ଟା ଭାବରେ ଦେଶ ଓ ଦଶର ସେବାରେ ଜୀବନ ଉତ୍ସର୍ଗ କରିବାକୁ କାହାକୁ ପାଣ୍ଡିତ୍ୟପୂର୍ଣ୍ଣ ଉପଦେଶ ଦେଇ ନାହାନ୍ତି । କିନ୍ତୁ ଧର୍ମପଦର ତ୍ୟାଗ ଓ ତିତିକ୍ଷାହିଁ ଗୋପବନ୍ଧୁଙ୍କର ତ୍ୟାଗ ଓ ଆତ୍ମାହୁତି । ଧର୍ମପଦର ଆଦର୍ଶ ଯେପରି, 'ଏକର ବିନାଶରେ ଅନେକର ଉଦୟ' ଗୋପବନ୍ଧୁଙ୍କ ଜୀବନର ଆଦର୍ଶ ମଧ୍ୟ ତାହା । ଧର୍ମପଦର ଜୀବନରେ ଯେପରି ଦେଶ ଓ ଦଶ ନିମନ୍ତେ ଯେଉଁ ଆତ୍ମୋତ୍ସର୍ଗ, ତାହା ଅଧ୍ୟାତ୍ମପ୍ରେରଣାର ରୂପାନ୍ତର ମାତ୍ର, ଅର୍ଥାତ୍ ଯାହାର ପ୍ରାଣରେ ସର୍ବପ୍ରାଣୀର ହିତ ଅଙ୍କିତ ନୁହେଁ, ଏବଂ ଯେ ନିଜ ପ୍ରାଣରେ ଭଗବତ୍-ସତ୍ତା ଉପଲବ୍ଧି କରି ନାହିଁ, ସେ କଦାପି ଦେଶ ଓ ଜାତି ସକାଶେ ଆତ୍ମବଳି ଦେଇପାରେ ନାହିଁ । ଗୋପବନ୍ଧୁଙ୍କ ଜୀବନର ପରମ ତତ୍ତ୍ୱଟି ମଧ୍ୟ ସେଇଆ । ଗୋପବନ୍ଧୁ ଯେପରି ଆକୁଳ କଣ୍ଠରେ ଭଗବାନଙ୍କୁ ନିବେଦନ କରି କହି-ଅଛନ୍ତି, 'ଯେତେବେଳେ ଯାହା କରିଛ ହେ ପ୍ରଭୁ, ସେତେବେଳେ ତାହା କହିନ୍ତି ।' ଧର୍ମପଦ ସେହିପରି କୋଣାର୍କ ମନ୍ଦିରର ଚୂଡ଼ାରୁ ଚନ୍ଦ୍ରଭାଗା ନଦୀକୁ ଲମ୍ଫପ୍ରଦାନ କଲାବେଳେ ଭଗବାନଙ୍କୁ କାତର କଣ୍ଠରେ ଡାକି କହିଛି—

'ମୋ ହୃଦୟ-ସ୍ୱାମୀ ପ୍ରଭୁ ଅନ୍ତର୍ଯ୍ୟାମୀ
ଦେଖାଇଲ ଯାହା ଥରେ
ସେ ଅମୃତ-ଗତି ଦିଅ ପ୍ରାଣପତି
ଜୟ ଜଗଦୀଶ ହରେ ।'

ଯେଉଁ ମହାସ୍ମରଣୀ ଅଧ୍ୟାତ୍ମ-ପ୍ରେରଣାରୁ 'ଧର୍ମପଦ'ର ଉଦ୍ଭବ, ସେହି ବିଶୁଦ୍ଧ ସାତ୍ତ୍ୱିକଭାବ ଏବଂ ଭଗବତ୍ ପ୍ରେରଣାରୁ 'ନଚିକେତା-ଉପାଖ୍ୟାନ'ର ସୂତ୍ରପାତ । ଗୋପବନ୍ଧୁ ହଜାରିବାଗ ଜେଲରେ ଥିଲାବେଳେ ଜାଣେ ବିଶିଷ୍ଟ ସଂସ୍କୃତଜ୍ଞ ପଣ୍ଡିତଙ୍କ ସାହାଯ୍ୟରେ ଉପନିଷଦ ପାଠ କରୁଥିଲେ । କଠୋପନିଷଦର ନଚିକେତା ଉପାଖ୍ୟାନ ତାଙ୍କ ପ୍ରାଣକୁ ନିବିଡ଼ଭାବରେ ଆକର୍ଷଣ କରିଥିଲା । ଦେଶ ଓ ଦଶ ନିମନ୍ତେ ଧର୍ମପଦ ଯେପରି ଆତ୍ମୋତ୍ସର୍ଗ କରି ସର୍ବାଧିକ ଲୋକଙ୍କର ସର୍ବାଧିକ ହିତସାଧନ କରିଥିଲା, ନଚିକେତା ସେହିପରି ପିତୃବାକ୍ୟ ପାଳନ କରି ଯମ-ଲୋକକୁ ଯାଇ ଯମଙ୍କଠାରୁ ବ୍ରହ୍ମତତ୍ତ୍ୱ ଶିକ୍ଷା କରି ତାହା ଜଗତର ମଙ୍ଗଳ ନିମନ୍ତେ ପ୍ରଚାର କରିଥିଲା । ଧର୍ମପଦ ଯେପରି ମୃତ୍ୟୁଞ୍ଜୟ, ନଚିକେତା ମଧ୍ୟ ସେହିପରି ମରଣ-ବିଜୟୀ—ଅମୃତଲୋକର ଅଧିକାରୀ । ପ୍ରେୟର ପଥ ପରିହାର କରି ଦେଶ ଓ ଦଶର ହିତ ନିମନ୍ତେ ଧର୍ମପଦ ଯେପରି ପରମଶ୍ରେୟର ପଥ ସ୍ୱତଃ ପ୍ରବୃତ୍ତ ହୋଇ ଗ୍ରହଣ କରିଥିଲା, ନଚିକେତା ସେହିପରି ଶ୍ରେୟପଥର ସାଧକ । ଯେଉଁ ପ୍ରେୟପଥ ଅନୁସରଣ କରି ଲୋକେ ଧନ-ଜନ, ଗୋପ-ଲକ୍ଷ୍ମୀ, ଆଳସ୍ୟ, ବିଳାସ ଓ ଆରାମକୁ ଜୀବନର ଚରମ ଲକ୍ଷ୍ୟ ବୋଲି ମନେକରି ସେହି ସାଂସାରିକ ସୁଖ-କାମନାରେ ନିଜକୁ ମଜାଇ ଦିଅନ୍ତି, 'ଯସ୍ୟାଂ ମଜ୍ଜନ୍ତି ବହବୋ ମନୁଷ୍ୟାଃ' ଧର୍ମପଦ ଓ ନଚିକେତା ସେ ଆପାତ-ରମଣୀୟ ଓ ଚିତ୍ତବିଭ୍ରାନ୍ତିକାରୀ ସୁଖକୁ ସୁଖ ବୋଲି ମନେ କରି ନାହାନ୍ତି । ସେମାନେ ଇନ୍ଦ୍ରିୟ-ପ୍ରଲୋଭନର ଦାସ ନୁହନ୍ତି । ଉଭୟଙ୍କ ପ୍ରାଣରେ ବିଦ୍ୟମାନ ଜାଗ୍ରତ ଶୁଭବୁଦ୍ଧି । ଉଭୟେ ପିତାଙ୍କର ଅମଙ୍ଗଳ ନିବାରଣ ନିମନ୍ତେ ଆତ୍ମ-ପ୍ରଦାନରେ ଅକୁଣ୍ଠିତଚିତ୍ତ । ନଚିକେତା ଯମଦେବତାଙ୍କୁ ନିର୍ଭୀକ କଣ୍ଠରେ କହିଥିଲା, "ବ୍ରହ୍ମତତ୍ତ୍ୱ ବ୍ୟତୀତ ଆଉ କୌଣସି ବର ମୋର କାମ୍ୟ ନୁହେଁ । ମୋର ଏ ଦାସଦାସୀ, ଏ ଧନରତ୍ନ, ଏ ନୃତ୍ୟଗୀତରେ କି ପ୍ରୟୋଜନ ? ମନୁଷ୍ୟର ବିତ୍ତରେ ତୃପ୍ତି ନାହିଁ । 'ନ ବିତ୍ତେନ ତର୍ପଣୀୟଃ ମନୁଷ୍ୟଃ' । ଏହି ରଥ, ଏହି ନୃତ୍ୟ ଗୀତ ଏବଂ ବିଦ୍ୟାଧରୀ ଓ ଅପସ୍ମରା ଆପଣଙ୍କର ହୋଇ ଚିରକାଳ ଥାଉ, ମୋର ଏ ସବୁ ଲୋଡ଼ା ନାହିଁ । ମୋର ଲୋଡ଼ା ବ୍ରହ୍ମଜ୍ଞାନ, ଆତ୍ମତତ୍ତ୍ୱ । ମନୁଷ୍ୟ ଯାହାଦ୍ୱାରା ଅମୃତତ୍ତ୍ୱ ଲାଭ କରିପାରିବ, ମୁଁ ତାହାର ସନ୍ଧାନ ଜାଣିବାକୁ ଚାହେଁ । ମୁଁ ପୃଥିବୀକୁ ସ୍ୱର୍ଗ କରିବାକୁ ଚାହେଁ । ମୁଁ ସ୍ୱର୍ଗ ଓ ପୃଥିବୀ ମଧ୍ୟରେ ସୁନାର ସେତୁ ଗଠନ କରିବାକୁ ଚାହେଁ । ମୋର ଏ ଧନରତ୍ନରେ କି ପ୍ରୟୋଜନ ? ମୋତେ ସେହି ଗହନ ଆତ୍ମ-ତତ୍ତ୍ୱର କଥା କହନ୍ତୁ । ଏ ବରଛଡ଼ା ମୋର ଅନ୍ୟ କୌଣସି ବର କାମ୍ୟ ନୁହେଁ—'ନାନ୍ୟଂ ତସ୍ମାନ୍ନଚିକେତା ବୃଣୀତେ' ।"
ଧର୍ମପଦ ପିତାଙ୍କଠାରୁ ବିଦାୟ ନେଇ ଆତ୍ମବଳି ଦେବା ପୂର୍ବରୁ ଜୀବନର ସେହି ନିଶ୍ଚିତ ପରମତତ୍ତ୍ୱର ଉତ୍କର୍ଷ ପ୍ରତିପାଦନ କରିବାକୁ ଯାଇ କହିଥିଲା—

"ଏ ଜଗତ ବାପା ମହା ମୁଖଶାଳା
ନରନାରୀ ଯଜମାନ;
ସେହି କୃତୀ, ଯେହୁ ପରହିତେ କରେ
ଜୀବନ ଆହୁତି ଦାନ ।"

ଗୋପବନ୍ଧୁ ତାଙ୍କର ଜୀବନାଦର୍ଶକୁ ଧର୍ମପଦ ଓ ନଚିକେତାଙ୍କ ଆତ୍ମ-ବିସର୍ଜନରେ ପ୍ରତିଫଳିତ ହେବାର ଯେଉଁପରି ଭାବରେ ଉପଲବ୍ଧି କରିଥିଲେ, ସେହି ଉପଲବ୍ଧି ଓ ଆତ୍ମ-ତନ୍ମୟତାର କାବ୍ୟିକ ଅଭିବ୍ୟକ୍ତି ହେଉଛି 'ଧର୍ମପଦ' ଏବଂ କଠୋପନିଷଦର ଅନୁବାଦ 'ନଚିକେତା ଉପାଖ୍ୟାନ' । ଏ ଉଭୟେ ତାଙ୍କର ଜୀବନ-ପ୍ରେରଣାର ଅଫୁରନ୍ତ ଉତ୍ସ । ମାନବ ସେବାହିଁ ଅଧ୍ୟାତ୍ମ-ସାଧନା । ଧର୍ମପଦ ଜୀବନର ଲକ୍ଷ୍ୟ ମାନବ-ସେବା ଏବଂ ନଚିକେତା ଯେଉଁ ଅଧ୍ୟାତ୍ମ-ପ୍ରେରଣା ଯମଙ୍କଠାରୁ ଲାଭ କରିଥିଲେ, ଚରାଚର ବିଶ୍ୱରେ ତାହା ପରିବ୍ୟାପ୍ତ କରିବା ପାଇଁ ସେ ଦୃଢ଼ନିଷ୍ଚୟ । ଧର୍ମପଦ ଓ 'ନଚିକେତା ଉପାଖ୍ୟାନ'ରେ ମନୁଷ୍ୟ ଜୀବନର ସେହି ଏକ ନିଗୂଢ଼ ଅଧ୍ୟାତ୍ମତତ୍ତ୍ୱ ପ୍ରକାଶ ପାଇଛି । ତେଣୁ କେବଳ 'ବନ୍ଦୀର ଆତ୍ମକଥା' ନୁହେଁ 'ଧର୍ମପଦ' ଓ 'ନଚିକେତା ଉପାଖ୍ୟାନ'କୁ ମଧ୍ୟ ଗୋପବନ୍ଧୁଙ୍କ 'ଜୀବନର ଉପନିଷଦ' ବୋଲି ଗ୍ରହଣ କରାଯାଇପାରେ । ଜୀବନର ଏ ଅମୃତତତ୍ତ୍ୱର ସନ୍ଧାନ ମଧ୍ୟ ଆମ୍ଭେମାନେ ତାଙ୍କର ଯୌବନରେ ରଚିତ 'ଶିବରାତ୍ରି' କବିତାରେ ଦେଖିବାକୁ ପାଉ, ଯେଉଁଠାରେ ସେ କଠୋପନିଷଦର ସେହି ଉଦାତ୍ତ ମନ୍ତ୍ରର ମର୍ମବାଣୀ ପ୍ରତିଧ୍ୱନିତ କରି ଉଦ୍‌ବୋଧନ ଦେଇଅଛନ୍ତି—

"ସମସ୍ତ ଜୀବନ କର ଏକ ଶିବରାତ୍ରି,
ଅନ୍ଧାରେ ନହୁଡ଼ ପଥ ହେ ସ୍ୱରଗ-ଯାତ୍ରୀ ।"

କର୍ମଯୋଗୀ ବିବେକାନନ୍ଦ ତ କଠୋପନିଷଦର ସେହି ମହାମନ୍ତ୍ରରେ ଜନ-ସମାଜକୁ ଦୀକ୍ଷିତ କରିବା ନିମନ୍ତେ ବରମ୍ବାର ଆବୃତ୍ତି କରୁଥିଲେ—

"ଉତ୍ତିଷ୍ଠତ ଜାଗ୍ରତ
ପ୍ରାପ୍ୟ ବରାନ୍ ନିବୋଧତ
କ୍ଷୁରସ୍ୟ ଧାରା ନିଶିତା ଦୁରତ୍ୟୟା
ଦୁର୍ଗଂ ପଥସ୍ତତ୍ କବୟୋ ବଦନ୍ତି ।"

ଗୋପବନ୍ଧୁ ଏହି ଶ୍ଳୋକର ମର୍ମାନୁବାଦ କରି ଲେଖିଛନ୍ତି—

"ଉଠ ହେ ମୁମୂର୍ଷୁ ଚେତେ ଜାଗ ହେ ସତ୍ୱର
ଶିର ଘୋର ମୋହନିଦ୍ରା ଦୂରେ ପରିହରି ।

'ବରେଣ୍ୟ ବ୍ରହ୍ମଜ୍ଞ ଗୁରୁ ପଦାନ୍ତେ ଆସି
ଜ୍ଞାନ ଜାଗ୍ରତ ହୁଅ ହେ ମୋକ୍ଷ ପ୍ରୟାସୀ ।
କହନ୍ତି ତ୍ରିକାଳଦର୍ଶୀ କ୍ଷୁରଧାର ସମ
ବ୍ରହ୍ମତତ୍ତ୍ୱ ମାର୍ଗ ଏହୁ ଶାଣିତ ଦୁର୍ଗମ ।
ସୁଦୃଢ଼ ସାଧନା ବିନା ଅସାଧ୍ୟ ଅତ୍ୟନ୍ତ
ଉଠ ନର ଜାଗ ଲଭ ସିଦ୍ଧି ସୁନିଶ୍ଚିନ୍ତ ।'

ଗୋପବନ୍ଧୁ ଆଜୀବନ ଯେଉଁ ସାଧନାରେ ନିଜକୁ ବ୍ରତୀକରି ସକଳ ଐହିକ ଭୋଗ ସ୍ପୃହାରେ ଜଳାଞ୍ଜଳି ଦେଇଥିଲେ, ଏବଂ ଯେଉଁ ତ୍ୟାଗମନ୍ତ୍ରଦ୍ୱାରା ସେ ଦୀନଦୁଃଖୀଙ୍କ ସହିତ ଏକାତ୍ମ ହୋଇ ବିଶ୍ୱାତ୍ମଭାବରେ ଅନୁପ୍ରାଣିତ ହୋଇଥିଲେ, ସେ ସାଧନାର ପଥ କ୍ଷୁରଧାର ପରି ଶାଣିତ, ଗିରିସଙ୍କଟ ପରି ତାହା ବିପଦସଙ୍କୁଳ । ତଥାପି ସେ ପଥରେ ସେ ଅଟଳ ଅଚଳ ରହି ଧର୍ମପଦ ଓ ନଚିକେତାଙ୍କ ପରି ସର୍ବାଧିକ ଲୋକଙ୍କର ସର୍ବାଧିକ ହିତ ସକାଶେ ନିଜର କର୍ତ୍ତବ୍ୟ ସମ୍ପାଦନ କରିଯାଇ ଅଛନ୍ତି । ତେଣୁ 'ଧର୍ମପଦ' ଓ 'ନଚିକେତା-ଉପାଖ୍ୟାନ'କୁ ସାରସ୍ୱତ କୃତିରୂପେ ପୃଥକ୍‌ଭାବରେ ବିଚାର ନ କରି ତାଙ୍କ ଜୀବନର କର୍ମ-ପ୍ରବାହ ସହିତ ମୁକ୍ତକରି ବିଚାର କଲେ ଦେଖାଯିବ, ଏହା ଏକ ମହାନ୍ 'ଚରିତ୍ରାନୁବନ୍ଧୀ ଜୀବନର ଆତ୍ମଲିପି' ମାତ୍ର । ଗୋପବନ୍ଧୁଙ୍କ ଜୀବନଚରିତ ଲେଖକଙ୍କର ମଧ୍ୟ ଏହା ପ୍ରଣିଧାନର ଯୋଗ୍ୟ ।

'ଧର୍ମପଦ' 'ଗାଥାକାବ୍ୟ' ନା 'ଗୀତିକାବ୍ୟ' ଏ ପ୍ରଶ୍ନର ସମାଧାନ ଦୁରୂହ ବ୍ୟାପାର । ଆଧୁନିକ ଗାଥା-କାବ୍ୟ ସାହିତ୍ୟକୁ ସତ୍ୟବାଦୀ-ବିଦ୍ୟାଳୟର ଅବଦାନ ତାତ୍ପର୍ଯ୍ୟପୂର୍ଣ୍ଣ ଓ ଅବିସ୍ମରଣୀୟ । କବି ଗୋଦାବରୀଶ ମିଶ୍ରଙ୍କ 'ପଦ୍ମାବତୀ' 'କାଳିକାଈ' 'ଶାଳମାଧବ' 'ମାମୁଁଭଣଜା' ପ୍ରଭୃତି ଉଚ୍ଚକୋଟିର ଗାଥାକାବ୍ୟ । ଏହି ଗାଥାକାବ୍ୟମାନଙ୍କର ଉପଜୀବ୍ୟ ବସ୍ତୁ ବହୁକାଳରୁ ଜନମୁଖରେ ପ୍ରଚଳିତ କିମ୍ବଦନ୍ତୀ ଓ ଲୋକକଥା । 'ଧର୍ମପଦ' ସେହିପରି ଏକ କିମ୍ବଦନ୍ତୀର ଆଶ୍ରୟରେ ରଚିତ । ଗୋପବନ୍ଧୁଙ୍କ ପୂର୍ବରୁ ପଣ୍ଡିତ କୃପାସିନ୍ଧୁ ମିଶ୍ର ତାଙ୍କର 'କୋଣାର୍କ' ଗ୍ରନ୍ଥରେ ଏହି କିମ୍ବଦନ୍ତୀକୁ ଲିପିବଦ୍ଧ କରି ତାର ଐତିହାସିକ ବିଶ୍ଳେଷଣ କରିଥିଲେ; କିନ୍ତୁ ବାସ୍ତବବାଦୀ ଓ ସମାଜସେବକ ଗୋପବନ୍ଧୁ ସେ ଜନଶ୍ରୁତିକୁ ଏକ ନୂତନ ରୂପ ଦେଇଯାଇ ଅଛନ୍ତି । ଉତ୍କଳବାସୀଙ୍କୁ ନିଜ ଜାତୀୟ ଗୌରବରେ ଉଦ୍‌ବୁଦ୍ଧ କରିବା ଏହି କାବ୍ୟ-ପ୍ରଣୟନର ଅନ୍ୟତମ ଲକ୍ଷ୍ୟ । ଜନଶ୍ରୁତିରୁ ଜଣାଯାଏ, ବାଳକ ମଧ୍ୟରେ ପୁଅ ଦେଉଳର ମୁଣ୍ଡି ମାରିଦେବାରୁ ବାପ ବାରଶହ ବଢ଼େଇଙ୍କର ମାନମର୍ଯ୍ୟାଦା ଏବଂ ଜୀବନ-ରକ୍ଷା ନିମନ୍ତେ ନିଜେ ପୁଅକୁ ଦେଉଳ ଉପରୁ ଗଡ଼ାଇଦେଇ ମାରି

ପକାଇଥିଲି । ଗୋପବନ୍ଧୁଙ୍କର ସୁକୁମାର, ସମୁନ୍ନତ ଓ ସମ୍ବେଦନଶୀଳ ହୃଦୟ ପିତାର ଏପରି ନିଷ୍ଠୁର କାର୍ଯ୍ୟକୁ ଅସ୍ୱାଭାବିକ ଓ ଅବିଶ୍ୱାସ ମନେ କରିଛି । ତେଣୁ ସେ ପିତା ହାତରେ ପୁଅକୁ ନ ମରାଇ ପୁଅର ଆତ୍ମତ୍ୟାଗର କର୍ତ୍ତବ୍ୟ ଓ ଆଦର୍ଶ 'ଧର୍ମପଦ'ରେ ଉପସ୍ଥାପିତ କରିଅଛନ୍ତି । ଧର୍ମପଦକୁ ସେ ଜଣେ ଉତ୍କୃଷ୍ଟ ଗଣତାନ୍ତ୍ରିକ କର୍ମୀରୂପେ ଚିତ୍ରିତ କରିଅଛନ୍ତି । ଗଣତନ୍ତ୍ରର ସର୍ବଜନବିଦିତ ସେହି ବ୍ୟାଖ୍ୟା— 'Largest good of the largest number' 'ସର୍ବାଧିକ ସଂଖ୍ୟକ ଲୋକର ସର୍ବାଧିକ ହିତ' ଏହି କର୍ତ୍ତବ୍ୟ-ନୀତିର ମୂର୍ତ୍ତି-ବିଗ୍ରହ ରୂପେ ସେ ଧର୍ମପଦକୁ ଚିତ୍ରଣ କରି ଅଛନ୍ତି । କାବ୍ୟର ଗଠନ-ଶିଳ୍ପ ଓ ପରିବେଷଣ ଭଙ୍ଗୀ ଏହି ଗଣତାନ୍ତ୍ରିକ ଆଦର୍ଶଦ୍ୱାରା ନିୟନ୍ତ୍ରିତ ହୋଇଅଛି । ତେଣୁ 'ଧର୍ମପଦ' ଗାଥା-କାବ୍ୟ ହେଲେ ମଧ୍ୟ ଏହା ଆଧୁନିକ ଓଡ଼ିଆ-ସାହିତ୍ୟର ଏକ ପରମରମଣୀୟ ଗୀତି-କାବ୍ୟ । ଧର୍ମପଦକୁ ଆଶ୍ରୟ କରି କବିଙ୍କର ସ୍ୱଦେଶପ୍ରୀତି, ବଳିଷ୍ଠ ତ୍ୟାଗ ଓ ସେବା ମନୋଭାବ ଏଥିରେ ଛନ୍ଦେ ଛନ୍ଦେ ପ୍ରକଟିତ । କବିଙ୍କ ଅନ୍ତରର ଆନନ୍ଦ ଓ ବେଦନାର ନିହିତ ଅନୁଭୂତି ଏଥିରେ ସ୍ୱତଃସ୍ଫୂର୍ତ୍ତି ଭାବରେ ଉଚ୍ଛ୍ୱସିତ ହୋଇ ଉଠିଛି । ବେଦନା, ଓଡ଼ିଶାର ଧ୍ୱଂସମୁଖୀ ଗୌରବର ଦୁଃଖଦାୟକ ସ୍ମୃତିରେ, ଆନନ୍ଦ, ଦେଶ ଓ ଜାତି ନିମନ୍ତେ ଜୀବନ ଉତ୍ସର୍ଗ କରିବାର ସୁମହାନ ଆଦର୍ଶର ଅନୁଧାବନରେ । ଧର୍ମପଦ ମୁହଁରେ କବି ଯେଉଁ ପରମତତ୍ତ୍ୱ ଶୁଣାଇ ଅଛନ୍ତି—

'ଏକର ବିନାଶେ ଅନେକେ ପ୍ରକାଶେ
ସୃଷ୍ଟିର ଏ ନିତ୍ୟ ବିଧି,
ଏକର ଯା କ୍ଷୟ ଅନେକେ ଉଦୟ
ଅନେକ ଏକର ସିଦ୍ଧି ।
ବଂଶ ପଛେ ଯାଉ ଜାତି ବଢ଼ି ପାଉ,
ସାଧ ଏ ଉଦାର ନୀତି,
କୋଣାର୍କ ଦେଉଳ ଗାଉ ଚିରକାଳ
ତୁମ୍ଭ ପୁଣ୍ୟ-ତ୍ୟାଗ-ଗୀତି ।'

ତାହା ହିଁ ଗୋପବନ୍ଧୁଙ୍କ ଜୀବନର ତତ୍ତ୍ୱବାଣୀ । ତ୍ୟାଗ, ସେବା, ଦେଶ-ହିତୈଷିଣା ଓ ଆତ୍ମପ୍ରସାର, ଏ ଯାହାସବୁ ଗୋପବନ୍ଧୁଙ୍କର ଗୋପବନ୍ଧୁତ୍ୱ ସେସବୁ ମୂର୍ତ୍ତିମନ୍ତ ହୋଇ ଆତ୍ମପ୍ରକାଶ କରିଛି ଧର୍ମପଦର ଚରିତ୍ରରେ ଅଜ୍ଞାତ ଓ ଅଲକ୍ଷିତ ଭାବରେ । ଗୋପବନ୍ଧୁଙ୍କ ଆତ୍ମାର ପ୍ରତିଫଳନ ମାତ୍ର ଆମ୍ଭେମାନେ ଧର୍ମପଦରେ ଦେଖିବାକୁ ପାଉ, ତେଣୁ ଗାଥା-କାବ୍ୟ ମଧ୍ୟରେ ନିଜ ବ୍ୟକ୍ତିଗତ ଜୀବନର ପୁଣ୍ୟ

ଭିତ୍ତା ସର ଏହି ସେଉଁ ମଧୁର ମୋହନ ଆବେଗ-ଗର୍ଭିତ ପ୍ରସ୍ଫୁଟନ, ଏହାହିଁ ଧର୍ମପଦର ବୈଶିଷ୍ଟ୍ୟ-ଏହାହିଁ ଏହାର ଜନପ୍ରିୟତାର କାରଣ ।

'ଧର୍ମପଦ'ର ଆତ୍ମିକ ବୈଭବ କେବଳ ଗଣତନ୍ତ୍ର ଆଦର୍ଶର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ନୁହେଁ, ଏହାର ଭାଷା ବି ଗଣତାନ୍ତ୍ରିକ, ଗଣାଭିମୁଖୀ ଓ ଗଣାନୁମୋଦିତ । 'ଧର୍ମପଦ'ର ଭାଷା ସରଳ, ସହଜ ଅକୃତ୍ରିମ, ଏବଂ ହୃଦୟର ଭାଷା । କବିଙ୍କ କଥାରେ 'ଧର୍ମପଦ'ରେ 'କାବ୍ୟକଳାର କୁଟିଳତା' ବା 'ଶିଳ୍ପର ସୌକୁମାର୍ଯ୍ୟ' କିମ୍ବା 'କବିତାର ମୋହନ ମାଧୁରୀ' ନ ଥିଲେ ମଧ୍ୟ, ଭାଷାର ଏ ସ୍ୱତଃସ୍ଫୂର୍ତ୍ତି ପ୍ରବାହ ହିଁ ଏହାର ନୈସର୍ଗିକ ବୈଭବ । ଅଗଣିତ ପାଠକ-ପାଠିକାଙ୍କର ପ୍ରାଣକୁ ସ୍ପର୍ଶ କଲାଭଳି ଏପରି ଜନ-ସାହିତ୍ୟ ଆଜିକାଲି ଯୁଗରେ କେତୋଟି ଦେଖିବାକୁ ମିଳେ ? କରୁଣ, ବୀର ଓ ଶାନ୍ତରସର ସମାବେଶରେ ଏପରି ଅନବଦ୍ୟ କାବ୍ୟ ଆଧୁନିକ ଓଡ଼ିଆ ସାହିତ୍ୟରେ କାହିଁ ? ଓଡ଼ିଶାର ଦେବ-ମନ୍ଦିର-ମାନଙ୍କର ଗଠନ ଓ ଶିଳ୍ପନୈପୁଣ୍ୟର ମନୋମୁଗ୍ଧକର ସଂକ୍ଷିପ୍ତ ଅଥଚ କାଳାନୁକ୍ରମିକ ବିବରଣୀ ପାଠକଲେ ଜାତିର ଅତୀତ ଗୌରବ-ସ୍ମୃତିରେ ପାଠକର ପ୍ରାଣ ସ୍ପନ୍ଦିତ ହୋଇ ଉଠେ । ଆତ୍ମବିଶ୍ୱାସ ହିଁ ଜାତୀୟ ଉତ୍ଥାନର ପ୍ରଧାନ ଅବଲମ୍ବନ । ଆତ୍ମ-ଗ୍ଳାନି ଜର୍ଜରିତ ଜାତିର ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ । ତେଣୁ ଧର୍ମପଦକୁ ସେହି ଜାତୀୟ ଆତ୍ମପ୍ରତ୍ୟୟରେ ଉଦ୍‌ବୁଦ୍ଧ କରିବାକୁ ଯାଇ ମା' କହୁଛି:—

''ଗଢ଼ିଲେ ଯେ ଶିଳ୍ପୀ ପୁଣ୍ୟ ଶୁଭ୍ରସ୍ତମ୍ଭ
ସପ୍ତମାତୃକା ମୂରତି,
ନ କର ସଂଶୟ ଜାଣ ଆପଣାକୁ
ତାଙ୍କର ବଂଶ-ସନ୍ତତି ।''

ଧର୍ମପଦ ମା'ଠାରୁ ବିଦାୟ ନେଇ ଯେତେବେଳେ ବାପାଙ୍କ ସହିତ ସାକ୍ଷାତ କରିବାକୁ କୋଣାର୍କ ଯାଉଛି, ସେ ମୁହୂର୍ତ୍ତର ଦୃଶ୍ୟ କବିଙ୍କ ଲେଖନୀରେ ଅତ୍ୟନ୍ତ କରୁଣରସାତ୍ମକ ଏବଂ ମର୍ମସ୍ପର୍ଶୀ ହୋଇଉଠିଛି । ସେଠାରେ ଜନନୀର ବାତ୍ସଲ୍ୟ-ମମତା ଅପରୂପ ଅଭିବ୍ୟକ୍ତି ଲାଭକରିଛି । ସେହିପରି ବାରଶହ ବଢ଼େଇଙ୍କର ଜୀବନ ରକ୍ଷାକରିବା ନିମନ୍ତେ ଧର୍ମପଦ ଯେତେବେଳେ ବାପାଙ୍କଠାରୁ ବିଦାୟ ନେଇଛି, ସେତେବେଳର ଦୃଶ୍ୟ ମଧ୍ୟ ଯେପରି ଉଦାର, ଗମ୍ଭୀର, ସେହିପରି କରୁଣରସବ୍ୟଞ୍ଜକ ହୋଇଅଛି । ତେଣୁ ପଣ୍ଡିତ ନୀଳକଣ୍ଠ ଦାଶ ଧର୍ମପଦ'ର ଦୋଷ ସମ୍ବନ୍ଧରେ ଅନ୍ୟାନ୍ୟ କଥା ମଧ୍ୟରେ ଯେଉଁ ଅଭିମତ ତାଙ୍କ 'ଆତ୍ମଜୀବନୀ'ରେ ବ୍ୟକ୍ତ କରିଅଛନ୍ତି, ଏଥିରେ 'ନାଟକୀୟତା' ନାହିଁ,' ତାହା ଏକେବାରେ ଭିତ୍ତିହୀନ ବୋଲି ମନେହୁଏ । କାବ୍ୟର

ନାଟକୀୟତା ଦେଖିବାକୁ ହେବ ଚରିତ୍ରମାନଙ୍କ ଉକ୍ତି ପ୍ରତ୍ୟୁକ୍ତି ମଧ୍ୟରେ, ଘଟନାର ଅପ୍ରତି-ହତ ଗତିଶୀଳତାରେ, ନାନା ଘଟନାର ସଘନ ସହଜ ସମାବେଶରେ ଏବଂ ସେଥିର ସୁଖାତ୍ମକ କିମ୍ବା ଦୁଃଖାତ୍ମକ ପରିଣତିରେ । 'ଧର୍ମପଦ'ରେ ଏସବୁ ଉପାଦାନର ଅଭାବ ନାହିଁ । ମା' ପୁଅଙ୍କ ଉକ୍ତି ପ୍ରତ୍ୟୁକ୍ତି ଏବଂ ବାପ ପୁଅଙ୍କ ଉକ୍ତି ପ୍ରତ୍ୟୁକ୍ତି ଅତ୍ୟନ୍ତ ବାସ୍ତବ ଓ ସ୍ୱାଭାବିକ । ଧର୍ମପଦର ଘରଛାଡ଼ିବାଠାରୁ ଦେଉଳ ଉପରେ ଚଢ଼ି ଆତ୍ମବିସର୍ଜନ କରିବା ପର୍ଯ୍ୟନ୍ତ—ଏ ସକଳ ଘଟନାର ଗତି-ପ୍ରବାହରେ କେଉଁଠାରେ ମନ୍ଥରତା ନାହିଁ । ଅନାବଶ୍ୟକ ଘଟନାର ସମାବେଶ ନାହିଁ । ବର୍ଣ୍ଣନା ଗୁରୁତ୍ୱର ଅଡ଼ମ୍ବର ନାହିଁ । ନାଟକରେ ଗୋଟିଏ ମହାମୁହୂର୍ତ୍ତ (Climax) ଥାଏ । ନାଟକର ଚରମ —ଲୁତନ୍ତୁ ସେହିଠାରେ, ଦର୍ଶକର ଉତ୍କଣ୍ଠା ନିବୃତ୍ତି ଲାଭକରେ ସେହିଠାରେ । 'ଧର୍ମପଦ'ରେ ବି ସେହିପରି ଗୋଟିଏ ନାଟକୀୟ ଚରମ ମୁହୂର୍ତ୍ତ ଅଛି । ଏ ଚରମ ମୁହୂର୍ତ୍ତ କୌଣସି ବାହ୍ୟ ଘଟନାରେ ନାହିଁ, ଅଛି ଧର୍ମପଦର ଅନ୍ତର ମଧ୍ୟରେ, ତା'ର ଆତ୍ମ-ବଳୀପର ଦୃଢ଼-ସଙ୍କଳ୍ପ ଓ ଐକାନ୍ତିକ ନିଷ୍ଠାରେ ।

> "ପାହି ଆସିଲାଣି ଅନ୍ଧାର ରଜନୀ
> ନିର୍ମଳ ଦିଶେ ମୋ ପଥ
> ଦିଅ ଆଶୀର୍ବାଦ ଯେନ ଏ ଜୀବନେ
> ଏହି ଶେଷ ଦଣ୍ଡବତ ।"

ପଣ୍ଡିତ ନୀଳକଣ୍ଠ ଦାଶ ପୁଣି ଲେଖିଛନ୍ତି, 'ଧର୍ମପଦ ଦେଉଳରୁ ଆତ୍ମହତ୍ୟା କରିବା ପାଇଁ ଡେଇଁଲାବେଳେ ଯେପରି 'ଜୟ ଜଗଦୀଶ ହରେ ବୋଲି' ଗାଇଛି, ତାହା ଭଲକରି ପାଠକରିବା ଲୋକଙ୍କ ମନକୁ ଘେନିବନାହିଁ ।' ଯାହାହି 'ଧର୍ମପଦ'ର ପରମ ସମ୍ପଦ ଏବଂ ସାରସତ୍ତ୍ୱ, ଈଶ୍ୱରଭକ୍ତି ପ୍ରତି ଉଦାସୀନ ପଣ୍ଡିତ ମହାଶୟ ତାକୁ ଏକ ଭୟଙ୍କର ଦୋଷ ବୋଲି ମନେକରିଅଛନ୍ତି । ନିଜର ବ୍ୟକ୍ତିଗତ ରୁଚିର ପରିମାପରେ ପାଠକମାନଙ୍କ ରୁଚିର କଳ୍ପନାକରିବା ଯୁକ୍ତିସଙ୍ଗତ ନୁହେଁ । ଗୋପବନ୍ଧୁ ଭକ୍ତିମାନ୍ ପୁରୁଷ । ବିଭୁପ୍ରେମରେ ତାଙ୍କର ଚିତ୍ତ ସର୍ବଦା ବିହ୍ୱଳ । ଗୋପବନ୍ଧୁଙ୍କର ଏ 'ଭକ୍ତି', ପଣ୍ଡିତ ନୀଳକଣ୍ଠଙ୍କର 'ଭକ୍ତିକ ମିଥ୍ୟା' ନୁହେଁ । ଏଥିରେ ତାଙ୍କର ଆତ୍ମ-ପ୍ରବଞ୍ଚନା ନାହିଁ । ବାହାରକୁ ଦେଖେଇହେବା ପାଇଁ ଗୋପବନ୍ଧୁ ଏ ଭକ୍ତିର ଆଶ୍ରୟ ନେଇ ନ ଥିଲେ । ଏ ଥିଲା ତାଙ୍କ ଜୀବନର ସହଜାତ ପ୍ରବଣତା । ଆଧୁନିକ ଯୁଗର ବସ୍ତୁତାନ୍ତ୍ରିକତା ଓ ଜଡ଼ବାଦ ଲୋକଙ୍କର ଏ ଧର୍ମ ବିଶ୍ୱାସକୁ କଦାପି ସହଜରେ ବିଲୁପ୍ତ କରିଦେବ ନାହିଁ । ଭଲ କରି ଯେଉଁମାନେ 'ଧର୍ମପଦ'କୁ ପଢ଼ିବେ, ବରଂ ସେମାନଙ୍କର ଧର୍ମଚେତନା ଏଥିରେ ଉଦ୍ଦୀପ୍ତ ହୋଇଉଠିବ । ଦେଶ ଓ ଦଶ ପାଇଁ ଜୀବନାହୁତି ଦେବା ଏକ ଅସାଧାରଣ କାର୍ଯ୍ୟ । ସେଥିରେ ପୁଣି ଧର୍ମପଦ ଜଣେ

ବାରବର୍ଷ ବୟସର ବାଳକ ମାତ୍ର । ଜୀବନର ଲୋଭନାହିଁ କାହାର ? ତେଣୁ ପ୍ରତିକ୍ଷଣରେ ଅବିଚଳିତ ରହିବା ନିମନ୍ତେ ମନ୍ଦିର ଉପରେ ଠିଆହୋଇ ଭଗବାନଙ୍କର କୃପାଭିକ୍ଷା କରିବା ସେପରି ପରିସ୍ଥିତିରେ ଧର୍ମପଦ ପକ୍ଷରେ ଅସମ୍ଭବ ନୁହେଁ । ସେତେବେଳେ ସେ ପ୍ରାଣରେ ଭଗବାନଙ୍କର ଅନନ୍ତ ମହିମା ଉପଲବ୍ଧି କରି ଆତ୍ମୋତ୍ସର୍ଗ କରିବାକୁ ପ୍ରସ୍ତୁତ । ଭଗବାନଙ୍କ ପରି ତା'ର ଆତ୍ମା ସେତେବେଳେ ବିରାଟ ଓ ଅନନ୍ତ ପ୍ରକୃତିର 'ମହା ଅନନ୍ତ ବିତାନ' ସହିତ ସେ ସେତେବେଳେ ଏକାତ୍ମ । ସେତେବେଳେ ତା ଦୃଷ୍ଟିରେ ଜଳ ସ୍ଥଳ ନଭ ଏକାକାର । ସେତେବେଳେ ଧର୍ମପଦ ବିଶ୍ୱପ୍ରାଣରେ ଏକୀଭୂତ । ତା'ର କ୍ଷୁଦ୍ର ହୃଦୟ ମଧ୍ୟରେ 'ବିଶ୍ୱସାରି ସଙ୍କୁଚିତ ।' ସେତେବେଳେ ତା ଶୁଦ୍ଧପ୍ରାଣରେ 'ଅପୂର୍ବ ଉଦାର ମହାଭାବର ପ୍ରକାଶ ।' ସେତେବେଳେ ତା ପ୍ରତି 'ଭିତର ବାହାର, ସବୁ ଏକାକାର' । ଏପରି ଅବସ୍ଥାରେ ବିଶ୍ୱପ୍ରେମିକ ଧର୍ମପଦର ହୃଦୟରୁ ସ୍ୱତଃସ୍ଫୂର୍ତ୍ତି ଭାବରେ ଭକ୍ତିର ସଙ୍ଗୀତ ଉଚ୍ଛ୍ୱସିତ ହୋଇ ଉଠିବ, ଏଥିରେ ବିଚିତ୍ରତା କ'ଣ ? ତା ପରେ ସଂସାରରୁ ଚିର ବିଦାୟ ନେଇ ଯିବାବେଳେ ମହାଭାବମୟ ଧର୍ମପଦ ଈଶ୍ୱରଙ୍କ ନାମ ନ ନେଇ ବା କରନ୍ତା କ'ଣ ? ଜୀବନର ଅନ୍ତିମ ମୁହୂର୍ତ୍ତରେ ଭଗବାନଙ୍କର ସ୍ତୁତିଗାନ ଏହି ଭାରତୀୟ ପରମ୍ପରାର ମହତ୍ତ୍ୱ କବି ଏଠାରେ ପ୍ରତିଷ୍ଠିତ କରିଅଛନ୍ତି । ଆତ୍ମ-ବିସର୍ଜନର ଅବ୍ୟବହିତ ପୂର୍ବରୁ ଧର୍ମପଦ ବ୍ୟାକୁଳ କଣ୍ଠରେ ଭଗବାନଙ୍କୁ ନିବେଦନ କରି କହିଛି ।

'ପ୍ରଭୁ ପରାତ୍ପର ପରମ ଈଶ୍ୱର
ଆଶ୍ରା ଦିଅ ଶ୍ରୀପଦ୍ମରେ
ପୂରୁ ତବ ଇଚ୍ଛା ଏ ନର ପରାଣେ
ଜୟ ଜଗଦୀଶ ହରେ ।
ପ୍ରକାଶି କରୁଣା ଯେ ପୁଣ୍ୟ ପ୍ରେରଣା
ଦେଇଅଛ ମୋ ଅନ୍ତରେ,
କର ତାହା ସିଦ୍ଧି କରୁଣା-ବାରିଧି
ଜୟ ଜଗଦୀଶ ହରେ ।'

ଭଲକରି ପଢ଼ିବା ଲୋକଙ୍କୁ 'ଏ ଜୟ ଜଗଦୀଶ ହରେ' ଗାନଟି ଯଦି ଭଲ ନ ଲଗିବ, ସେଥିପାଇଁ ଭକ୍ତକବି ଗୋପବନ୍ଧୁ ଦାୟୀ ନୁହନ୍ତି, ଦାୟୀ, ଆଧୁନିକ ସମାଲୋଚକ ଓ ପାଠକର ପାଶ୍ଚାତ୍ୟଭାବାପନ୍ନ ରୁଚି-ବିକାର, ଜଡ଼ବାଦୀ ସଭ୍ୟତାର ବିଷକ୍ରିୟା, ଏବଂ ବୈଜ୍ଞାନିକ ଯୁଗର ଆତ୍ମ-ସର୍ବସ୍ୱ ଅହଙ୍କାରିତା । ଆତ୍ମ-ବିସର୍ଜନ-ରୂପକ ମହାମହିମମୟ କର୍ମର ପ୍ରେରଣାର ଉତ୍ସସ୍ୱରୂପ ଧର୍ମପଦର ଏହି ଯେଉଁ

ଅଧ୍ୟାତ୍ମ ଭାବନା ଓ ଭଗବତ୍-ପ୍ରୀତି, ତାହା ହିଁ ଏ କାବ୍ୟର ଅପୂର୍ବ ସୁଷମା ଏବଂ ଧର୍ମପଦର ଏହି ଆତ୍ମୋତ୍ସର୍ଗକୁ ମହିମାନ୍ୱିତ କରି ପାଠକସମ୍ମୁଖରେ ଉପସ୍ଥାପିତ କରିବା ନିମନ୍ତେ ଭକ୍ତିରସାଶ୍ରିତ ଏପରି ଗାନର ଆଶ୍ରୟ ନ ନେଇ କବି ଆଉ କି ପନ୍ଥା ଅବଲମ୍ବନ କରିଥାନ୍ତେ ? ବାସ୍ତବ କ୍ଷେତ୍ରରେ ବି ପ୍ରମାଣ ମିଳେ, ପାଠକମାନଙ୍କର ରୁଚିକୁ ଏ ଗାନ ପୀଡ଼ାଦାୟକ ହୋଇନାହିଁ, କାରଣ ପଣ୍ଡିତ ନୀଳକଣ୍ଠ ଦାସଙ୍କ ନିଷେଧ ସତ୍ତ୍ୱେ 'ଧର୍ମପଦ' ପ୍ରକାଶିତ ହୋଇ ସମଗ୍ର ଉତ୍କଳରେ ବହୁଳ ପ୍ରଚାରଲାଭ କରିଛି ଏବଂ ଧର୍ମପଦ ଯେତେ 'ପୌରାଣିକ ମିଥ୍ୟା'ରେ ପୂର୍ଣ୍ଣ ହେଲେ ମଧ୍ୟ, ଏବଂ ଏଥିରେ 'ନାଟକୀୟତା' ନ ଥିଲେ ସୁଦ୍ଧା, ସ୍ୱର୍ଗତ ଅଶ୍ୱିନୀକୁମାର ଘୋଷଙ୍କ ପରି ଜଣେ ଲବ୍‌ଧ-ପ୍ରତିଷ୍ଠ ନାଟ୍ୟକାର 'ଧର୍ମପଦ'ର ବିଷୟବସ୍ତୁକୁ ଅବଲମ୍ବନ କରି ତାଙ୍କର ସୁପ୍ରସିଦ୍ଧ 'କୋଣାର୍କ' ନାଟକ ଲେଖିଅଛନ୍ତି । ଗୋପବନ୍ଧୁଙ୍କ ମନଗଢ଼ା 'ଧର୍ମପଦ' ଆଜି ରଙ୍ଗମଞ୍ଚ ସାହାଯ୍ୟରେ ଓଡ଼ିଶାରେ ସର୍ବତ୍ର ସୁପରିଚିତ । ସେ ବର୍ତ୍ତିମ ନ କେବଳ ଗୋପବନ୍ଧୁଙ୍କର ଧର୍ମପଦହୋଇ ରହିନାହିଁ, ସେ ବର୍ତ୍ତମାନ ସାର୍ବଜନୀନ ଓ ସାର୍ବକାଳିକ ।

ଲୌକିକତାରୁ ଅଲୌକିକତାରେ ତା'ର ରୂପାନ୍ତର ।

---

## ଅଷ୍ଟମ ପରିଚ୍ଛେଦ

### ଗୋ-ମାହାତ୍ମ୍ୟ

ନଚିକେତା ଉପାଖ୍ୟାନର ମୂଳସୂତ୍ର ଗୋ-ଜାତି ପ୍ରତି ନଚିକେତାର ଅପୂର୍ବ ସମବେଦନା ଓ କରୁଣାରୁ । ସ୍ୱର୍ଗଲାଭର ଆଶାରେ ବାଜଶ୍ରବା ଯେଉଁ ବିଶ୍ୱଜିତ ଯଜ୍ଞ ଅନୁଷ୍ଠାନ କରିଥିଲେ ସେହି ଯଜ୍ଞର ଫଳ ଲାଭ ପାଇଁ ସେ ଅନେକ ବୃଦ୍ଧଗାଈ ବ୍ରାହ୍ମଣମାନଙ୍କୁ ଦାନ କରିବାକୁ ଯାଉଥିଲେ । ଏହା ଦେଖି ନଚିକେତର ହୃଦୟ ଗଭୀର ଭାବରେ ଅକୁଳ ହୋଇଉଠିଲା । ଏହି ଜରାଜୀର୍ଣ୍ଣ ଓ ଅସ୍ଥିକଙ୍କାଳାବଶିଷ୍ଟ ଧେନୁମାନଙ୍କ ପ୍ରତି ସମବେଦନାରେ ତାର ଅନ୍ତର ଭରିଗଲା । ସେ ବାଷ୍ପାକୁଳ କଣ୍ଠରେ ପିତାଙ୍କୁ ପଚାରିଲା :—

'ମର୍ମେ ବ୍ୟଥା ପାଇ ମନେ କଲେ ସେ ବିଚାର
ଏଭଳି ଗୋଦାନେ ଅଛି କିବା ଉପକାର ?
ଏ ସକଳ ଗୋରୁ ଆହା ଜୀର୍ଣ୍ଣକ୍ଷୀଣ ଅତି
ପାଇଛି ଇନ୍ଦ୍ରିୟ ଲୋପ, ଯାଇଛି ଶକତି ।
ପିଇଛନ୍ତି ଶେଷ ତୋୟ ଚରଣନ ପାଇଁ
ଖାଇଛନ୍ତି ଶେଷ ଘାସ ପୁଳା ଏହି ଗାଈ ।
ଦୁଧ ଦେବା ଲାଗି ଆଉ ନାହିଁ ଦେହେ ବଳ
ଏ ଗୋଦାନେ ଦୁଃଖମୟ ଲୋକ ସିନା ଫଳ ।
ପିତାଙ୍କୁ ସେ ନଚିକେତା ପୁଛନ୍ତି ବଚନ
'କାହା ଦାନ ଲାଗି ମୋତେ କଳ୍ପିଛ ଆପଣ ?'
ବାରମ୍ବାର ପଚାରନ୍ତେ ପିତା ବିରକତେ
କହିଲେ 'ଯମକୁ ଦେବ ଏହିକ୍ଷଣେ ତତେ ।'

ଯମଙ୍କଠାରୁ ବ୍ରହ୍ମଜ୍ଞାନ ଶିକ୍ଷାକରି ଯେତେବେଳେ ନଚିକେତା ପିତାଙ୍କ ନିକଟକୁ ଫେରିଆସିଲା, ପିତା ବାଜଶ୍ରବା ତାକୁ ପଚାରିଲେ "ଯମପୁରରେ ତୁ କଣ କଣ ସବୁ ଦେଖିଆସିଲୁ ମୋତେ କହ।" ଅନ୍ୟାନ୍ୟ କଥା ମଧ୍ୟରେ ନଚିକେତା ପିତାଙ୍କୁ କହିଲା—"ଯମପୁରରେ କେଉଁଠାରେ ଘୃତଧାର ବହିଯାଉଛି ତ, କେଉଁଠାରେ ଦୁଗ୍ଧ ଧାର, ସେ ସ୍ରୋତକୁ ଦେଖି ମୁଁ ଯମଙ୍କୁ ପଚାରିଲି, କାହାର ଉପଭୋଗ ପାଇଁ ଏ ଘୃତ ଓ ଦୁଗ୍ଧ ସ୍ରୋତର ସୃଷ୍ଟି ? ତାର ଉତ୍ତରରେ ଯମ କହିଲେ, 'ଯେଉଁ ସାଧୁଲୋକମାନେ ଗୋ ରସ ଦାନକରନ୍ତି, ଏବଂ ଯେଉଁମାନେ ଦୁଗ୍ଧବତୀ ଗାଭୀ ପ୍ରଦାନ କରନ୍ତି, ସେହିମାନଙ୍କ ପାଇଁ ଏ ଦୁଗ୍ଧ ଓ ଘୃତସ୍ରୋତର ସୃଷ୍ଟି।"

ଗୋପବନ୍ଧୁଙ୍କ ଭାଷାରେ—

"ଗୋଦାନେ ଭୋଗଇ ନର ସ୍ୱର୍ଗେ ମହାସୁଖ
ଗୋଦାନେ କଦାପି ପିତା ନ ହୁଅ ବିମୁଖ।
ଉପଯୁକ୍ତ ଗାଭୀ ଦିଅ ଉପଯୁକ୍ତ ଜନେ
ଗୋଦାନର ଫଳ ମୁଁ ତ ଦେଖିଲି ନୟନେ।
ଗୋଦାନ ସମାନ ନୁହେଁ ଅନ୍ୟ ମୋରମୋତେ
କରନ୍ତୁ ମାନବ ସର୍ବେ ଗୋ-ସେବା ଜଗତେ।"

'ନଚିକେତା ଉପାଖ୍ୟାନ'ର ଶେଷ ଭାଗରେ ଗୋ-ସେବା, ଗୋ-ଦାନ ଓ ଗୋପାଳର ମାହାତ୍ମ୍ୟ ସମ୍ବନ୍ଧରେ ଗୋପବନ୍ଧୁ ତାହା ଉଲ୍ଲେଖ କରିଅଛନ୍ତି, ତାହା କଠୋପନିଷଦରେ ନାହିଁ। ଅଂଶଟି ଗୋପବନ୍ଧୁଙ୍କର ମୌଳିକ ସଂଯୋଜନା। ସ୍ଥାନ, କାଳ, ପାତ୍ର ଓ ଲୋକରୁଚିକୁ ଦୃଷ୍ଟି ଏବଂ ସମସାମୟିକ ସମାଜର ପରିସ୍ଥିତିକୁ ଲକ୍ଷ୍ୟ ରଖି ସେ 'ବାରହେ ବଢ଼େଇରେ ଦାଯ୍ନ, କି ପୁଅରେ ଦାୟ' ଏ ଜନଶ୍ରୁତିରେ ଯେପରି ପରିବର୍ତ୍ତନ ସୃଷ୍ଟି କରିଅଛନ୍ତି, ସେହିପରି କଠୋପନିଷଦର ଅବଲମ୍ବନରେ ରଚିତ 'ନଚିକେତା ଉପାଖ୍ୟାନ'ରେ ଗୋ ଜାତିର ମାହାତ୍ମ୍ୟ କୀର୍ତ୍ତନ କରି ନିଜର ମୌଳିକତା ଓ ସମାଜକଲ୍ୟାଣ ଚିନ୍ତାର ଉତ୍କୃଷ୍ଟ ପରିଚୟ ଦେଇଅଛନ୍ତି।

ଗୋପବନ୍ଧୁ ବିଶ୍ୱଦରଦୀ ଏବଂ ତାଙ୍କର ମାନବିକତା ଯେପରି ଗଭୀର, ସେହିପରି ସୁଦୂରପ୍ରସାରୀ, ତାଙ୍କର ସେବା କେବଳ ମାନବ-ସମାଜରେ ସୀମାବଦ୍ଧ ନୁହେଁ—ଏହା ମନୁଷ୍ୟେତର ଜୀବଜନ୍ତୁ ପ୍ରତି ମଧ୍ୟ ସମ୍ପ୍ରସାରିତ। ଗୋ-ଜାତିର ଦୁର୍ଦ୍ଦଶା ଦେଖି ସେ ସର୍ବଦା ବିଶେଷଭାବରେ ମର୍ମାହତ ହେଉଥିଲେ। ସେ ଅନେକ ଦିନ

କଲର କଥା । ୧୯୧୬ ମସିହା ହେବ । ଆମ୍ଭେମାନେ ସେତେବେଳେ ସେଟର ୬ଷ୍ଠ ଶ୍ରେଣୀ, ଏବର ୯ମ ଶ୍ରେଣୀର ଛାତ୍ର । ଗୋପବନ୍ଧୁ ସତ୍ୟବାଦୀରେ ଥିଲବେଳେ ସମୟେ ସମୟେ କ୍ଲାସ ଭିତରକୁ ପଶିଆସନ୍ତି । ନାନା ବିଷୟରେ ଛାତ୍ରମାନଙ୍କୁ ପ୍ରଶ୍ନ ପଚାରନ୍ତି । ବହୁ ସାରଗର୍ଭିକ ନୀତି ଉପଦେଶ ଦେଇ ଆମ୍ଭମାନଙ୍କୁ ଉଦ୍‌ବୁଦ୍ଧ କରନ୍ତି । ଥରେ 'ଗାଈ' ସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ଇଂରେଜୀରେ ଲେଖିବାକୁ ଆମ୍ଭମାନଙ୍କୁ ଦେଇଥିଲେ । ତହିଁ ପରଦିନ ପ୍ରବନ୍ଧ ଲେଖି ଆମେ କ୍ଲାସକୁ ଆସିଲୁ । ଗୋପବନ୍ଧୁ କ୍ଲାସ ଭିତରକୁ ପଶି ଆସି ସେ ପ୍ରବନ୍ଧ ପଢ଼ିବାକୁ ଆମ ଭିତରୁ ଜଣେ ଜଣଙ୍କୁ କହିଲେ । ତା'ପରେ ସେ ଗାଈ ସମ୍ବନ୍ଧରେ କିପରି ଆଦର୍ଶ ପ୍ରବନ୍ଧ ରଚନା କରିବାକୁ ହେବ, ସେ ବିଷୟରେ କେତେକ ସୂଚନା ଦେଲେ । 'ଗୋପାଳନ' ସମ୍ବନ୍ଧରେ ସେ ଦିନ ଆମ୍ଭମାନଙ୍କୁ ସେ ଯେଉଁ ଭାବଗର୍ଭିକ ବକ୍ତୃତା ଦେଇଥିଲେ ଏବଂ ଗୋଜାତିର ଦୁର୍ଦ୍ଦଶାରେ ସେ ଦିନ ତାଙ୍କର ଗଭୀର ମନୋବ୍ୟଥାର ଆମ୍ଭେମାନେ ଯେଉଁ ପରିଚୟ ପାଇଥିଲୁ, ସେଥିରୁ କେବଳ ସେ ଦିନ ଗୋଜାତିର ଉପାଦେୟତା ଆମ୍ଭେମାନେ ହୃଦୟଙ୍ଗମ କଲୁନାହିଁ, ଗୋଜାତିର ସେବାରେ ମନପ୍ରାଣ ଢାଳିଦେବାକୁ ଉଦ୍‌ବୁଦ୍ଧ ହେଲୁନାହିଁ, ଗୋ ଜାତି ପ୍ରତି ଗୋପବନ୍ଧୁଙ୍କର ସହାନୁଭୂତି ଓ କରୁଣା ଦେଖି ବିସ୍ମିତ ହୋଇଗଲୁ ଏବଂ ବାସ୍ତବରେ ସେ ଦିନ ମନେ ହେଲା, ଗୋପବନ୍ଧୁ ମନୁଷ୍ୟ ନୁହନ୍ତି, ଜଣେ ଦେବଦୂତ । ସ୍ନେହ, ସେବା ଓ କରୁଣାର ଜୀବନ୍ତ ପ୍ରତିମୂର୍ତ୍ତି । ଶିବମୟ ଉପାଦାନରେ ତାଙ୍କର ହୃଦୟ ଗଠିତ ।

ସେହି କରୁଣାର୍ଦ୍ର ଚିତ୍ତ ଗୋପବନ୍ଧୁଙ୍କ ଲେଖନୀରୁ 'ଗୋ-ମାହାତ୍ମ୍ୟ'ର ଯେ ସୃଷ୍ଟି ହେବ, ଏହା ଅତ୍ୟନ୍ତ ସ୍ୱାଭାବିକ । ଉତ୍କଳର ସର୍ବାଙ୍ଗୀନ ଉନ୍ନତି ଥିଲା ଗୋପବନ୍ଧୁଙ୍କର ଲକ୍ଷ୍ୟ । ତେଣୁ ଗୋଜାତିର ଉନ୍ନତି ପ୍ରତି ସେ ସର୍ବଦା ସଚେତନ ଥିଲେ । ସେ ଭଲକରି ବୁଝିଥିଲେ ଗୋ ଜାତିର ଅବହେଳାହିଁ ଆମ୍ଭମାନଙ୍କ ଦାରିଦ୍ର୍ୟର ପ୍ରଧାନ କାରଣ । ହଜାରିବାଗ ଜେଲ୍‌ରେ ଥିବା ସମୟରେ ସେ ସମ୍ପୂର୍ଣ୍ଣ ମହାଭାରତ ଓ ଭାଗବତ ପାଠକରୁଥିଲେ । ସେଥିରେ ଗୋ ଜାତିର ମାହାତ୍ମ୍ୟ ସମ୍ବନ୍ଧରେ ଯେଉଁ ବିଷଦ ବର୍ଣ୍ଣନାମାନ ଅଛି, ତାହା ପଢ଼ି ସେ 'ଗୋ-ମାହାତ୍ମ୍ୟ' ବହିଟି ଲେଖିବାକୁ ପ୍ରବୃତ୍ତ ହେଲେ । ଗୋପବନ୍ଧୁଙ୍କର ସକଳ କର୍ମ ତାଙ୍କର ଧର୍ମବୋଧ ସହିତ ସମ୍ପୃକ୍ତ । ଗୋପାଳନ ହିନ୍ଦୁମାନଙ୍କର ଧର୍ମକାର୍ଯ୍ୟ, ଏହି ଭାବରେ ଅନୁପ୍ରାଣିତ ହୋଇ ସେ ପୁରାଣ ଆକାରରେ ଏହି ବହିଟି ଲେଖିଲେ । ପୁରାଣପ୍ରିୟ ହିନ୍ଦୁଜାତି ଗୋ ସେବାକୁ ଏକ ପବିତ୍ର କର୍ମ ବୋଲି ମନେ କରିବ ଏବଂ ଗୋ'ତର ଅବହେଳା ଏକ ଉତ୍କଟ ପାପ, ଏହା ହୃଦୟଙ୍ଗମ କରି ଗୋ ଜାତି ପ୍ରତି ନିଜର କର୍ତ୍ତବ୍ୟ ସାଧନାରେ ଏକନିଷ୍ଠ ହେବ, ଏହି ଉଦ୍ଦେଶ୍ୟରେ ସେ ଏହାକୁ

ପୁରାଣ ଛାନ୍ଦରେ ଲେଖିଅଛନ୍ତି ଏବଂ ପ୍ରତ୍ୟେକ ଅଧ୍ୟାୟର ଶେଷରେ ନିଜର ନାମ ଉଲ୍ଲେଖ କରିଅଛନ୍ତି । ଯଥା—

"ରଖ ହେ ଜନେ ଏ ବିଶ୍ୱାସ
ଗୀତେ କହଇ ଗୋପଦାସ ।"

ହୁଏତ ଏ ଯୁଗର ଲୋକେ ପୁରାଣ ଆକାରରେ ଲିଖିତ ଗୋପ ଦାସଙ୍କର ଏ 'ଗୋ-ମାହାତ୍ମ୍ୟ' ଦେଖି ତାଙ୍କ ଅଶ୍ରଦ୍ଧା ପରିହାସ କରିବେ । ପୁରାଣର ନାଁ ଶୁଣି ନାସିକା କୁଞ୍ଚନ କରିବେ । ଗୋ-ଜାତିର ଉନ୍ନତି ନିମନ୍ତେ ପଶୁ ଚିକିତ୍ସକମାନେ ନାନା ବିଜ୍ଞାନସମ୍ମତ ପ୍ରଣାଳୀ ଆବିଷ୍କାର କରୁଥିବାବେଳେ, ଗୋପବନ୍ଧୁ ଦାସଙ୍କ ପରି ଜଣେ ଚିନ୍ତାନାୟକ ଓ ରାଜନୀତିଜ୍ଞଙ୍କର ଏପରି ପୁରାଣ ଲେଖିବାର ଆବଶ୍ୟକତା କଣ ? ଏ ପ୍ରଶ୍ନ ବାରମ୍ବାର ଉତ୍ଥାପନ କରିବେ । କରିବା ଅସ୍ୱାଭାବିକ ନୁହେଁ । ଏ ଯୁଗ ପୁରାଣର ଯୁଗ ନୁହଁ—ଏ ବିଜ୍ଞାନର ଯୁଗ, ବୁଦ୍ଧିର ଯୁଗ ; କିନ୍ତୁ ଗୋପବନ୍ଧୁଙ୍କ ଜୀବନ-ସାଧନାର ବୈଶିଷ୍ଟ୍ୟ, ତାଙ୍କଠାରେ ଆଧୁନିକତା ଓ ପ୍ରାଚୀନତାର ମଧୁର ସମନ୍ୱୟ । ଭାରତୀୟ ପରମ୍ପରାର ଭିତ୍ତିଭୂମି ଉପରେ ସେ ଦେଶର ଉନ୍ନତି କାମନା କରନ୍ତି । ଭାରତୀୟ ସଂସ୍କୃତିରେ ତାଙ୍କର ଗଭୀର ନିଷ୍ଠା । ସେ ଯୁଗଯୁଗାନ୍ତର ପ୍ରବାହିତ ପରମ୍ପରାର ସୂତ୍ରକୁ ଛିନ୍ନ କରିବାକୁ ଚାହାନ୍ତିନାହିଁ । ସେ ଅସ୍ପୃଶ୍ୟତା ବର୍ଜନ କରିବାକୁ ଚାହାନ୍ତି, ଦେଶରେ ବିଜ୍ଞାନର ପ୍ରଗତି କାମନା କରନ୍ତି, ଆଧୁନିକ ଶିଳ୍ପବାଣିଜ୍ୟ ପ୍ରସାରର ସେ ପକ୍ଷପାତୀ, ତାଙ୍କର ଶିକ୍ଷା-ଚିନ୍ତା ଅତ୍ୟନ୍ତ ପ୍ରଗତିଶୀଳ, ସେ ବିଶ୍ୱସାହିତ୍ୟରୁ ନବନବ ଭାବଧାରାମାନ ଆଣି ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିବାକୁ ବ୍ୟାକୁଳ, ତଥାପି ଭାରତର ଆଧ୍ୟାତ୍ମିକ ସାଧନା, ତପୋବନର ସଭ୍ୟତା, ପ୍ରାଚୀନ ମୁନିଋଷିମାନଙ୍କର ଉଦାର ଉନ୍ନତ ମାନସିକତା, ଏ ସକଳରେ ତାଙ୍କର ବିଶେଷ ଶ୍ରଦ୍ଧା ଓ ମମତା ଥିଲା । ତେଣୁ ସେହି ଭାରତୀୟ ପରମ୍ପରା ଏବଂ ଧର୍ମ-ବିଶ୍ୱାସକୁ ଅକ୍ଷୁଣ୍ଣ ରଖିବା ଉଦ୍ଦେଶ୍ୟରେ ସେ 'ଗୋ ମାହାତ୍ମ୍ୟ'କୁ ପୁରାଣ ଛାନ୍ଦରେ ଲେଖିଅଛନ୍ତି । ସେ ଏହାକୁ ନବ୍ୟଶିକ୍ଷିତ ଲୋକମାନଙ୍କ ପାଇଁ ଲେଖିନାହାନ୍ତି । ସେମାନେ ହେଲେ ନଗରାଭିମୁଖୀ ପାଶ୍ଚାତ୍ୟଶିକ୍ଷାପ୍ରାପ୍ତ ଭୋଗସର୍ବସ୍ୱ ବ୍ୟକ୍ତି । ଗୋଜାତି ସହିତ ତାଙ୍କର ବିଶେଷ କିଛି ସମ୍ପର୍କ ଅଛି, ଏକଥା ସେମାନଙ୍କ ମଧ୍ୟରୁ ଅନେକ ହୁଏତ ମନେକରନ୍ତି ନାହିଁ । ପାଖରେ ପଇସା ଥିଲେ ତାଙ୍କର ଦୁଧ ଘିଅର ଅଭାବ ନାହିଁ ; କିନ୍ତୁ ଗୋପବନ୍ଧୁ ଏହି 'ଗୋ-ମାହାତ୍ମ୍ୟ' ଲେଖିଛନ୍ତି ଦେଶର ଅଗଣିତ ଜନ-ସାଧାରଣଙ୍କ ପାଇଁ, ଯେଉଁମାନଙ୍କର କୃଷି ହେଉଛି ପ୍ରଧାନ-ଜୀବିକା ଓ 'ଗୋ-ମହାତ୍ମ୍ୟ ଲେଖାହୋଇଛି ଦରିଦ୍ର ଗୋପାଳଜାତି ନିମନ୍ତେ, ଯେଉଁମାନେ ଦୁଧ ଘିଅ ବିକି ଜୀବିକା ଉପାର୍ଜନ କରନ୍ତି, ଅଥଚ ଗାଈମାନଙ୍କୁ ମୁଠେ ଭଲକରି

ଖାଇବାକୁ ଦଅନ୍ତୁ ନାହିଁ । ଅବଶ୍ୟ ଗଦ୍ୟରେ 'ଗୋପାଳନ' ନାମ ଦେଇ ଏହିପରି ଗୋଟିଏ ବହି ଲେଖାଯାଇ ପାରିଥାନ୍ତା; କିନ୍ତୁ ଗୋପବନ୍ଧୁ ବୁଝିଥିଲେ, ଗଦ୍ୟ ଅପେକ୍ଷା ପଦ୍ୟ ଲୋକଙ୍କ ମନକୁ ଅଧିକ ସ୍ପର୍ଶକରିବ; ପୁରାଣ ପାଠକଲପରି, ଏହା ଗ୍ରାମେ ଗ୍ରାମେ ପଠିତ ହେବ, ଫଳରେ ଲୋକ-ସମାଜରେ ଏହାର ବହୁଳ ପ୍ରସାର ହେବ । 'ଗୋ-ମାହାତ୍ମ୍ୟ' ପୁରାଣ ଆକାରରେ ଲେଖିବାର ଏହା ହିଁ ସ୍ପଷ୍ଟ ଉଦ୍ଦେଶ୍ୟ । ଆଧୁନିକତାର ବ୍ୟାମୋହରେ ଆମର ପ୍ରାଚୀନ ପରମ୍ପରାକୁ ପାଦରେ ଦଳି ଚକଟି ଦେବାରେ ବିଜ୍ଞତା ନାହିଁ କି, ଆଧୁନିକତାର ସକଳ ଉପକରଣ ଓ ଭାବଭାବନାକୁ ଅକୁଣ୍ଠିତ ପ୍ରାଣରେ ଅଭିନନ୍ଦନ କରିବାରେ ବୁଦ୍ଧିମତ୍ତାର ପରାକାଷ୍ଠା ନାହିଁ । ଗୋପବନ୍ଧୁ ନବ୍ୟ ଉତ୍କଳର ପ୍ରତିଷ୍ଠାତା । ତାଙ୍କର ଏତିକ ବିଚାର କରିବାର କ'ଣ ଶକ୍ତି ନ ଥିଲା, ଏ ଗୋପଦାସଙ୍କ 'ଗୋ-ମାହାତ୍ମ୍ୟ' ଦେଖି ଲୋକେ ତାଙ୍କ ନାଁରେ ପଛରେ ଚୂଗୁଲି କରିବେ ? ବରଂ ପ୍ରାଚୀନ ଢଙ୍ଗରେ ଏ ଯେଉଁ ଉପାଦେୟ ଗଣ-ସାହିତ୍ୟର ସର୍ଜନା, ସେଥିରେ ହିଁ ଆମକୁ ଗୋପବନ୍ଧୁଙ୍କର ବିଶେଷତ୍ୱ ଦେଖିବାକୁ ହେବ । ଜନ-ମଙ୍ଗଳ ନିମନ୍ତେ ତାଙ୍କ ପ୍ରାଣର ତୀବ୍ର ଆକାଙ୍କ୍ଷାର ପ୍ରତିଧ୍ୱନି ଏହି 'ଗୋମାହାତ୍ମ୍ୟ'ରେ ଶୁଣିବାକୁ ହେବ ।

ପୁଣି ଯେଉଁ ଗୋପବନ୍ଧୁ 'ବନ୍ଦୀର ଆତ୍ମକଥା' ପରି ଓଜସ୍ୱିନୀ କବିତା ଲେଖି ପାରନ୍ତି ଏବଂ 'କାରାକବିତା'ର କବିତାମାନଙ୍କ ପରି ଭାବ-ଗମ୍ଭୀର କବିତାମାନ ରଚନା କରିପାରନ୍ତି, ସେ ଭାଗବତର ନବାକ୍ଷରୀ ଛନ୍ଦରେ ଏପରି ପଲ୍ଲୀକବିତା କିପରି ଅତି ସହଜ ଓ ସାବଲୀଳ ଭାଷାରେ ଲେଖିପାରିଲେ, ତାହା ଭାବିଲେ ବିସ୍ମିତ ହେବାକୁ ପଡ଼େ । 'ମହାଭାରତ'ରେ ବର୍ଣ୍ଣିତ ଗୋମାହାତ୍ମ୍ୟକୁ କବି ଗୋପଦାସ ଏହିପରି ଭାବରେ ଉଲ୍ଲେଖ କରିଅଛନ୍ତି—

"ଜଗତେ ଗାଈ ପୁଣ୍ୟତମ, ସକଳ ପୁଣ୍ୟ ସୁଖଧାମ ।
ସକଳ ସୁଗନ୍ଧର ଖଣି, ସେ ଭୂତଭବ୍ୟ ସନାତନୀ ।
ଗୃହସ୍ଥ ଗୃହେ ଲକ୍ଷ୍ମୀ ଗାଈ, ତାପସ ଆଶ୍ରମେ ସୁରଭି ।
ଗୋହିତେ ଯାହା ହୁଏ ଦାନ, ନୁହେଁ ତା କେବେ ଅକାରଣ ।

× × ×

ସକଳ ଜନ ପ୍ରାଣଦାତା, ସୁଖଦା ଶୁଭଦା ଗୋମାତା ।
ଗୋମାତା ମୋର ମୁଁ ତାହାର, ନାହିଁ ଉଭୟେ ପରାପର
ଏକଇ ଉଭୟ ଉତ୍ପତ୍ତି, ଉଭୟେ ଉଭୟର ଗତି ।"

'ଗୋ-ମାହାତ୍ମ୍ୟ' କେବଳ ଭାଗବତର ଛନ୍ଦରେ ରଚିତ ନୁହେଁ, ଏହା ଆଧୁନିକ ଉତ୍କଳର 'ନବ୍ୟ ଭାଗବତ', ଧର୍ମ, ଅର୍ଥ, କାମ, ମୋକ୍ଷ ଏ ସକଳର ପନ୍ଥା ଏଥିରେ ଉଦ୍‌ଘାଟିତ ହୋଇଅଛି । ମନୁଷ୍ୟ ଜୀବନର ଚରମ ସାର୍ଥକତା ଏଥିରେ ପ୍ରତିପନ୍ନ ହୋଇଅଛି । କର୍ମଯୋଗର ମାହାତ୍ମ୍ୟ ଏଥିରେ ସୂତ୍ରରୂପେ ପ୍ରକଟିତ ହୋଇଅଛି । ପଶୁ ସ୍ତରରୁ ଊର୍ଦ୍ଧ୍ୱତନ ମାନବିକତାର ସ୍ତରକୁ ଉଠିବାକୁ ଏଥିରେ ବଳିଷ୍ଠ ଉଦ୍‌ବୋଧନ ଅଛି । ସ୍ଥୂଳତଃ 'ଗୋ ମାହାତ୍ମ୍ୟ'ରେ ଗୋପବନ୍ଧୁଙ୍କର ଜୀବନ-ଦର୍ଶନ ଯେପରି ସ୍ପଷ୍ଟ ଓ ନିରାବରଣ ଅଭିବ୍ୟକ୍ତି ଲାଭକରିଛି, ତାଙ୍କର ଅନ୍ୟ କୌଣସି ସାହିତ୍ୟ-ସୃଷ୍ଟିରେ ସେପରି ହୋଇନାହିଁ । ବାଲ୍ୟକାଳରୁ ଗୋପବନ୍ଧୁ ଜଗନ୍ନାଥ ଦାସଙ୍କ ଭାଗବତଦ୍ୱାରା ପ୍ରଭାବିତ । ଭାଗବତର ଅମିୟ ବାଣୀ ହିଁ ତାଙ୍କ ଜୀବନର ଅମୃତତ୍ୱର ସୋପାନ । ଏହି 'ଗୋ-ମାହାତ୍ମ୍ୟ' ହିଁ ତାଙ୍କ ଜୀବନର ଭାଗବତ । ଯେ ପରୋପକାର ସାଧନରେ ବ୍ରତୀ, ସେ ପଶୁ ହେଲେ ମଧ୍ୟ ସ୍ୱାର୍ଥପର ମନୁଷ୍ୟଠାରୁ ତାର ସ୍ଥାନ ଉଚ୍ଚରେ । ତାର ଆକାର ପଶୁପରି ହୋଇପାରେ, କିନ୍ତୁ ସେ ପଶୁ ଦେହରେ ଦେବତ୍ୱର ଅଧିଷ୍ଠାନ । ତେଣୁ ତାଙ୍କ ଦୃଷ୍ଟିରେ ଗୋଜାତି ପଶୁ ନୁହନ୍ତି, କିମ୍ବା କେବଳ ମନୁଷ୍ୟ ଦେହ ଧାରଣକଲେ କେହି ପ୍ରକୃତ ମନୁଷ୍ୟ ପଦବାଚ୍ୟ ହୁଅନ୍ତିନାହିଁ । ପଶୁତ୍ୱ ଓ ମନୁଷ୍ୟତ୍ୱ ମଧ୍ୟରେ ପାର୍ଥକ୍ୟ ନିର୍ଦ୍ଦେଶ କରିବାକୁ ଯାଇ ପରର ଏତେ ଉପକାର ସାଧନ କରୁଥିବା ଗୋଜାତି କେଉଁ କାରଣରୁ ପଶୁ ହେଲେ, ତାହା ଅତି ସୁନ୍ଦରଭାବରେ ଦର୍ଶାଇ ଅଛନ୍ତି :—

"ଗୋ-ଜାତି ପଶୁରୂପ ମାତ୍ର, ଦେବଙ୍କୁଁ ଅଧିକ ପବିତ୍ର ।
ନର, ଦେବତା, ଆଉ ପଶୁ, ବିଭିନ୍ନ ଗୁଣକର୍ମ ବଶୁଁ ।
ରୂପ ଆକାରେ ଯେ ବିଶେଷ, ତହିଁରେ ଲାଭ କ୍ଷତି କିସ ।
ମାନବ କରେ ଅହଙ୍କାର, ମଣେ ନିଜକୁ ସର୍ବୋପର ।
ମୋ ମତେ ବଡ଼ ସେ କିପରି, କହ ବିଚାରି ବ୍ରହ୍ମଗିରୀ ।"

ଅହଂକାରୀ, ହିଂସ୍ର, ପରଶ୍ରୀକାତର, ସ୍ୱାର୍ଥବିଜଡ଼ିତ, ସଙ୍କୀର୍ଣ୍ଣମନା ମନୁଷ୍ୟ କଦାପି ପରହିତବ୍ରତୀ ପଶୁ ଗୋଜାତିଠାରୁ ବଡ଼ ହୋଇ ନ ପାରେ । ଏପରି ମନୁଷ୍ୟ ସର୍ବତୋଭାବରେ ପଶୁଠାରୁ ହୀନ । ଗୋଜାତିର ମାହାତ୍ମ୍ୟ ହେଉଛି—

"ଆହାରେ ଭଲ ମନ୍ଦ ନାହିଁ, ଯେ ସ୍ଥାନେ ଯେମନ୍ତ ମିଳଇ ।
ଭୋଗନ୍ତି ଖରା ବର୍ଷା ଶୀତ, ସାଧନ୍ତି ସଦା ଲୋକହିତ ।
ଧରନ୍ତି ପର ଲାଗି ପ୍ରାଣ, କରନ୍ତି ଲୋକେ ଅନ୍ନଦାନ ।

× × ×

ମରଇ ପର ଉପକାରେ, ଗୋ ସମ କେ ଆଉ ସଂସାରେ ।
ନମଣ ତାଙ୍କୁ ପଞ୍ଚୁନର, ସେ ଲୋକମାତା ବିଶ୍ୱମ୍ଭରୀ ।"
କିନ୍ତୁ ଏ ସଂସାରରେ ଜନ-ସାଧାରଣ କରନ୍ତି କ'ଣ ?
"ମାତ୍ର ଏ ସଂସାରେ ମାନବ, କରଇ କେବଳ ଗରବ ।
ନିଜକୁ ମାନି ବଡ଼ ମନେ, ଭାବେ ତାପରି ନାହିଁ ଜଣେ ।
ସ୍ୱାର୍ଥେ ଜଡ଼ିତ ରହେ ନିତ, ତେଣେ ହୁଅଇ ଆତ୍ମଘାତୀ ।
ଅପର ସୌଭାଗ୍ୟେ କାତର, ଧ୍ୱଂସଇ ପରେ ନିରନ୍ତର ।
କିପାଇଁ ମନେ ଭାବ ତେବେ, ମାନବ ଅଧିକ ଗୌରବେ ?"

ଏପରି 'ଆତ୍ମଘାତୀ' ଏବଂ ପଶୁଭାବାପନ୍ନ ବହୁ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଗୋପବନ୍ଧୁ ତାଙ୍କ କର୍ମମୟ ଜୀବନରେ ଆସିଥିଲେ । କେତେଜଣ ତଥାକଥିତ ଶିକ୍ଷିତ ଅହଂମନ୍ୟ ବ୍ୟକ୍ତି ତାଙ୍କ ପ୍ରତି ଈର୍ଷା ଜର୍ଜରିତ ହୋଇ ତାଙ୍କର କୁତ୍ସାରଟନା କରିଥିଲେ । ଏ କୁତ୍ସା ରଟନା କେବଳ ଗୋପବନ୍ଧୁଙ୍କ ଜୀବଦ୍ଦଶାରେ ଘଟି ନ ଥିଲା, ଘଟିଛି ତାଙ୍କ ମୃତ୍ୟୁର ବହୁ କାଳପରେ ମଧ୍ୟ । ଏମାନେ ହିଁ 'ମନୁଷ୍ୟ' ଆଖ୍ୟାଧାରୀ ଲାଞ୍ଜହୀନ ପଶୁ-ପୁଙ୍ଗବ ! ଏମାନେ ସେମାନଙ୍କର ସକଳ ପୋଥିଗତ ବିଦ୍ୟା, ପାଶ୍ଚାତ୍ୟ ଦେଶପ୍ରାପ୍ତ ସକଳ କାରିଗରି କିମ୍ବା ଇଂଜିନିଅରିଂ ବୁଦ୍ଧିକୌଶଳ, ଏବଂ ଆଇନ ବ୍ୟବସାୟର ସକଳ ସୁନାମ ଓ ଦକ୍ଷତା ସତ୍ତ୍ୱେ ଗୋଟିଏ ଗୋଟିଏ 'ପଶୁ'; କିନ୍ତୁ ଗୋପବନ୍ଧୁ ଏ ଅସୂୟାପରବଶ ବ୍ୟକ୍ତିଙ୍କ ପ୍ରତି ମଧ୍ୟ ସ୍ନେହାନୁରକ୍ତ ଥିଲେ । ଏମାନଙ୍କ ପଶୁତ୍ୱ ପାଇଁ ଅଶ୍ରୁମୋଚନ କରୁଥିଲେ । ଏମାନଙ୍କର ନୈତିକ ଅଧଃପତନ ପାଇଁ ଭଗବାନଙ୍କଠାରେ କ୍ଷମାଭିକ୍ଷା କରୁଥିଲେ । ଏହି 'ପଶୁ'ମାନଙ୍କର ଏକ ଜୀବନ୍ତ ଚିତ୍ର ଉପର୍ଯ୍ୟୁକ୍ତ ଉଦ୍ଧୃତିରେ ଅଙ୍କନ କରାଯାଇଅଛି, କିନ୍ତୁ ଏ ଚିତ୍ର— ମାନବତାରେ ପଶୁତ୍ୱର ଏ ପ୍ରତ୍ୟକ୍ଷ ଅନୁଭୂତିର ପ୍ରକାଶ, କେଡ଼େ ବିନମ୍ର, ସୌଜନ୍ୟ-ପୂର୍ଣ୍ଣ ଓ ନିର୍ଲିପ୍ତ । ବ୍ୟକ୍ତିଗତ ଆକ୍ରୋଶ କିମ୍ବା କଟାକ୍ଷର ଲେଶମାତ୍ର ଚିହ୍ନବର୍ଣ୍ଣ ଏଥିରେ ନାହିଁ; କିନ୍ତୁ ଅପର ସୌଭାଗ୍ୟେ କାତର, ଧ୍ୱଂସଇ ପର ନିରନ୍ତର' ଏ ଉକ୍ତି ଅନୁଭୂତିରେ ଗୋପବନ୍ଧୁଙ୍କ ଚିତ୍ତ ବହୁବାର ବେଦନାକୁଳ ହୋଇଅଛି । କିଏ ପ୍ରକୃତ ବୁଦ୍ଧିମାନ ମାନବ-ସନ୍ତାନ ଏହାର ସନ୍ଦେହାତୀତ ଅମୋଘ ନିର୍ଦ୍ଦେଶ ଦେବାକୁ ଯାଇ ସେ ଲେଖିଛନ୍ତି—

"ପର ନିମନ୍ତେ କ୍ଳେଶ ସହେ, ପରର ଭାର ନିଜେ ବହେ ।
ନ କରେ ନିଜ ପର ଭେଦ, ନ ଧରେ ଦ୍ୱନ୍ଦ୍ୱ ହିଂସାବାଦ ।
ସଂସାର ହିତେ ଜନ୍ମ ତାର, କରେ ଯେ ସଦା ଏ ବିଚାର ।
ସେ ନର ଏକା ବୁଦ୍ଧିମାନ, ସେ ଏକା ମାନବ ସନ୍ତାନ ।

× × ×

ସକଳ ଧର୍ମେ ଶ୍ରେଷ୍ଠସାର, କେବଳ ପର ଉପକାର ।
ଏ ଧର୍ମ ପାଳନ୍ତି ଗୋ ଜାତ, ଏ ଲାଗି ତାଙ୍କ ଉନ୍ନତି ।"

ଯେଉଁ ଗୋ ଜାତ ପ୍ରକୃତ ମନୁଷ୍ୟ ସନ୍ତାନର ଧର୍ମ ପାଳନ କରୁଅଛନ୍ତି, ସେମାନେ ପଶୁ ହେଲେ ମଧ୍ୟ ସ୍ୱାର୍ଥ ସର୍ବସ୍ୱ—ମନୁଷ୍ୟଠାରୁ ବହୁ ଉଚ୍ଚରେ । ଏପରି ନିର୍ଭୀକ ଏବଂ ଅପ୍ରିୟ ସତ୍ୟବାଣୀ କେବଳ 'ଜଗଦ୍ଧିତାୟ କୃଷ୍ଣାୟ' ଏହି ମନ୍ତ୍ରରେ ଦୀକ୍ଷିତ ଗୋପବନ୍ଧୁଙ୍କ ମାନସଲୋକରୁ ନିଃସୃତ ହୋଇପାରେ, ଇତର କବିଙ୍କ ଲେଖନୀରୁ ନୁହେଁ । ଗୋପଦାସଙ୍କ 'ଗୋ-ମାହାତ୍ମ୍ୟ'ର ଏ ମହତ୍ତ୍ୱ ପ୍ରଖ୍ୟାପନର ସୁଦୃଢ଼ ସମର୍ଥନ ଦେଖିବାକୁ ମିଳେ, 'ସମାଜ'ର ଅଷ୍ଟବିଂଶତିତମ ଗୋପବନ୍ଧୁ ଶ୍ରାଦ୍ଧ-ଦିବସ ସଂଖ୍ୟାରେ ପ୍ରକାଶିତ ଶ୍ରୀ ଗଜେନ୍ଦ୍ରନାଥ ସାମଲଙ୍କ 'ବିଶ୍ୱକବି ଗୋପଦାସ ଏବଂ ଗୋ-ମାହାତ୍ମ୍ୟ' ଶୀର୍ଷକ ପ୍ରବନ୍ଧରେ । ଲେଖକ ଗୋପବନ୍ଧୁ ସାହିତ୍ୟର ଜଣେ ବଶିଷ୍ଟ ଓ ଦରଦୀ ସମାଲୋଚକ । ଯେଉଁ କେତେଜଣ ସମାଲୋଚକ ଗୋପବନ୍ଧୁଙ୍କ ଅନ୍ତର୍ଜଗତର ଚିର ଦେଦୀପ୍ୟମାନ ଆଲୋକର ସନ୍ଧାନ ଲାଭକରିଅଛନ୍ତି, ସେମାନଙ୍କ ମଧ୍ୟରେ ଏହି ବିଜ୍ଞ ଲେଖକ ଅନ୍ୟତମ । ସେ 'ଗୋ-ମାହାତ୍ମ୍ୟ'ରେ ଗୋପବନ୍ଧୁଙ୍କ ସମାଜବାଦୀ ଚିନ୍ତାଧାରାର ଆଭାସ ପାଇଅଛନ୍ତି । ଏ ସମ୍ବନ୍ଧରେ ତାଙ୍କର ଉକ୍ତି ଗଭୀର ପ୍ରଣିଧାନର ସାମଗ୍ରୀ:—ବିଶ୍ୱକବି ଗୋପଦାସଙ୍କ ଲିଖିତ ଗୋ-ମାହାତ୍ମ୍ୟ ବିଶ୍ୱସାହିତ୍ୟର ଏକ ଅମୂଲ୍ୟ ମଣି—ବଣମଲ୍ଲୀ ସଦୃଶ ଉତ୍କଳ ବାଣୀ-ମନ୍ଦିରରେ ଫୁଟି ଶୋଭା ସୌରଭ ବିକାଶ କରୁଅଛି । × × ।"
ଆଜି ଦେଶକୁ ସମାଜବାଦୀ ଢାଞ୍ଚାରେ ଉନ୍ନୟନ କରିବାକୁ ଯୋଜନା ହେଉଅଛି; କିନ୍ତୁ 'ଗୋ ମାହାତ୍ମ୍ୟ'ର ଦୂରଦ୍ରଷ୍ଟା କବି ବହୁ ପୂର୍ବରୁ ଦେଶର ମୂଳପିଣ୍ଡ ଗ୍ରାମମାନଙ୍କରେ ସମାଜବାଦୀ ଢାଞ୍ଚାରେ ଗୋପାଳନ କରିବାକୁ ଆହ୍ୱାନ ଏବଂ ସୂଚନା ଦେଇଯାଇଛନ୍ତି —

'ଯେ ଗ୍ରାମେ ମିଳି ଲୋକ ସର୍ବ । କରନ୍ତି ଏ ଧନ୍ୟ ଉତ୍ସବ ।
ସକଳ ବର୍ଣ୍ଣ ସର୍ବଜାତି । ଏକନିଷେ ଉତ୍ସବ ପାଳନ୍ତି ।
କରନ୍ତି ଗୋ ପ୍ରତି ଆଦର । ବାରନ୍ତି ନାହିଁ ନିଜ ପର ।
ସେ ଗ୍ରାମେ ନ ପଶଇ କଳି । ସୁଖେ ରହନ୍ତି ସର୍ବେ ମିଳି ।
ଶିରୀ ସେ ଗ୍ରାମରୁ ନ ତୁଟେ । ଲୋକଙ୍କ ଦେହେ ତେଜ ଫୁଟେ ।
ନ ଘଟେ ଗ୍ରାମେ ମାରୀଭୟ । ନୁହେଁ ଅକାଳେ ଜନକ୍ଷୟ ।
ଯେ ଗ୍ରାମେ ମିଳି ସର୍ବ ନର । ରଖନ୍ତି ବହୁତ ଗୋଚର ।"

## ନବମ ପରିଚ୍ଛେଦ

### ଉପନିଷଦର ପୃଷ୍ଠପୀଠିକାରେ ଗୋପ-ମାନସ

ବିଶ୍ୱକବି ରବୀନ୍ଦ୍ରନାଥଙ୍କ ମାନସକୁ ଉପନିଷଦର ପୃଷ୍ଠଭୂମିକାରେ ବିଶ୍ଳେଷଣ କରିବାକୁ ଯାଇ ଜଣେ ପ୍ରବୀଣ ସମାଲୋଚକ କହନ୍ତି, ଉପନିଷଦର ଯେଉଁ ତିନୋଟି ବାଣୀ ରବୀନ୍ଦ୍ରନାଥଙ୍କ ମନରେ ସର୍ବାଧିକ ଆଲୋଡ଼ନ ସୃଷ୍ଟିକରି ତାଙ୍କର କବିଧର୍ମକୁ ବିଶେଷଭାବରେ ପ୍ରଭାବିତ କରିଥିଲା, ସେହି ତିନୋଟି ବାଣୀ ହେଉଛି—

(୧) ଏଷ ଦେବୋ ବିଶ୍ୱକର୍ମା ମହାତ୍ମା
ସଦା ଜନାନାଂ ହୃଦୟେ ସନ୍ନିବିଷ୍ଟଃ ।

ଏହି ଦେବ ବିଶ୍ୱକର୍ମା ମହାତ୍ମା । ସେ ସର୍ବଦା ଜନସମୂହର ହୃଦୟରେ ସନ୍ନିବିଷ୍ଟ ।

(୨) ତେ ସର୍ବଗଂ ସର୍ବତଃ ପ୍ରାପ୍ୟ ଧୀରା
ଯୁକ୍ତାତ୍ମନଃ ସର୍ବମେବା ବିଶନ୍ତି ।

ସେହି ଯୁକ୍ତାତ୍ମା-ଧୀରଗଣ ସର୍ବଗକୁ ସର୍ବଭାବରେ ପ୍ରାପ୍ତହୋଇ ସର୍ବ ମଧ୍ୟରେ ପ୍ରବେଶ କରନ୍ତି ।

(୩) ଯସ୍ତୁ ସର୍ବାଣି ଭୂତାନ୍ୟାତ୍ମନେବାନୁପଶ୍ୟତି
ସର୍ବଭୂତେଷୁ ଚାତ୍ମାନଂ ତତୋ ନ ବିଜୁଗୁପ୍ସତେ ।
ଯସ୍ମିନ୍ ସର୍ବାଣି ଭୂତାନ୍ୟାତ୍ମୈବାଭୂଦ୍ୱିଜାନତଃ
ତତ୍ର କୋ ମୋହଃ କଃ ଶୋକ ଏକତ୍ୱମନୁପଶ୍ୟତଃ ।

ଯେ ସର୍ବଭୂତକୁ ଆତ୍ମା ମଧ୍ୟରେ ଅବସ୍ଥିତ ଦେଖେ, ସର୍ବଭୂତରେ ଆତ୍ମାକୁ ଦେଖେ, ସେ କାହାକୁ ଘୃଣା କରେନାହିଁ । ଯେତେବେଳେ ସର୍ବଭୂତ ସେହି ଜ୍ଞାନୀ ବ୍ୟକ୍ତିର ଆତ୍ମା ହୋଇଥାଏ, ସେତେବେଳେ ଏକତ୍ୱ ଦର୍ଶନକାରୀ ସେହି ବ୍ୟକ୍ତିର ମୋହ କ'ଣ ? ଶୋକ ବା କ'ଣ ? ଗୋପବନ୍ଧୁ ରବୀନ୍ଦ୍ରନାଥଙ୍କ ପରି 'ବିଶ୍ୱକବି' ଆଖ୍ୟାଲାଭ ନ କରିଥିଲେହେଁ, ଏବଂ ତାଙ୍କପରି ସୁବିପୁଳ ସାହିତ୍ୟ-ଶିଳ୍ପ ଗଠନ

କରି ଯାଇ ନ ଥିଲେହେଁ, ବୁହେଁ ସମଭାବରେ ଉପନିଷଦର ମନ୍ତ୍ରରେ ସୁଦୀକ୍ଷିତ । ଦୁହିଁଙ୍କର ପ୍ରଗାଢ଼ ବିଶ୍ୱାସ, "ଈଶାବାସ୍ୟ ମିଦଂ ସର୍ବଂ ଯତ୍କିଞ୍ଚିତ୍ ଜଗତ୍ୟାଂ 'ଜଗତ୍"—ଏ ଜଗତରେ ଯାହା କିଛି ବର୍ତ୍ତମାନ, ସେ ସକଳ ଈଶ୍ୱରଙ୍କଦ୍ୱାରା ଆଚ୍ଛାଦିତ । ସେହି ଏକହିଁ ସକଳ ଅନିତ୍ୟ ମଧ୍ୟରେ ନିତ୍ୟ । ସେହି ଏକକୁ ଯେ ନିଜେ ଆତ୍ମା ମଧ୍ୟରେ ଦେଖେ, ସେହି କେବଳ ଶାଶ୍ୱତ ଶାନ୍ତି ଉପଭୋଗ କରେ, ଅନ୍ୟମାନେ ନୁହନ୍ତି । ଉଭୟଙ୍କ ହୃଦୟ-କନ୍ଦରର ନିଗୂଢ଼ ଅନୁଭୂତି—ଏକ ଦେବତା ସର୍ବଭୂତ ମଧ୍ୟରେ ଗୂଢ଼ ହୋଇ ରହିଛନ୍ତି, ସେ ସର୍ବବ୍ୟାପୀ, ସେ ସକଳ କର୍ମର ଅଧ୍ୟକ୍ଷ, ସର୍ବଭୂତର ନିବାସସ୍ଥଳ ଏବଂ ଚୈତନ୍ୟଦାୟକ, ସେ ସର୍ବକାମ, ସର୍ବଗନ୍ଧ, ସର୍ବରସ, ସେ ଏହି ଜଗତକୁ ପରିବ୍ୟାପ୍ତ କରି ରଖିଅଛନ୍ତି, ସେହି ବ୍ରହ୍ମ ମୋର ଆତ୍ମା, ସେଇ ମୋର ହୃଦୟର ଅଭ୍ୟନ୍ତରରେ ଅବସ୍ଥିତ ।

ଏହି ଉପନିଷଦସଚେତନତା ବିଶ୍ୱକବିଙ୍କ କବିତା ପ୍ରବାହରେ ଯେପରି ସୁସ୍ପଷ୍ଟ, ଗୋପବନ୍ଧୁଙ୍କ କବିତାର ସ୍ତବକ-ପରିସର ମଧ୍ୟରେ ବି ସେହିପରି ପରିସ୍ଫୁଟ । ରବୀନ୍ଦ୍ରନାଥଙ୍କ 'ଚତୁର୍ଦ୍ଧିତ ଭଗବତ୍ତ୍ୱ' ମଧ୍ୟରେ ଯେପରି ଗୋଟିଏ 'ଚୈତନ୍ୟମୟ ସୃଜନୀ ଶକ୍ତି' ଅଛି, ଏବଂ ଏହି 'ସୃଜନୀ ଶକ୍ତି' ମଧ୍ୟରେ ନିହିତ ଅଛି ମନୁଷ୍ୟ ନିମନ୍ତେ ଗୋଟିଏ ମଙ୍ଗଳମୟ ଆଦର୍ଶ, ସେହିପରି ଗୋଟିଏ ସର୍ବଶୁଭଙ୍କରୀ ପୂର୍ଣ୍ଣତାର ଆଦର୍ଶ ଓ ହୃଦୟର ଅନିବାର୍ଯ୍ୟ ମଙ୍ଗଳପ୍ରବଣତା ଗୋପବନ୍ଧୁଙ୍କ କବିତା ଓ କର୍ମରେ ପ୍ରକଟିତ । ରବୀନ୍ଦ୍ରନାଥଙ୍କ ପରି ଗୋପବନ୍ଧୁଙ୍କର ବିଶ୍ୱାସ, ମନୁଷ୍ୟର ସମାଜ-ବୋଧ ଓ ଅଧ୍ୟାତ୍ମ-ବୋଧ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଏହି ସମାଜ-ବୋଧ ଅଛି ବୋଲି ମନୁଷ୍ୟ ଆତ୍ମାକୁ ଅତିକ୍ରମ କରି ଅପର ସହିତ ମିଳିତ ହେବାକୁ ଏତେ ବ୍ୟଗ୍ର ଓ ଆକାଙ୍କ୍ଷିତ । ନିଖିଳମାନବ ସହିତ ଏହି ମିଳନ-ପିପାସାର ଉତ୍ସ ହେଲା ମନୁଷ୍ୟର ଅଧ୍ୟାତ୍ମପ୍ରେରଣା, ଏହି ଅଧ୍ୟାତ୍ମପ୍ରେରଣାରୁ ଆସେ ସକଳ ଐକ୍ୟବୋଧ, କାରଣ ଭଗବାନଙ୍କଦ୍ୱାରା ଏ ସଂସାରରେ ଯାହାକିଛି ବର୍ତ୍ତମାନ, ତାହା ପରିବ୍ୟାପ୍ତ ଓ ଆଚ୍ଛାଦିତ । ତେଣୁ ଭେଦାତ୍ମକ ଓ ଅଲୀକ ଅହଂରୁ ନିଜକୁ ମୁକ୍ତକରି ନିଖିଳମାନବ-ସମାଜ ସହିତ ମିଳିତ ହେବାକୁ ହେବ । ଏହି ନିଖିଳ ମିଳନର ଶୁଭଚେତନାକୁ ସେବାବୃତ୍ତି ପ୍ରଣୋଦିତ କର୍ମଦ୍ୱାରା ଜୀବନରେ ସାର୍ଥକ କରିବାକୁ ହେବ । "ଏହା ହିଁ ରବୀନ୍ଦ୍ର-ନାଥଙ୍କ ବର୍ଣ୍ଣିତ କାନ୍ତିଭୂତ, ଆଧ୍ୟାତ୍ମପ୍ରେରଣା ଓ ଭେଦବୁଦ୍ଧିରହିତ ପୂର୍ଣ୍ଣତାର ଆଦର୍ଶ । ଏହି ଆଦର୍ଶରେ ସେ ପ୍ରଭାବିତ ହୋଇଥିଲେ ଉପନିଷଦଦ୍ୱାରା ।

'ମନୁଷ୍ୟର ଧର୍ମ' ପ୍ରବନ୍ଧରେ ସେ ଲେଖିଅଛନ୍ତି, "ମନୁଷ୍ୟ ଆପଣା ଅନ୍ତରର ଗମ୍ଭୀରତମ ଚେଷ୍ଟାପ୍ରତି ଲକ୍ଷ୍ୟକରି ଅନୁଭବ କରିଛି ଯେ ସେ କେବଳ ବ୍ୟକ୍ତିଗତ

ମନୁଷ୍ୟ ନୁହଁ, ସେ ବିଶ୍ୱଗତ ମନୁଷ୍ୟର ଏକାଂଶ । ସେହି ବିରାଟ ମାନବ 'ଅତିଭକ୍ତ୍ୟାଁ-ଭୂତେଭ୍ୟୋ ବିଭକ୍ତମିବ ଚ ସ୍ଥିତଂ । ସେହି ବିଶ୍ୱମାନବର ପ୍ରେରଣାରେ ବ୍ୟକ୍ତିଗତ ମନୁଷ୍ୟ ଏପରି ସକଳ କାର୍ଯ୍ୟରେ ପ୍ରବୃତ୍ତ ହୁଏ, ଯାହା ତାର ଭୌତିକ ସୀମାକୁ ଅତିକ୍ରମ କରେ । ଯାହାକୁ ସେ କହେ ଭଲ, କହେ ସୁନ୍ଦର, କହେ ଶ୍ରେଷ୍ଠ । କେବଳ ସମାଜ ରକ୍ଷା ଦିଗରୁ ସେ ଏ କଥା କହେ ନାହିଁ । ନିଜ ଆତ୍ମାର ପରିପୂର୍ଣ୍ଣ ପରିତୃପ୍ତି ପ୍ରତି ଲକ୍ଷ୍ୟ ରଖି ସେ ଏପରି କହେ ।"

ଏପରି 'ବିଶ୍ୱଗତ' ମନୁଷ୍ୟର ଜୀବନ କୁହରରେ ବିଶ୍ୱର ମଙ୍ଗଳ ଶଙ୍ଖ ଧ୍ୱନିତ ହୋଇ ଉଠେ । ନିଖିଳ ଜଗତର ଦ୍ୱାର ତା ପ୍ରତି ଅବାରିତ ଓ ଉନ୍ମୁକ୍ତ ହୁଏ । କବିଗୁରୁ ରବୀନ୍ଦ୍ରନାଥଙ୍କ ଭାଷାରେ—

> 'ବନ୍ଧନ ହାରାଯ୍ରେ ଗିଯ୍ରେ ସ୍ୱାର୍ଥ ବ୍ୟାପ୍ତ ହୟ
> ଅବାରିତ ଜଗତେର ମାଝେ
> ବିଶ୍ୱେର ନିଃଶ୍ୱାସ ଲାଗି ଜୀବନ କୁହରେ
> ମଙ୍ଗଳ-ଆନନ୍ଦ ଧ୍ୱନି ବାଜେ ।'

ଏହି ମହାମଙ୍ଗଳର ମନ୍ତ୍ରଧ୍ୱନି ଗୋପବନ୍ଧୁଙ୍କ ସକଳ ଚିନ୍ତା ଓ କର୍ମ ମଧ୍ୟରେ ପ୍ରତିଧ୍ୱନିତ । ସେ କୌଣସି ସାଧୁ ଓ ଜନହିତକର ଅନୁଷ୍ଠାନରେ ସେ ମଙ୍ଗଳମୟ ଭଗବାନଙ୍କର ଇଙ୍ଗିତ ଓ ସ୍ପର୍ଶ ଅନୁଭବ କରୁଥିଲେ । ଭକ୍ତି ଓ କର୍ମ ତାଙ୍କ ଜୀବନରେ ଅଙ୍ଗାଙ୍ଗୀଭାବରେ ଜଡ଼ିତ ଥିଲା । ଭକ୍ତିଭାବରେ ବିହ୍ୱଳ ହୋଇ ସେ କଦାପି ବୈରାଗ୍ୟ, ନୈଷ୍କର୍ମ୍ୟ ଓ ନୈଷ୍କିନ୍ତ୍ୟକୁ ଆଶ୍ରୟ ଦେଇନାହାନ୍ତି । ସୋଽହଂବାଦୀ ହୋଇ ସେ କେବଳ ଯୋଗୀ ଋଷିମାନଙ୍କପରି ମୋକ୍ଷକୁ ଚାହିଁ ବସି ନ ଥିଲେ । କର୍ମକ୍ଷେତ୍ରରେ ସହକର୍ମୀମାନଙ୍କଠାରୁ ନିନ୍ଦା, ଅପମାନ ଓ ଆଘାତ ପାଇଲେ ସେ ସେହି ବିଶ୍ୱବନ୍ଧୁ ଭଗବାନଙ୍କଠାରେ ଆତ୍ମନିବେଦନ କରି ପରମ ଶାନ୍ତି ଲାଭ କରୁଥିଲେ । ଭଗବାନଙ୍କ ସାନ୍ନିଧ ଓ କୃପାରୁ ବଞ୍ଚିତହେଲେ ତାଙ୍କର ଜୀବନ ହାହାକାରମୟ ହେଉଥିଲା; କିନ୍ତୁ ଏ ଭଗବତ୍-ଚେତନା ତାଙ୍କ ପ୍ରାଣକୁ ଏପରି ଆଚ୍ଛନ୍ନକରି ରଖିଥିଲା ଯେ, ସେ ଘୋର ନୈରାଶ୍ୟ ମଧ୍ୟରେ ଆଶାର ଜ୍ୟୋତିର୍ମୟ ରେଖା ଦେଖିପାରୁଥିଲେ । କଠୋପନିଷଦର ଏହି ଉଦାତ୍ତ ବାଣୀରେ ସେ ଉଦ୍‌ବୁଦ୍ଧ ଥିଲେ—

> 'ତମେବ ଭାନ୍ତ ମନୁଭାତି ସର୍ବଂ
> ତସ୍ୟ ଭାସା ସର୍ବମିଦଂ ବିଭାତି ।'

ତାଙ୍କର ଉଦୟରେ ହିଁ ସକଳ ବସ୍ତୁର ଉଦୟ । ତାଙ୍କର ବାସରେ ସକଳ ବାସିତ, ତାଙ୍କର ଜ୍ୟୋତିରେ ହିଁ ଏ ପୃଥିବୀର ସକଳ ବସ୍ତୁ ଜ୍ୟୋତିର୍ମୟ । ସେହି ଏକ ସର୍ବତ୍ର ବିରାଜମାନ, ସେ ଜୀବନର ପରମ ଗତି, ସେ ଜୀବର ପରମ ସମ୍ପତ୍ତି, ସେ ଜୀବର ପରମ ଲୋକ, ସେ ଜୀବର ଆନନ୍ଦ ।

ଏଷୋଽସ୍ୟ ପରମା ଗତିଃ, ଏଷାସ୍ୟ ପରମା ସମ୍ପତ୍,
ଏଷୋଽସ୍ୟ ପରମୋ ଲୋକଃ ଏଷୋଽସ୍ୟ ପରମ ଆନନ୍ଦଃ ।

ତେଣୁ ଉତ୍କଳ ସମ୍ମିଳନୀର କାର୍ଯ୍ୟକଳାପ ଆଲୋଚନା କରିବାକୁ ଯାଇ ସେ ସେହି ଏକନିଷ୍ଠ ଈଶ୍ୱର ବିଶ୍ୱାସର ପରିଚୟଦେଇ ଲେଖିଥିଲେ 'ପୁଣି କୌଣସି ଉଚ୍ଚ ସାଧୁଚିନ୍ତା ଏବଂ ଉନ୍ନତ ଜାତୀୟ ଅନୁଷ୍ଠାନ ଯେ କେହି ସୂତ୍ରପାତ କରନ୍ତୁ, ତାହା ବ୍ୟକ୍ତିବିଶେଷରେ ସୃଷ୍ଟି ନୁହେଁ । ତାହା ସମସ୍ତ କଲ୍ୟାଣର ଆଧାର ସେହି ବିଧାତାଙ୍କଠାରୁ ଆସେ । ଏତଦପେକ୍ଷା ଅଧିକ ଦାବୀ କରିବା କାହାର ଉଚିତ ନୁହେଁ ।' ମାନବତା ମଧ୍ୟରେ ଯେତେବେଳେ ଦେବତ୍ୱର ଏହି ମହାବତରଣ ଘଟେ, ସେତେବେଳେ ଏ ମର୍ତ୍ତ୍ୟ ପୃଥିବୀ ଅମର୍ତ୍ତ୍ୟ ହୋଇଉଠେ । ଧର୍ମପଦ ବାରହେ ଶିଳ୍ପୀଙ୍କ ପ୍ରାଣରକ୍ଷା ନିମନ୍ତେ ଯେତେବେଳେ ମନ୍ଦିର ଚୂଡ଼ାରୁ ଲମ୍ଫ ପ୍ରଦାନକରି ଆତ୍ମୋତ୍ସର୍ଗ କରିବାକୁ ପ୍ରସ୍ତୁତ, ସେତେବେଳେ ତା ପ୍ରାଣରେ ସେହି ବିଭୁ-ଚେତନାର ଜ୍ୟୋତିର୍ମୟ ମହାଭାବ ଉଦ୍ଭାସିତ ହୋଇ ଉଠିଛି :—

"ଦେଶକାଳ ସୀମା— ଅଜ୍ଞାତ ମହିମା
ଅଗୋଚର ସୁର ନରେ
ଏକ ଅଦ୍ୱିତୀୟ ପୂର୍ଣ୍ଣ ପ୍ରେମମୟ
ଜୟ ଜଗଦୀଶ ହରେ ।"

'କାରା-କବିତା'ର 'ବିଶ୍ୱର ମିଳନ ଛନ୍ଦ' କବିତାରେ ନିଖିଳ ବିଶ୍ୱ ସହିତ ପରିପୂର୍ଣ୍ଣ ଭାବରେ ମିଳିତହୋଇ ନିଜର ବ୍ୟକ୍ତିଗତ ସତ୍ତା ଲୋପ କରିଦେବାର ଆକାଙ୍କ୍ଷା ଯେପରି ଅପରୂପ ଓ ଆବେଗମୟ ଅଭିବ୍ୟକ୍ତି ଲାଭକରିଛି, ତାହା ତାଙ୍କର ସେହି ଭଗବତ୍ ସତ୍ତାର ସମ୍ପୂର୍ଣ୍ଣମୟ । ନିଜକୁ ଅନ୍ୟଠାରୁ ବିଚ୍ଛିନ୍ନକରି ରଖିବାରେ ସୁଖ ନାହିଁ, କି ସୌନ୍ଦର୍ଯ୍ୟ ନାହିଁ । ସେଥିରେ ନାହିଁ ଜୀବନର ଶୃଙ୍ଖଳା କିମ୍ବା ସୌଷ୍ଠବ । ତେଣୁ 'ବିଶ୍ୱର ମିଳନ ଛନ୍ଦ' କବିତାରେ କବିପ୍ରାଣର ଏହି ଯେଉଁ ଅଭିପ୍ରାୟ ଓ ହୃଦୟର ବହୁତ ପ୍ରେମୋଚ୍ଛ୍ୱାସ—

"ଗିରି ସାଗର ନଦୀ ତପନ ଶଶୀ
ହବେ ତୃପ୍ତିବେ ମୋତେ ପ୍ରେମେ ପରଶି ।
ମୋ ପ୍ରାଣ ପ୍ରେମଧାରେ ଭାସିବ ଧରା
ହେବ ଏ ବିଶ୍ୱ ମୋର ପ୍ରେମ-ପସରା ।"

ସେହି ବିଶ୍ୱବ୍ୟାପୀ ଆଧ୍ୟାତ୍ମିକ ଚେତନା ମଧ୍ୟରେ କେବଳ 'ସତ୍ୟ ଶିବ ସୁନ୍ଦର ଅଗତି ଗତି' ପ୍ରାଣପତିଙ୍କର ପ୍ରତୀକ୍ଷା ନାହିଁ, ସେତିକି ମାତ୍ର ଥିଲେ ଆମ୍ଭେମାନେ ଗୋପବନ୍ଧୁଙ୍କୁ ଜଣେ ରହସ୍ୟବାଦୀ କିମ୍ବା ଅଧ୍ୟାତ୍ମବାଦୀ ପଳାୟନପନ୍ଥୀ କବିରୂପେ ଏ ବୈଜ୍ଞାନିକ ଯୁଗରେ ଉପେକ୍ଷା କରିଥାନ୍ତୁ; କିନ୍ତୁ ପୂର୍ବରୁ ସୂଚନା ଦିଆଯାଇଅଛି, ଗୋପବନ୍ଧୁଙ୍କର ଏ ଅଧ୍ୟାତ୍ମ-ପ୍ରେରଣା, ମାନବତା କିମ୍ବା ନର-ନାରାୟଣ ସେବାର ରୂପାନ୍ତର ମାତ୍ର । ଭୂମିକୁ ବର୍ଜନକରି ସେ କେବଳ ଭୂମାର ଉପାସନାରେ ନିଷ୍ଠିନ୍ତ ହୋଇ ରହିନାହାନ୍ତି । ସେ ଭଗବତ୍ ଚେତନା କେଉଁଠାରେ କେବଳ ଶୂନ୍ୟରେ ଲମ୍ବମାନ ନୁହେଁ । ସେ ଈଶ୍ୱର ପ୍ରୀତି କେଉଁଠାରେ ମାନବତାବର୍ଜିତ ନୁହେଁ । ରବୀନ୍ଦ୍ରନାଥଙ୍କ ପରି ଗୋପବନ୍ଧୁ ବାରମ୍ବାର ତାଙ୍କର ଚିନ୍ତା, ସାଧନା ଓ ସାହିତ୍ୟରେ ଆମକୁ ଯେପରି ଚେତାଇ ଦେଇ କହିଯାଇଅଛନ୍ତି, 'ଲକ୍ଷ କୋଟି ପ୍ରାଣୀ ହୃଦୟ ମୋର ଏକ ଗତି । ଯେଉଁ ମର୍ତ୍ତ୍ୟ କୋଳରେ ମୁଁ ଜନ୍ମିଛି, ତାକୁ ଘୃଣାକରି ସ୍ୱର୍ଗ ଓ ମୁକ୍ତି ଖୋଜିବା ପାଇଁ ମୁଁ ବ୍ୟାକୁଳ ନୁହେଁ । ରବୀନ୍ଦ୍ରନାଥଙ୍କ ପରି ସେ ଯେପରି ବ୍ୟାକୁଳ ପ୍ରାଣରେ ଆମ୍ଭମାନଙ୍କୁ ଏହି ପ୍ରଶ୍ନ ପଚାରିଅଛନ୍ତି—

"ବିଶ୍ୱ ଯଦି ଚଲେ ଯାୟ କାନ୍ଦିତେ କାନ୍ଦିତେ
ଆମି ଏକା ବସେ ରବ ମୁକ୍ତିସମାଧିତେ ?"

ରବୀନ୍ଦ୍ରନାଥ 'ଗୀତାଞ୍ଜଳି'ରେ ଭଗବାନଙ୍କର ଏହି ମାନବ ସେବାର ଇଙ୍ଗିତ ଦେବାକୁ ଯାଇ ଲେଖିଅଛନ୍ତି—

'ତିନି ଗେଛେନ 	ଯେଥାୟ ମାଟି ଭେଙ୍ଗେ
କରଛେ ଚାଷା ଚାଷ
ପାଥର ଭେଙ୍ଗେ 	କାଟଛେ ଯେଥାୟ ପଥ
ଖାଟଛେ ବାରୋମାସ ।
ରୌଦ୍ରେ ଜଲେ 	ଆଛେନ ସବାର ସାଥେ
ଧୂଲା ତାହାର ଲେଗେଛେ ଦୁଇହାତେ
ତା'ର ମତନ 	ଶୁଚି ବସନ ଛାଡ଼ି
ଆୟରେ ଧୂଲାୟ ପରେ ।"

ଏ ତ ହେଉଛି 'କର୍ମାଧ୍ୟକ୍ଷ' ବିଶ୍ୱସ୍ରଷ୍ଟାଙ୍କର ମହାମାନବତା ଓ କର୍ମଯୋଗର ଏକ ରମଣୀୟ ଆଭାସ । ଏଇଠାରେ ମନୁଷ୍ୟ ଓ ଭଗବାନ୍ ଅଭିନ୍ନ, ଅଦ୍ୱୟ ଓ ଏକୀଭୂତ । ମାନବ ସେବା ସହିତ ଅଧ୍ୟାତ୍ମସାଧନାର ମୂଳ ସ୍ୱରଟି ଏଇଠାରେ ନିହିତ । ଏଠାରେ କବିଗୁରୁ ରବୀନ୍ଦ୍ରନାଥ ଶଲଦ୍‌ଘର୍ମ କର୍ମଯୋଗୀ ଭଗବାନଙ୍କର ଯେଉଁ କର୍ମପ୍ରବଣତାର ଆଲେଖ୍ୟ ଅଙ୍କନ କରିଅଛନ୍ତି, ସେ ଆଲେଖ୍ୟର ନିଗୂଢ଼ ବାସ୍ତବତା ଗୋପବନ୍ଧୁଙ୍କ କର୍ମମୟ ଜୀବନରେ ସର୍ବଦା ପ୍ରତିଫଳିତ । ଏହା ବୋଲି ଏପରି କହିବା ଅସମୀଚୀନ ଯେ ଗୋପବନ୍ଧୁ ସ୍ୱୟଂ ଭଗବାନ୍ ଏବଂ କର୍ମଯୋଗର ମହତ୍ତ୍ୱ ଦର୍ଶାଇବା ନିମନ୍ତେ ମନୁଷ୍ୟରୂପେ ତାଙ୍କର ଏ ମର୍ତ୍ତ୍ୟଭୂମିରେ ଆବିର୍ଭାବ । ଗୋପବନ୍ଧୁ ଦେବତା ନୁହନ୍ତି, ଭଗବାନ ନୁହନ୍ତି, ପରମବ୍ରହ୍ମ ନୁହନ୍ତି, ସେ ଆମ-ତୁମପରି ଜଣେ ସାଧାରଣ ମନୁଷ୍ୟ । ସେ ଶୁଭ୍ରବସନ ଗୁଡ଼ି ଦୀନଦୁଃଖୀଙ୍କ ସହିତ ନିଜେ ଖାଟିଛନ୍ତି । ତାଙ୍କର ପାଇଁ ପାଣି, ପବନ ଓ ଖରା ସହି ଅର୍ଦ୍ଧ ଅନଶନରେ ନିଜର ଆୟୁକୁ କ୍ଷୀଣ କରିଦେଇଅଛନ୍ତି । ପଥଶ୍ରମରେ ତାଙ୍କର ଦେହ ଧୂଳିଧୂସରିତ ହୋଇଅଛି । ଏହା ହିଁ ଥିଲା ଗୋପବନ୍ଧୁଙ୍କର କର୍ମଯୋଗ, ଦରିଦ୍ର ସେବା ନୁହଁ, ଦରିଦ୍ର-ନାରାୟଣ ସେବା, ଏହା ହିଁ ତାଙ୍କ ଅଧ୍ୟାତ୍ମ-ସାଧନାର ନାମାନ୍ତର । ସମଗ୍ର 'ବନ୍ଦୀର ଆତ୍ମକଥା' ହିଁ ଏହି ଅଧ୍ୟାତ୍ମ-ସାଧନ ର ପ୍ରାଣମୟ ବାଣୀମୂର୍ତ୍ତି । କବି 'ବନ୍ଦୀର ଆତ୍ମକଥା'ରେ ଯେଉଁଠାରେ ଦେଶବାସୀଙ୍କୁ ଉଦ୍‌ବୋଧନ ଦେବାକୁ ଯାଇ ଲେଖିଅଛନ୍ତି 'ପରକାଶୁ ନର-ପର୍ବେ ଦେବତା'—ସେଠାରେ କବିଙ୍କର ଲକ୍ଷ୍ୟ ସେହି ମହାମାନବତା ରୂପକ ଅଧ୍ୟାତ୍ମ-ସାଧନା । ପୂର୍ବରେ ଓକିଲାତି କରୁଥିଲାବେଳେ ମକ୍କେଲମାନେ ମିଥ୍ୟା ମୋକଦ୍ଦମା ଆଣି ଗୋପବନ୍ଧୁଙ୍କୁ ତାଙ୍କର ଓକିଲ ହେବାକୁ ଅନୁରୋଧ କଲେ, ସେ ସେମାନଙ୍କୁ ଏ ମିଥ୍ୟାଚରଣରୁ ନିବୃତ୍ତହେବା ନିମନ୍ତେ ମୀଠ-ଉପଦେଶ ଦେଇ କହୁଥିଲେ, "ତୁମେ ସବୁ ନାରାୟଣ, ନରରୁ ନାରାୟଣ ହେବାକୁ ଚେଷ୍ଟା କର ।" ନରଠାରେ ଏହି ଯେଉଁ ନାରାୟଣ ଜ୍ଞାନ, ପରବର୍ତ୍ତୀ ଜୀବନରେ ଉପନିଷଦ ପାଠଦ୍ୱାରା ପରିପୁଷ୍ଟି ଲାଭ କରିଥିଲେ ମଧ୍ୟ ତା ଏହି ଚେତନା ଥିଲା ତାଙ୍କର ଏକ ସହଜାତ ପ୍ରବଣତା ।

'ମାନବସେବା ହିଁ ଭଗବତ୍‌ସେବା'—ଏହା ହିଁ ଥିଲା ଗୋପବନ୍ଧୁଙ୍କର ଏକମାତ୍ର ଜୀବନ-ଦର୍ଶନ । ଏ ଜୀବନ ଦର୍ଶନ ଯେପରି କବିତାର ମଧୁର ମୋହନ ଛନ୍ଦରେ ପରିସ୍ଫୁଟ, ସେହିପରି ତାଙ୍କର ଚିନ୍ତାଗର୍ଭକ ଆଲୋଚନା ଓ ବକ୍ତୃତା-ବଳୀରେ ମଧ୍ୟ ପ୍ରସ୍ଫୁଟିତ । ୧୯୧୯ ମସିହା ଏପ୍ରିଲ ମାସରେ ଅନୁଷ୍ଠିତ ହୋଇଥିବା ଉତ୍କଳ-ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନରେ ସଭାପତି-ଅଭିଭାଷଣରେ ସେ ସ୍ପଷ୍ଟ ନିର୍ଦ୍ଦେଶ ଦେଇଥିଲେ ।

୧ । 'ସ୍ୱଦେଶ ସେବା ହିଁ ପ୍ରକୃତରେ ମନୁଷ୍ୟ ପକ୍ଷରେ ଭଗବତ୍ ସେବା' ।

୨ । 'ସାର୍ବଜନୀନ ମାନବସମାଜ ଭଗବାନଙ୍କର ଅଭିବ୍ୟକ୍ତ । ମାନବସେବା ହିଁ ଭଗବତ୍-ସେବା' ।

୩ । 'ବସ୍ତୁତଃ ଜାତୀୟତା ହିଁ ଆମ୍ଭମାନଙ୍କର ଧର୍ମ ।'

୪ । 'ଈଶ୍ୱର ଆମ୍ଭର ଜାତି ରୂପରେ ଆମ୍ଭମାନଙ୍କ ନିକଟରେ ଉପସ୍ଥିତ। ନରନାରାୟଣଙ୍କ ରୂପଛଡ଼ା ଅନ୍ୟ କୌଣସି ପ୍ରକାରେ ତାଙ୍କର ଧାରଣା ଆମ୍ଭମାନଙ୍କ ପକ୍ଷେ ଅସମ୍ଭବ' ।

ଈଶ୍ୱରଙ୍କର ଏହି 'ନରନାରାୟଣ' ରୂପକଳ୍ପନା ହିଁ ତାଙ୍କ ଜୀବନର ପରମ ବୈଶିଷ୍ଟ୍ୟ, ଏବଂ ଏହିଠାରେ ଗୋପବନ୍ଧୁଙ୍କର ବିଶ୍ୱଭାବ କିମ୍ବା ମହାଜାତୀୟ ଭାବର ସନ୍ଧାନ କରିବାକୁ ହେବ ।



# ଦଶମ ପରିଚ୍ଛେଦ

## ଗୋପବନ୍ଧୁଙ୍କ କବିତାରେ ବିଶ୍ୱହିତ

ଯେ ଈଶ୍ୱରଙ୍କ 'ନର-ନାରାୟଣ'ରୂପ କଳ୍ପନା କରେ ତା ଠାରେ ଉତ୍କଳୀୟତା, ମହାଭାରତୀୟତା ଏବଂ ଆନ୍ତର୍ଜାତୀୟତା, ଜାତୀୟତାର ଏପରି ବିଭିନ୍ନ ସ୍ତରର ଆକାରରେ ଧାରା ଲକ୍ଷ୍ୟ କରିବାର ପ୍ରୟାସ ବିଡମ୍ବନା ମାତ୍ର । ନିଖିଳ ବିଶ୍ୱବାସୀ ତା ଦୃଷ୍ଟିରେ ନର-ନାରାୟଣ । ସେଥିରେ ଦେଶକାଳପାତ୍ରର ବିଭେଦ-ରେଖା ନାହିଁ । ଯେ ଭଗବାନଙ୍କ ବିଶ୍ୱରୂପରେ ବିହ୍ୱଳ ତା ଚକ୍ଷୁରେ ଓଡ଼ିଆ, ବଙ୍ଗାଳୀ, ମାନ୍ଦ୍ରାଜୀ, ଇଂରେଜ, ଜର୍ମାନ, ଏ ସକଳ ଜାତି ସମାନ । ନିଖିଳ ବିଶ୍ୱବ୍ରହ୍ମାଣ୍ଡ ପ୍ରତି ତା'ର ପ୍ରଗାଢ଼ ମମତା, ତା ଦୃଷ୍ଟିରେ ଉତ୍କଳ ଭାରତରୁ ବିଚ୍ଛିନ୍ନ ନୁହେଁ କି, ଭାରତ ଇଉରୋପ କିମ୍ବା ଅନ୍ୟାନ୍ୟ ବୈଦେଶିକ ରାଷ୍ଟ୍ରମାନଙ୍କଠାରୁ ପୃଥକ୍ ନୁହେଁ । ତା'ର ସେବା ମହାମାନବର ସେବା, ସେ ସେବା କୌଣସି ନିର୍ଦ୍ଦିଷ୍ଟ ସ୍ଥାନ କିମ୍ବା ଦେଶରେ ସୀମାବଦ୍ଧ ନୁହେଁ । ସେ ସେବାର ପଶ୍ଚାତରେ ଥାଏ ପ୍ରାଣରେ ପ୍ରାଚୁର୍ଯ୍ୟ, ଉଦାର ମାନବିକତା, ଆତ୍ମାର ମହାପ୍ରସାର ଏବଂ ଚିତ୍ତର ସମୁନ୍ନତି । ଗୋପବନ୍ଧୁ ଏହିପରି ଜଣେ ବିଶ୍ୱଭାବାନୁପ୍ରାଣିତ କବି, ଭାବୁକ ଓ ସେବକ ଥିଲେ । ଉତ୍କଳ-ସେବାରେ ସେ କେବଳ ଭାରତ ନୁହେଁ, ସମଗ୍ର ବିଶ୍ୱର ସେବା କରୁଥିଲେ ବୋଲି ତାଙ୍କର ଦୃଢ଼ ପ୍ରତ୍ୟୟ ଥିଲା । ଜଗନ୍ନାଥ ଧର୍ମର ପରିବେଶରେ ତାଙ୍କର ଜୀବନାଦର୍ଶ ନିୟନ୍ତ୍ରିତ ହୋଇଥିଲା ବୋଲି ସେ ଏହି ନୀଳାଚଳ କ୍ଷେତ୍ରରେ ବିଶ୍ୱୈକପ୍ରାଣତା ଉପଲବ୍ଧି କରି ଲେଖିଥିଲେ—

'ନିଜ ସ୍ୱାର୍ଥ ଲଗି ଜାତି ନୁହେଁ ହିନ୍ଦୁ
ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ ।'

ଉତ୍କଳୀୟମାନଙ୍କ ପାଇଁ ସେ ଯେଉଁ ରକ୍ତବିନ୍ଦୁ ଢାଳୁଥିଲେ, 'ସର୍ବଦେବ ନମସ୍କାର କେଶବଂ ପ୍ରତିଗଚ୍ଛତି' ନ୍ୟାୟରେ ତାହା ବିଶ୍ୱର କଲ୍ୟାଣ ନିମନ୍ତେ ଢାଳା ହେଉଥିଲା ବୋଲି ତାଙ୍କର ପ୍ରତ୍ୟୟ ଥିଲା । ଏହି ପ୍ରତ୍ୟୟ ସେ କୌଣସି ରାଜନୈତିକ ଗ୍ରନ୍ଥ କିମ୍ବା ମହାତ୍ମାଗାନ୍ଧିଙ୍କ ପରି କୌଣସି ମହାପୁରୁଷଙ୍କ ପ୍ରେରଣାରୁ ଲାଭ କରି ନ ଥିଲେ । ସେଥିପାଇଁ ଗୋପବନ୍ଧୁଙ୍କ ଜୀବନ-ଦର୍ଶନ ଉପରେ ମତ ବ୍ୟକ୍ତକରିଥିବା କୌଣସି କୌଣସି ସମାଲୋଚକ ଉଲ୍ଲେଖ କରିଥିବାର

ଦେଖାଯାଏ, ଗୋପବନ୍ଧୁଙ୍କର କୌଣସି ଦାର୍ଶନିକ ଅର୍ଜିତ ନ ଥିଲା । ସେ କାହାଦ୍ୱାରା ପ୍ରଭାବିତ ହୋଇ କିଛି କରୁ ନଥିଲେ । ତାଙ୍କ ଆଦର୍ଶର ଉତ୍ସଭୂମି ଭଗବତ ଚେତନାର ଆଲୋକରେ ଉଦ୍ଭାସିତ । 'ଆଦର୍ଶଶୂନ୍ୟ' ହୋଇ ମଧ୍ୟ ସେ ପରନ୍ତୁ ମହା ଆଦର୍ଶବାନ । ସେପରି ଖାଣ୍ଟି ଓଡ଼ିଆ ହୋଇ ମଧ୍ୟ ସେ ଜଣେ ମହାବିଶ୍ୱଭାବାପନ୍ନ ବ୍ୟକ୍ତି । ମହା-ମାନବମାନଙ୍କ ଜୀବନରେ ଏପରି ପ୍ରହେଳିକା ପ୍ରାୟ ସବୁବେଳେ ଦେଖାଯାଏ । ଏଥିପାଇଁ ଜନସାଧାରଣ ସେମାନଙ୍କୁ ବୁଝିପାରନ୍ତିନାହିଁ, ବରଂ ଭୁଲ ବୁଝନ୍ତି । କିନ୍ତୁ ଏ କ୍ଷେତ୍ରରେ ଗୋପବନ୍ଧୁଙ୍କୁ ଭୁଲ ବୁଝିବାର କୌଣସି ଅବକାଶ ନାହିଁ । କାରଣ ଏ ଯେଉଁ ଆପାତ ପରସ୍ପର-ବୈପରୀତ୍ୟ-ବ୍ୟଞ୍ଜକ ଅସାମଞ୍ଜସ୍ୟ ଓ ଅସଙ୍ଗତ ତା'ର ସରଳ ସୁନ୍ଦର ପ୍ରାଞ୍ଜଳ ବ୍ୟାଖ୍ୟା ଓ ବିଶ୍ଳେଷଣ ଆମ୍ଭେମାନେ ତାଙ୍କର ବହୁ ଆଲୋଚନା, ସମାଲୋଚନା ଏବଂ ଭାଷଣ ଅଭିଭାଷଣମାନଙ୍କ ମଧ୍ୟରେ ଦେଖିବାକୁ ପାଉ । ଉତ୍କଳ-ସେବାରେ ମନୁଷ୍ୟ ଜୀବନର କିଶ୍ୱସେବା କିପରି ସମ୍ଭବ, ଏ ବିଷୟରେ ତାଙ୍କର ସୁଚିନ୍ତିତ ମତ ଆମ୍ଭେମାନେ ଦେଖିବାକୁ ପାଉ ତାଙ୍କ ସମ୍ପାଦିତ ସତ୍ୟବାଦୀରୁ ପ୍ରକାଶିତ ମାସିକ ସାହିତ୍ୟ-ପତ୍ରିକା 'ସତ୍ୟବାଦୀ'ର ପ୍ରଥମ ସମ୍ପାଦକୀୟ ଅଲୋଚନା' 'ଆଦର୍ଶ ଓ ଆକାଂକ୍ଷା' ଶୀର୍ଷକ ଲେଖାରେ ।' ଦେଶାନୁରାଗ ଓ ବିଶ୍ୱପ୍ରୀତିର ଅଭିନ୍ନତା ସମ୍ବନ୍ଧରେ ନିଜର ମତବ୍ୟକ୍ତ କରିବାକୁ ଯାଇ ସେ ଲେଖିଥିଲେ—

'ଦେଶାନୁରାଗ ବିଶ୍ୱପ୍ରୀତିର ବିରୋଧୀ ନୁହେଁ' ବରଂ ବିଶ୍ୱପ୍ରୀତିବର୍ଦ୍ଧନ ପ୍ରାଣରେ ଜାତୀୟତା ଏବଂ ସ୍ୱଦେଶ-ବାତ୍ସଲ୍ୟ ଅପରିହାର୍ଯ୍ୟ । ପୂର୍ବ ପୁରୁଷମାନଙ୍କର ପଥ ଏ କ୍ଷେତ୍ରରେ ଆମ୍ଭମାନଙ୍କର ଅନୁସରଣୀୟ । 'ଆବ୍ରହ୍ମସ୍ତମ୍ବ ପର୍ଯ୍ୟନ୍ତ' ଚରାଚର ଜଗତର ତର୍ପଣ ବିଧାନ ହିନ୍ଦୁ ଆପଣା ନିତ୍ୟ କର୍ତ୍ତବ୍ୟର ଅନ୍ତର୍ଭୁକ୍ତ କରିଥିଲେହେଁ 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ', ଏହି ଦେଶାନୁରାଗ ବାଣୀରେ ପ୍ରାଣର ପ୍ରଗାଢ଼ ମମତା ପ୍ରକାଶ କରିଅଛନ୍ତି, 'ସର୍ବଦେବ ନମସ୍କାରଃ କେଶବଂ ପ୍ରତିଗଚ୍ଛତି' ଏହା ଆମ୍ଭମାନଙ୍କର ବିଶ୍ୱାସ । ତେଣୁ ଆମ୍ଭେମାନେ ଉତ୍କଳ ସେବାରେ ଭାରତସେବା ତଥା ବିଶ୍ୱସେବା କରିବୁ ଉତ୍କଳ ଜାତିର ଉନ୍ନତିରେ ମାନବ ଜାତିର ଉନ୍ନତି ଦେଖିବୁ, ଉତ୍କଳ ପ୍ରାଣରେ ବିଶ୍ୱପ୍ରାଣ ଅନୁଭବ କରିବୁ, ଉତ୍କଳୀର ହୃଦତନ୍ତ୍ରୀରେ ବିଶ୍ୱମାନବର ହୃଦସ୍ୱର ଗୀତ ଶୁଣିବୁ । ଉତ୍କଳଭୂମିକୁ ଏହି ବିଶ୍ୱଭାବରେ ଅନୁପ୍ରାଣିତକରି ଓଡ଼ିଆ-ମାନଙ୍କ ଜାତୀୟ ଜୀବନ ଗଢ଼ିବାକୁ ହେଲେ ଓଡ଼ିଆଭାଷା ମୁଖରେ ବିଶ୍ୱଭାବବାଣୀର ପ୍ରକାଶ କରିବାକୁ ହେବ । ଭିନ୍ନ ଭିନ୍ନ ଦେଶ ଓ ପ୍ରଦେଶମାନଙ୍କ ବିଭିନ୍ନ ସମୟରେ ମାନବଚିନ୍ତା ଯେ ସମସ୍ତ ସତ୍ୟ ଆବିଷ୍କାର କରିଅଛି, ମାନବ ପ୍ରତିଭା ଯେଉଁ ଶୋଭାପଟଳ ପରିସ୍ଫୁଟ କରିଅଛି, ମାନବପ୍ରଜ୍ଞା ଯେଉଁ ଆଲୋକ ପାଇଅଛି, ମାନବ-ଜୀବନ ଯେଉଁ ଉଚ୍ଚ ଆଦର୍ଶ ଦେଖାଇଅଛି, ସେ ସବୁକୁ ଓଡ଼ିଆ ସାହିତ୍ୟର ସମ୍ପଦୀଭୂତ

କରିବାକୁ ହେବ । ଏ ବିପୁଳ ଆୟୋଜନ ଲାଗି ଆମ୍ଭମାନଙ୍କର କି ଉପାଦାନ ଅଛି, ଓ ଆଦର୍ଶ ଅଛି, ଅଭାବ ଅଛି ?" ଏଥିରେ ଗୋପବନ୍ଧୁଙ୍କର କେବଳ ଉନ୍ନତ ପ୍ରାଦେଶିକତା (Enlightened Provincialism) ପ୍ରକାଶ ପାଇନାହିଁ, ଏ 'ବିଶ୍ୱଜନୀନ ମନୋଭାବର ଉଦ୍ଭବ ଉତ୍କଳୀୟ ପ୍ରୀତିରୁ ନୁହେଁ । ଗୋପବନ୍ଧୁ ପ୍ରଥମେ ଉତ୍କଳକୁ ଭଲ ପାଇପାରିନ୍ତି ବିଶ୍ୱକୁ ଭଲ ପାଇବାକୁ ସଚେଷ୍ଟ ହେଲେ, ଏ ପ୍ରଶ୍ନ ଏଠାରେ ଅବାନ୍ତର । କବିଗୁରୁ ରବୀନ୍ଦ୍ରନାଥ ଏବଂ ମହାତ୍ମାଗାନ୍ଧିଙ୍କପରି ଗୋପବନ୍ଧୁଙ୍କର ଏ ବିସ୍ତୀର୍ଣ୍ଣ ବିଶ୍ୱଭାବ ଏକ ସହଜାତ ପ୍ରବୃତ୍ତି—ଅଧ୍ୟାତ୍ମ ପ୍ରେରଣାର ଏକ ଅନିବାର୍ଯ୍ୟ ମାନସ ପ୍ରକ୍ରିୟା ଏବଂ ନିଜର ଅନ୍ତର ମଧ୍ୟରେ ନିଖିଳ ବିଶ୍ୱବାସୀଙ୍କର ସୁଖଦୁଃଖ ଅନୁଭବ କରିବାର ଏକ ଅଲୌକିକ ଶକ୍ତି, ପୁଲକ କମ୍ପା ପୁଣ୍ୟ ଉଚ୍ଛ୍ୱାସ । ତେଣୁ ଆଦ୍ୟ ଯୌବନରେ ମଧ୍ୟ ଏହି ବିଶ୍ୱବୋଧ କମ୍ପା 'ସାର୍ବଜନୀନ ପ୍ରେମ, ମୈତ୍ରୀ ଓ ଭ୍ରାତୃଭାବର ସହଜ ସରଳ ଅନୁଭୂତି ତାଙ୍କର କେତେକ କବିତାରେ ଆମ୍ଭେମାନେ ଦେଖିବାକୁ ପାଉ । ଏ ଉଦାର ବିଶ୍ୱବୋଧର ଉଦ୍‌ବୋଧନ ନିମନ୍ତେ ସେ କାହାଠାରୁ ମନ୍ତ୍ରଦୀକ୍ଷା ଗ୍ରହଣ କରି ନାହାନ୍ତି, କାହାକୁ ହାତପାତି ମାଗିନାହାନ୍ତି, ମୋତେ ବିଶ୍ୱଭାବରେ ଉଦ୍‌ବୁଦ୍ଧ କର ।' ଏ ବିଶ୍ୱବୋଧର ଉନ୍ମେଷ ଆସିଛି, ସେହି ଅଦ୍ୱିତୀୟ ବିଶ୍ୱବିଧାତାଙ୍କଠାରୁ, ପୁଣି ଏହି ବିଶ୍ୱବୋଧକୁ ହୃଦୟରେ ଅଟଳ ଓ ଅଚଳ ଭାବରେ ପ୍ରତିଷ୍ଠିତ କରି ରଖିବାକୁ ସେ କେବଳ ସେହି ପରମ କାରୁଣିକ ଭଗବାନଙ୍କଠାରେ କୃତାଞ୍ଜଳିପୂର୍ବକରେ କାତର ନିବେଦନ କରିଅଛନ୍ତି । ପ୍ରାୟ କୋଡ଼ିଏ ବର୍ଷ ବୟସରେ ଲେଖା 'କାଠଯୋଡ଼ୀରେ ସାୟଂକାଳ' କବିତାରେ ସେହି ବିଶ୍ୱବୋଧର ଅଭିବ୍ୟକ୍ତି ଆମ୍ଭେମାନେ ଏହିପରି ଭାବରେ ଦେଖିବାକୁ ପାଉ ।

> "ସର୍ବ ଅନୁଭୂତି ସର୍ବଭୂତେ ତା'ର
> ତା ଦୃଷ୍ଟିରେ ବିଶ୍ୱ 'ଏକ ପରିବାର'
> ସେହି ନିଜେ ବିଶ୍ୱ ବିଶ୍ୱମଧ୍ୟେ ସେହି
> ଅନ୍ୟ ହୋଇ ତା'ର ନାହିଁ ଆଉ କେହି ।"

ଗୋପବନ୍ଧୁଙ୍କର ଏହି ବିଶ୍ୱଭାବ ଉଦାର ମାନବିକତାରନାମାନ୍ତର ମାତ୍ର । ୧୯୧୯ ମସିହାର ଉତ୍କଳ-ସମ୍ମିଳନୀର ସଭାପତି ରୂପେ ଏହି ଉଦାର ମାନବିକତାରେ ଉତ୍କଳୀୟମାନଙ୍କୁ ଅନୁପ୍ରାଣିତ କରିବା ନିମନ୍ତେ ସେ ସଭାପତିଙ୍କ ଅଭିଭାଷଣରେ ଉଲ୍ଲେଖ କରିଥିଲେ, "ସାର୍ବଜନୀନ ମାନବସମାଜ ଭଗବାନଙ୍କର ଅଭିବ୍ୟକ୍ତି । ମାନବସେବା ହିଁ ଭଗବତ୍‌ସେବା ; ମାତ୍ର ବ୍ୟକ୍ତିବିଶେଷର ଶକ୍ତି କ୍ଷୀଣ, ବାହୁ କ୍ଷୁଦ୍ର, ଦୃଷ୍ଟି ସଙ୍କୀର୍ଣ୍ଣ, ଗତି ସୀମାବଦ୍ଧ, ସୁତରାଂ ବିଶ୍ୱଜନୀନ ସମଗ୍ର ମାନବ-ସମାଜର ସେବା ତା ପକ୍ଷରେ ଅସମ୍ଭବ । ସେ ଯେଉଁ ନିର୍ଦ୍ଦିଷ୍ଟ ଦେଶରେ ଏବଂ ନିର୍ଦ୍ଦିଷ୍ଟ ଜାତି ମଧ୍ୟରେ ବାସକରନ୍ତି ସେହି ଦେଶ ତାଙ୍କର ପୂଜାପୀଠ ଏବଂ ସେହି ଜାତିର

ସେବା ହିଁ ତାଙ୍କର ମାନବସେବା । ଏହି ଉଦାର ମାନବିକତାକୁ ଲକ୍ଷ୍ୟକରି ଜାତୀୟ ଉନ୍ନତ ପଥରେ ଅଗ୍ରସର ହେବାକୁ ହେବ । × × ×
ହୃଦୟରେ ଏହି ବିଶ୍ୱାସ ଜାଗ୍ରତ ଥିଲେ, ଏହି ଉଦାର ମାଟିରେ ଜୀବନର ଗତି ନିୟମିତ ହେଲେ, କ୍ଷୁଦ୍ର ପଲ୍ଲୀର ସୀମାବଦ୍ଧ କାର୍ଯ୍ୟକ୍ଷେତ୍ରରେ ରହି ମନୁଷ୍ୟ ସମସ୍ତ ମାନବ-କଲ୍ୟାଣରେ ଆତ୍ମନିୟୋଗ କରିପାରେ । ଏହି ବିଶ୍ୱାସ ଏହି ମହା ଲକ୍ଷ୍ୟ ବିଭିନ୍ନ ପ୍ରକୃତିର ବିଭିନ୍ନ ଜାତିର ଲୋକମାନଙ୍କୁ ଏକସୂତ୍ରରେ ଆବଦ୍ଧ କରି ସମଗ୍ର ମାନବ ସମାଜରେ ମଧୁମୟ ସମନ୍ୱୟ ସ୍ଥାପନ କରିବ । × ×
ମନେ ରଖିବାକୁ ହେବ, ଅମ୍ଭେମାନେ ପ୍ରଥମେ ମନୁଷ୍ୟ, ପରେ ଭାରତୀୟ ଏବଂ ସର୍ବଶେଷରେ ଓଡ଼ିଆ । ଏହିଭାବ ମନରେ ନ ରଖିଲେ ଜାତୀୟ ବିକାଶ ଅସମ୍ଭବ । ପ୍ରତ୍ୟେକ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଅଛି, ମାତ୍ର ସାମାଜିକ ଭିତ୍ତି ବିନା ସେ ସ୍ୱାତନ୍ତ୍ର୍ୟ ପ୍ରକଟିତ ହୁଏନାହିଁ । ସେହିପରି ଓଡ଼ିଆ ଜାତିର ସ୍ୱାତନ୍ତ୍ର୍ୟ ଫୁଟିବ ପ୍ରଶସ୍ତତର ଭାରତୀୟ ଜାତୀୟତା କ୍ଷେତ୍ରରେ ଏବଂ ଉଦାର ସାର୍ବଜନୀନ ମାନବିକତାରେ । × × ବିଶ୍ୱପ୍ରୀତି ହିଁ ଓଡ଼ିଆର ଜାତୀୟତା, ପୂର୍ଣ୍ଣପ୍ରାଣ ଓଡ଼ିଆର ମନୁଷ୍ୟତା, ଓଡ଼ିଆର ଏ ଜାତୀୟତା ଦେଶାନୁରାଗ, କେବେ ଜଡ଼, ନିର୍ଜୀବ, ନୀରସ ଓ ସ୍ୱାର୍ଥ ନୁହେଁ, ରାଜ୍ୟଲାଭ ବା ରକ୍ତପାତରେ ଏହାର ପ୍ରତିଷ୍ଠା ନୁହେଁ, ଗଭୀର ଧର୍ମଭାବ ଏବଂ ଦୃଢ଼ ବିଶ୍ୱାସ ଏହାର ଭିତ୍ତି, ସାମ୍ୟ, ମୈତ୍ରୀ ସ୍ୱାଧୀନତା ଏହାର ବିଗ୍ରହ । ଓଡ଼ିଆର ଏହି ଭାବ ନୀଳାଚଳ ଧାମରେ ପ୍ରକଟିତ । ତେଣୁ ଜଗନ୍ନାଥ ଓଡ଼ିଆର ଜାତୀୟ ଦେବତା । ବଦ୍ରିନାଥ, ରାମନାଥ, ଦ୍ୱାରକାନାଥ ସ୍ଥାନ ବିଶେଷର ନାଥ ମାତ୍ର, ଜଗତର ନାଥ ନୁହନ୍ତି । ପ୍ରାଚୀନ କାଶୀ ଧାମରେ ବିଶ୍ୱନାଥ ଅଛନ୍ତି ; କିନ୍ତୁ ସମସ୍ତ ବିଶ୍ୱକୁ ଆଲିଙ୍ଗନ କରିବାର ଉଦାରତା ସେଠାରେ ନାହିଁ ।"

ଗୋପବନ୍ଧୁଙ୍କ କାବ୍ୟକଳାରେ ବିଶ୍ୱକୁ ଆଲିଙ୍ଗନ କରିବାର ଏହି ବିଶାଳ ପ୍ରୟାସ ସର୍ବତ୍ର ପ୍ରତିଫଳିତ । ଜାତୀୟତାର ଅନ୍ଧମାନରେ ତାଙ୍କର ହୃଦୟ ସଙ୍କୀର୍ଣ୍ଣ ନ ଥିଲା । ଜାତୀୟତା ଓ ବିଶ୍ୱ ପ୍ରୀତିର ମଧୁମୟ ସମନ୍ୱୟରେ ସେ ପ୍ରାଣ ମହୀୟାନ୍ ଥିଲା । ଏହି ଉଦାର ମାନବିକତାର ଅନ୍ତଃପ୍ରେରଣା ଯୋଗେ ସେ ନିଜକୁ ବିଶ୍ୱବ୍ୟାପ୍ତ କରିପାରିଥିଲେ । ଉତ୍କଳର ସେବା ହିଁ ତାଙ୍କର ବିଶ୍ୱସେବା । ଏହି ମହାମାନବିକତାର ସୌସାଦୃଶ୍ୟ ଆମ୍ଭେମାନେ ଟଲଷ୍ଟୟ ଓ ମହାତ୍ମାଗାନ୍ଧିଙ୍କ ଜୀବନରେ ଦେଖିବାକୁ ପାଉ । ସେ ସାମଞ୍ଜସ୍ୟଟି ଏହି ଟଲଷ୍ଟୟ ଓ ଗାନ୍ଧିଙ୍କ ମତରେ ବାସ୍ତବ ଓ ଅକୃତ୍ରିମ ଭଗବତ୍-ଚେତନା ମନୁଷ୍ୟକୁ ସର୍ବଦା ମନୁଷ୍ୟ ସହିତ ଐକ୍ୟବଦ୍ଧ କରେ । ଯେଉଁଠାରେ ସଙ୍କୀର୍ଣ୍ଣ ଓ ଅନୁଦାର ଭେଦଭାବ, ସେହିଠାରେ ବୁଝିବାକୁ ହେବ ଭଗବତ୍-ଚୈତନ୍ୟର ଅଭାବ । ଭଗବତ୍ ଚେତନା ମନୁଷ୍ୟକୁ

କେବଳ ମନୁଷ୍ୟ ସହିତ ଐକ୍ୟ ବନ୍ଧନରେ-ମୁକ୍ତ କରେନାହିଁ, ମନୁଷ୍ୟଙ୍କୁ ଦନ୍ତ ନମ୍ର୍ କୃ ଓ ଅବନତ ଚିତ୍ତକରେ । ଏହି ଅବନତଚିତ୍ତତା ମନୁଷ୍ୟଙ୍କୁ ସେବା ଧର୍ମରେ ସ୍ୱାଭାବିକ ଭାବରେ ଅନୁପ୍ରାଣିତ କରେ । ବିଶ୍ୱ-ମନୁଷ୍ୟର ସମାଜ ସହିତ ବ୍ୟକ୍ତିର ଏହି ଯେଉଁ ଐକ୍ୟ ଓ ଅଦ୍ୱୟବୋଧ ସେ ସମ୍ବନ୍ଧରେ ଜଣେ ମନୀଷୀ ଲେଖିଅଛନ୍ତି, "ଟଲଷ୍ଟୟ ଓ ମହାତ୍ମାଗାନ୍ଧି ମନେ କରନ୍ତି, ବୃହତ୍ ମନୁଷ୍ୟ ଜାତି ସହିତ ବ୍ୟକ୍ତିର ଯେ ଅଦ୍ୱୟ ଯୋଗ ତାହାର ସ୍ଫୁରଣ ହୁଏ ଭଗବତ୍-ଚେତନାର ମାଧ୍ୟମରେ । ଏକ ସତ୍ୟ ଓ ପ୍ରେମ ସ୍ୱରୂପ ଭଗବାନଙ୍କ ସହିତ ସକଳ ମନୁଷ୍ୟ ଅଚ୍ଛେଦ୍ୟଭାବରେ ବାନ୍ଧିଛି, ସେହି ଏକ ଯୋଗ ହିଁ ସକଳ ସହିତ ଯୋଗ, ସେହି ଏକର ପ୍ରେମରେ ହିଁ ସକଳ ସହିତ ପ୍ରେମ, ପୁଣି ସେହି ଏକରୁ ବିଚ୍ୟୁତ ହେଲେ ସକଳରୁ ବିଚ୍ୟୁତ, ସକଳରୁ ବିଚ୍ୟୁତ ଶବ୍ଦର ଅର୍ଥ ହେଲା ଅପ୍ରେମ, ଅପ୍ରେମର ଅନୁଚର ହେଲା ଲୋଭ, ଶୋଷଣ ଓ ହିଂସା ।"

ତେଣୁ ଗୋପବନ୍ଧୁଙ୍କ ଦୃଷ୍ଟିରେ ଜାତୀୟ ମମତା ଓ ବିଶ୍ୱଜନ ପ୍ରୀତି ମଧ୍ୟରେ କୌଣସି ବ୍ୟବଧାନ ନ ଥିଲା । ତାଙ୍କର ଜାତୀୟ ମମତାର ବିକାଶ ଏହି ବିଶ୍ୱଜନ ପ୍ରୀତିରୁ । ତେଣୁ ଭଗବାନଙ୍କ ପାଦପଦ୍ମରେ ତାଙ୍କର ଭିକ୍ଷା—

'ଜାତୀୟ ମମତା ବିଶ୍ୱଜନ ପ୍ରୀତି
ଉତ୍କଳବାସୀର ହେଉ ଏହା ନୀତି ।'

ସେହି ମହିମାମୟ ବିଶ୍ୱବୋଧର ଭକ୍ତି-ତରଙ୍ଗାୟିତ ଉଚ୍ଛ୍ୱାସ ଶୁଣିବାକୁ ମିଳେ ବନ୍ଧୁର କଲ୍ୟାଣ ସାଧନ ନିମନ୍ତେ ସମର୍ପିତଚିତ୍ତ ଧର୍ମପଦର ଆକୁଳ ନିବେଦନରେ ।

'ଅନନ୍ତ ମହିମା ଅତୁଳ ସୁଷମା
ଦିଶେ ବିଶ୍ୱେ ସ୍ତରେ ସ୍ତରେ
ତବ ମହାପ୍ରେମ ଖେଳେ ଚରାଚରେ
ଜୟ ଜଗଦୀଶ ହରେ ।

ସେହି 'ମହାପ୍ରେମ'ର ପ୍ରତିଧ୍ୱନିରେ ମୁଖରିତ ହୋଇଉଠିଛି କାରା-କବିତାର ଅଧିକାଂଶ କବିତା । ବିଷାଦ ଗୀତିକା ମଧ୍ୟରେ ବି ସେହି ମହାପ୍ରେମମୟ ବିଶ୍ୱବୋଧର ତତ୍ତ୍ୱ-ଦାର୍ଶନୀ ଓ ଆତ୍ମ-ପ୍ରସାର-ବିଧାୟିନୀ ବାଣୀମୂର୍ତ୍ତି ଦେଖିବାକୁ ମିଳେ । 'ବନ୍ଦୀ'ର ଆତ୍ମ ଭକ୍ତି' କବିତାରେ 'ସତ୍ୟ ସ୍ୱାଧୀନତା ପ୍ରତି ଶାସନ ବିଘାତ'ର ଦୃଷ୍ଟାନ୍ତ ଦେବାକୁ ଯାଇ ସେ 'ସତ୍ୟସନ୍ଧ' ସକ୍ରେଟିସ୍‌ଙ୍କ ବିଷପାନର ଯେଉଁ କରୁଣ ଚିତ୍ର ଅଙ୍କନ କରିଅଛନ୍ତି, ତାହା ହିଁ ତାଙ୍କ ବିଶ୍ୱବୋଧ ଏବଂ ବୃହତ୍ତର ସମ୍ବେଦନଶୀଳତା'ର ଅଭ୍ରାନ୍ତ ପ୍ରମାଣ । ଶାସକଗୋଷ୍ଠୀର ନିର୍ମମ ଅତ୍ୟାଚାରରେ ମାନବ-ସଭ୍ୟତା

ବିଭିନ୍ନ ଯୁଗରେ ଯେଉଁର କଳଙ୍କକାଳିମାଲିପ୍ତ ହୋଇଅଛି, ସେଥିରେ କବି-ହୃଦୟର କି ମର୍ମଭେଦୀ ଦୁଃଖ !

'କ୍ରୂର କଦର୍ଥନେ କେତେ ହୃଦ ଖଣ୍ଡ ଖଣ୍ଡ
କେତେ ଦେବଦୂତେ ବୃଥା ଅମାନୁଷ ଦଣ୍ଡ
ମାନବ ସଭ୍ୟତା ମୁଖେ କଳଙ୍କ କାଳିମା—
ଦେଖିଛି ସବୁତା, ତା'ର ନାହିଁ ପରିସୀମା—'

ଏ ବିଶ୍ୱମୟୀ ଅତୀତ ପ୍ରୀତି କେବଳ ବିଶ୍ୱ ଦରଦୀ କବିମାନଙ୍କ ପକ୍ଷରେ ହିଁ ସମ୍ଭବ ।

ଗୋପବନ୍ଧୁଙ୍କ ରାଜନୈତିକ ଦର୍ଶନ କିମ୍ବା ଚିନ୍ତାଧାରାରୁ ମଧ୍ୟ ଏ ବିଶ୍ୱବୋଧର ବିଚ୍ୟୁତି ଘଟିନାହିଁ । ପରାଧୀନ ଭାରତରେ ଇଂରେଜ ଶାସକ ହାତରେ ନିରୀହ ପ୍ରଜା ସାଧାରଣଙ୍କର ନିର୍ଯ୍ୟାତନା ଓ ରକ୍ତ-ଶୋଷଣରେ ସେ ମର୍ମାହତ ହୋଇ ଲେଖି ଅଛନ୍ତି—

'ପ୍ରଜାଲାଗି ରାଜା, ପ୍ରଜାହିତେ ରାଜନୀତି
ପ୍ରଜା ଇଚ୍ଛା ଅଭିମତ ରାଜ୍ୟ ମୂଳଭିତ୍ତି
ସାର୍ବଭୌମ ସନାତନ ଏ ଶାସନ ବିଧି
ଲଭିଛି ସର୍ବତ୍ର ଆଜି ବିଶେଷ ପ୍ରସିଦ୍ଧି,
ଭାରତ ଶାସନେ କିନ୍ତୁ ବ୍ୟବସ୍ଥା ସ୍ୱତନ୍ତ୍ର
ଏ ରାଜ୍ୟେ ଅମାତ୍ୟସଂସ୍ଥା ରାଜନୀତି ଯନ୍ତ୍ର ।'

ପ୍ରଜାନୁମୋଦିତ ଶାସନ ହିଁ ସର୍ବଶ୍ରେଷ୍ଠ ଗଣତାନ୍ତ୍ରିକ ଶାସନ । ଶାସନବିଧିର ଏହା ହିଁ ହେଉଛି ସାର୍ବଭୌମ ଏବଂ ସନାତନ ବିଧି । ଏ ବିଧିର ବ୍ୟତିକ୍ରମ ଦେଖି ତାଙ୍କର ଆତ୍ମା ବିଦ୍ରୋହୀହୋଇ ଉଠିଛି ଏବଂ କେବଳ ଭାରତ ନୁହେଁ, ନିଖିଳ ବିଶ୍ୱବାସୀର ଜନ୍ମଗତ ଅଧିକାର ଏବଂ ମାନବର ସମାଜ ସଂସ୍ଥିତିର ଏକ ସ୍ପଷ୍ଟ ଧାରଣା ଆମ୍ଭମାନଙ୍କୁ ଦେବାକୁ ଯାଇ ସେ ଲେଖିଅଛନ୍ତି:—

'ସ୍ୱାଧୀନତା ମାନବର ଜନ୍ମ ଅଧିକାର,
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିହାର,
ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି
ଦୃଢସୂତ୍ରେ ମାନବର ସମାଜ ସଂସ୍ଥିତି ।'

ସ୍ୱାଧୀନତାର ଏହି ଉଦାତ୍ତ ଉଚ୍ଚାରିତ ମନ୍ତ୍ର କେବଳ ପରାଧୀନ ଭାରତ ପ୍ରତି ପ୍ରଯୁଜ୍ୟ ନୁହେଁ, ଏହାହିଁ ସ୍ୱାଧୀନତାର ମୃତ୍ୟୁଞ୍ଜୟ ଅକ୍ଷୟ ସ୍ୱରୂପ । 'ପିତୃପକ୍ଷ' ତର୍ପଣ କବିତାରେ ସେ କେବଳ ନିଜର ପିତୃପୁରୁଷମାନଙ୍କୁ ଜଳ-ତର୍ପଣ ଅର୍ପଣ କରି-ନାହାନ୍ତି, ସେହି ତର୍ପଣ ଗ୍ରହଣ କରିବାକୁ ସେ ନିଖିଳ ବିଶ୍ୱବାସୀଙ୍କୁ ଆବାହନ କରି କହି ଅଛନ୍ତି:—

'ବିଶ୍ୱବାସୀ ଚରାଚରେ କରି ଆମନ୍ତ୍ରଣ
ମୁଁ ଯେ ଏଥି କରେ ଜଳ-ଅଞ୍ଜଳି ଅର୍ପଣ
ସେ ସାରା ବିଶ୍ୱରେ ମୋର ଅଛି କାହିଁ ସ୍ଥାନ ?
ସର୍ବଜ ମୋ ଭାଗ୍ୟେ ଘୋର ପୀଡ଼ା ଅପମାନ ।'

ମହାମାନବତାର ଏ 'ବିଶ୍ୱକମଳ' ଗୋପବନ୍ଧୁଙ୍କ 'ହୃଦୟ-ସରରେ, ଯେପରି ସଦା ପ୍ରସ୍ଫୁଟିତ ହୋଇ ରହିଥିଲା ଏବଂ ତାଙ୍କର କର୍ମସାଧନା ଯେପରି ସର୍ବତୋ-ମୁଖୀ, ସର୍ବବ୍ୟାପକ, ତାଙ୍କର ଚିନ୍ତା, ଧ୍ୟାନ ଓ କଳ୍ପନା ସେହିପରି ବିଶ୍ୱମୁଖୀ । ସେ ନିଜକୁ ବିଶ୍ୱମଧ୍ୟରେ ଅବସ୍ଥାପିତ କରି ନିଜର ସାର୍ଥକତା କଳନା କରୁଥିଲେ । ଏହି ବିଶ୍ୱଦୃଷ୍ଟିହିଁ ତାଙ୍କର ଜୀବନ ତଥା ସାହିତ୍ୟର ବିଶେଷତ୍ୱ । ସେ ସତ୍ୟବାଦୀ ବନ-ବିଦ୍ୟାଳୟରେ ଦୈନନ୍ଦିନ ଉପାସନାର ବ୍ୟବସ୍ଥା କରିଥିଲେ । ଛାତ୍ରମାନେ ନିୟମିତଭାବରେ ସକାଳେ ଓ ସନ୍ଧ୍ୟାରେ ଶିକ୍ଷକମାନଙ୍କ ତତ୍ତ୍ୱାବଧାନରେ ଭଗବତ୍-ସ୍ତୁତି କରୁଥିଲେ । ଏଥିପାଇଁ ଗୋଟିଏ ସ୍ୱତନ୍ତ୍ର ଉପାସନା ପୁସ୍ତିକା ସତ୍ୟବାଦୀ ବିଦ୍ୟାଳୟରୁ ପ୍ରକାଶିତ ହୋଇଥିଲା । ବେଳେବେଳେ ଭଗବଦ୍‌ଗୀତାର ମଧ୍ୟ ପାରାୟଣ ହେଉଥିଲା । ଏହି ଭଗବଦ୍-ଗୀତାର ବିଶ୍ୱରୂପ-ଦର୍ଶନ ଅଧ୍ୟାୟଟି ଗୋପବନ୍ଧୁଙ୍କର ଅତି ପ୍ରିୟ । ଏହି ଅଧ୍ୟାୟଟି ସେ ଓଡ଼ିଆରେ ଅନୁବାଦ କରାଇ ଛାତ୍ର-ମାନଙ୍କଦ୍ୱାରା ତାହା අଭିନୀତ କରାଉଥିଲେ । ଶ୍ରୀକୃଷ୍ଣ ଓ ଭଗବାନଙ୍କ ଉକ୍ତି ପ୍ରତ୍ୟୁକ୍ତି ଶୁଣି ସେ ମହାଭାବରେ ବିହ୍ୱଳ ହୋଇଯାଉଥିଲେ । ଚକ୍ଷୁ ଅଶ୍ରୁପ୍ଳାବିତ ହୋଇ ଉଠୁଥିଲା । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, ବିଶ୍ୱଭାବର ବୀଜ ସତେ ଯେପରି ବିଧାତାଙ୍କ-ଦ୍ୱାରା ସେହି ବିଶାଳ ହୃଦୟରେ ଉପ୍ତ ହୋଇ ରହିଥିଲା ।

ସତ୍ୟବାଦୀ ବିଦ୍ୟାଳୟକୁ କେନ୍ଦ୍ରକରି ସେ ଯେଉଁ ଉତ୍କଳବ୍ୟାପୀ ଶିକ୍ଷା-ପ୍ରସାରର ପରିକଳ୍ପନା କରିଥିଲେ, ତାହାର ନାମ 'Universal education League', ବା ବିଶ୍ୱଜନୀନ ଶିକ୍ଷାସଂଘ । ସମଗ୍ର ଉତ୍କଳରେ ଆଦର୍ଶ ଶିକ୍ଷାନୁଷ୍ଠାନମାନ ସ୍ଥାପନକରିବା ଥିଲା, ଏହାର ଲକ୍ଷ୍ୟ । ବିଚ୍ଛିନ୍ନତା ବିରୁଦ୍ଧରେ ସେ ସର୍ବଦା ସଂଗ୍ରାମତତ୍ପର ଥିଲେ । ବିଚ୍ଛିନ୍ନାଞ୍ଚଳମାନଙ୍କରେ ଓଡ଼ିଆ ଭାଷାର ପ୍ରସାର ଓ

ପ୍ରତିଷ୍ଠା ଏବଂ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରକରି ଗୋଟିଏ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କରିବା ପ୍ରଯତ୍ନମୂଳରେ ଗୋପବନ୍ଧୁଙ୍କର ଥିଲା ସେହି ଆତ୍ମ-ପ୍ରସାର ଏବଂ ବିଶ୍ୱବୋଧ । ସେ ବାରମ୍ବାର ଆମକୁ ଆତ୍ମ-ବିସ୍ମୃତିର ଏହି ଜାଗରଣୀ ବାଣୀ ଶୁଣାଇ ଯାଇଅଛନ୍ତି, "ବାସ୍ତବିକ ଉତ୍କଳଭୂମି ସଂକୀର୍ଣ୍ଣ ଭୂମି ନୁହେଁ । ଓଡ଼ିଆ କେବେ କ୍ଷୁଦ୍ରତାରେ ସୀମାବଦ୍ଧ ନୁହେଁ । କୋଣାର୍କର ବିଶାଳତା ଏହାର ପରିଚୟ । ମନୁଷ୍ୟ ହାତଗଢ଼ା ଏ ଶିଳ୍ପଚିତ୍ର ଓଡ଼ିଶାର ପାରିପାର୍ଶ୍ୱିକ ବେଷ୍ଟନୀ ଓଡ଼ିଆର ସେହି ବିଶାଳ ଭାବ ଓ ଉଦାରତାର ପ୍ରମାଣ । ଯେଉଁ ଦେଶର ଦେବତା ଜଗନ୍ନାଥ, ସେ ଦେଶର ନଦୀ, ଗିରି, ସାଗର ଶ୍ମଶାନରେ ଯେ ସେହି ମହା ଉଦାରଭାବ ପ୍ରକାଶ ପାଇବ ତାହା ସ୍ୱାଭାବିକ ।"

'କାରା-କବିତା'ର 'ନିତ୍ୟଧାମ ନୀଳାଚଳ' କବିତାଟି ଗୋପବନ୍ଧୁଙ୍କର ଏହି ବିଶାଳ ବିଶ୍ୱବୋଧର ଏକ ଜାଜ୍ଜ୍ୱଲ୍ୟମାନ ନିଦର୍ଶନ । ଏ ନିତ୍ୟଧାମରେ ବାସ କରିବାର କାହାର ଅଧିକାର ଅଛି ? ତା'ର କେବଳ ଅଧିକାର :—

'ଦେହି, ନାହିଁ ଯା'ର ନିଜ-ପରଜ୍ଞାନ,
ପାଏ ନୀଚ ଯାର ସ୍ନେହ ସନମାନ ।
ବିଶ୍ୱହିତେ ଯାର ଆହାର ବିହାର,
କରେ ବିଶ୍ୱହିତେ ଯେ ଜୀବନ ଦାନ' ।

ଗୋପବନ୍ଧୁଙ୍କ 'ବିଶ୍ୱବୋଧ' କେବଳ ଇହଲୋକ ମଧ୍ୟରେ ଆବଦ୍ଧ ନୁହଁ । ଜଗତକୁ ଅତିକ୍ରମ କରି ଏହା ବେଳେ ବେଳେ ଅତୀନ୍ଦ୍ରିୟ ରାଜ୍ୟକୁ ସ୍ପର୍ଶକରିଛି । ମନୁଷ୍ୟ ଜୀବନର ପରିସମାପ୍ତି ନାହିଁ । ଇହଜଗତର ପ୍ରତିଶ୍ରୟରେ ନୈରାଶ୍ୟ ନାହିଁ । ମନୁଷ୍ୟ ଜୀବନ ଏତିକିରେ ଶେଷ ନୁହଁ । ନିତ୍ୟ-ପ୍ରବହମାନ ମନୁଷ୍ୟର ଏ ଜୀବନ ସ୍ରୋତ । ଇହଲୋକ ପରେ ପରଲୋକ ବିଦ୍ୟମାନ । ମର୍ତ୍ତ୍ୟକୁ ସତେ ଯେପରି ଲାଗି ରହିଛି ସେହି ଚିରକାଙ୍କ୍ଷିତ ପରମ ଦିବ୍ୟଧାମ । ଇହ ଜୀବନରେ ଯେ ନୈରାଶ୍ୟ-ଜର୍ଜର ଦୁଃଖଶୋକରେ କ୍ଷତବିକ୍ଷତ, ସେ ଏହି ଅତୀନ୍ଦ୍ରିୟ ରାଜ୍ୟରେ ଦେଖିବ ଆଶାର ସଞ୍ଚାର, ପୁଲକର ଉନ୍ମାଦନା ଏବଂ ଜୀବନର ସାର୍ଥକତା । ତେଣୁ ଆଜୀବନ ସହକର୍ମୀ ବନ୍ଧୁଙ୍କର ଈର୍ଷାନଳ ଓ କୁତ୍ସାରଟନା ତାଙ୍କ ପ୍ରାଣକୁ କଷାହତ କରିପାରିନାହିଁ । କବି ନିଜକୁ ସାନ୍ତ୍ୱନା ଦେଇ ଲେଖିଛନ୍ତି—

'ଏ ଜୀବନେ ପ୍ରେମ ନୁହେ ଅବସାନ
ଅନ୍ୟ ସ୍ଥାନେ ପୁଣି ହେବ ତ ଦେଖା
ଶୁଦ୍ଧମନେ ତୁହି ଦେଖିବ ମୋ ହୃଦେ
ପ୍ରେମ-ରସାଙ୍କିତ ଅମୃତ ଲେଖା ।'

କମ୍ପା
'ବେନନ୍ଦିଳୀ ବାରେ ଯେବେ ଭେଟି ପରଷ୍ପରେ
ଅନନ୍ତ ଭ୍ରମଣ-ପଥେ କରନ୍ତି ଗମନ,
କେ ଜାଣେ ନ ହେବ ବୋଲି ଭେଟ ଆଉ ଥରେ
ତୁଟେ ନାହିଁ କମ୍ପା ସ୍ମୃତି ମମତା ବନ୍ଧନ ।'

ପ୍ରେମର ଏହି ଅନନ୍ତ ବିସ୍ତାରର ପରିକଳ୍ପନା ଓ ମୁକ୍ତ ବିଶ୍ୱାସରେ ଗୋପବନ୍ଧୁଙ୍କର ବ୍ୟାପକ ବିଶ୍ୱଜନ ମନୋଭାବ ଯେପରି ପ୍ରକଟିତ, ତାଙ୍କର ଧର୍ମ-ବୋଧରେ ମଧ୍ୟ ସେହିପରି କ୍ଷୁଦ୍ର ସାମ୍ପ୍ରଦାୟିକତା ବିବର୍ଜିତ ସାର୍ବଜନୀନ ଉଦାରତା ଅଭିବ୍ୟକ୍ତ । ଜାତି-ଧର୍ମନିର୍ବିଶେଷରେ ଲୋକହିତସାଧନ ହିଁ ତାଙ୍କ ଜୀବନର ମୂଳୀଭୂତ ଧର୍ମବୋଧ । ତାଙ୍କର 'ଗୋ-ମାହାତ୍ମ୍ୟ' କେବଳ ଓଡ଼ିଶାର କୃଷକସମ୍ପ୍ରଦାୟ କିମ୍ବା ଜନସାଧାରଣଙ୍କ ନିମନ୍ତେ ରଚିତ ହୋଇନାହିଁ, ଗୋଜାତିର ଉନ୍ନତିରେ କେବଳ ଯେ ଉତ୍କଳର ଉନ୍ନତି, ଏହି ଚିନ୍ତାରେ ତାଙ୍କର ରଚନା କ୍ଷୁଦ୍ରୀକୃତ ହୋଇନାହିଁ, ଗୋ-ସେବା-ବ୍ରତକୁ ଗୋପବନ୍ଧୁ ସମଗ୍ର ଜଗତର ହିତଦୃଷ୍ଟିରୁ ବିଚାର କରିଅଛନ୍ତି । ତେଣୁ ''ଗୋ-ମାହାତ୍ମ୍ୟ'ର ରଚୟିତା ଗୋପଦାସ ଗୋ-ସେବା ବ୍ରତରେ ଆତ୍ମ-ନିୟୋଗ କରିବାକୁ ବାରମ୍ବାର ନିଖିଳ ବିଶ୍ୱବାସୀଙ୍କୁ ଉଦ୍‌ବୋଧନ ଦେଇ ଲେଖି-ଅଛନ୍ତି :—

୧ । 'ଗୋସେବା-ବ୍ରତ ପୁଣ୍ୟରାଶି । ତୁମ୍ଭ ମରଣୁ ବିଶ୍ୱବାସୀ ।
ଶିଖି ଲଭନ୍ତୁ ସ୍ୱର୍ଗେ ବାସ । ଗୀତେ ଭଣିଲା ଗୋପଦାସ ।
୨ । ଶୁଣନ୍ତୁ ବିଶ୍ୱବାସୀ ଜନ । କରନ୍ତୁ ସଦା ଗୋପାଳନ ।
ଦିଅନ୍ତୁ ସାଦରେ ଗୋଦାନ । ଗୋପର ଏହି ନିବେଦନ ।
୩ । 'ଗୋ'ହିତେ ଜଗତ କଲ୍ୟାଣ । ଗୋଜାତି ମାନବର ପ୍ରାଣ ।
ବୁଝ ହେ ଏହା ସର୍ବଜନ । କରଇ ଗୋପ ନିବେଦନ ।'

ସ୍ୱରାଜ୍ୟ-ସାଧନକଳ୍ପେ ସେ ଅସହଯୋଗ ଆନ୍ଦୋଳନରେ ଜୀବନକୁ ଆହୁତି ଦେଇଥିଲେ କେବଳ ଭାରତର କଲ୍ୟାଣ ପାଇଁ ନୁହେଁ ସମଗ୍ର ଜଗତର କଲ୍ୟାଣ ନିମନ୍ତେ ।

'ସ୍ୱରାଜ୍ୟ-ସାଧନେ ରହୁ ମୋର ଧ୍ୟାନ
ଭାରତେ ସ୍ୱରାଜ୍ୟ ଜଗତ-କଲ୍ୟାଣ ।'

ଗୋପବନ୍ଧୁଙ୍କର ବିଶ୍ୱତୋମୁଖୀମାନସ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଭ୍ୟତାରେ ପାର୍ଥକ୍ୟ ଦେଖୁ ନ ଥିଲା । ମାନବ-ସଭ୍ୟତାରେ ଭୌତିକ ଓ ପାରମାର୍ଥିକ ବିଭେଦ

ଦେଖି ନ ଥିଲେ । ତାଙ୍କ ଦୃଷ୍ଟିରେ ମାନବସଭ୍ୟତା ଏକ । ତେଣୁ ପ୍ରଥମ ଇଉରୋପ ମହାସମରକୁ ଲକ୍ଷ୍ୟକରି ସେ ଥରେ 'ସତ୍ୟବାଦୀ'ରେ 'ସଂଗ୍ରାମ ଓ ସଭ୍ୟତା' ଶୀର୍ଷକ ସମନ୍ୱିତ ମୂଳ ଆଲୋଚନାରେ ଲେଖିଥିଲେ, 'ଏକଯୁଗରେ ପ୍ରେମଭକ୍ତିର ସ୍ରୋତ ମାନବସମାଜରେ ଉଚ୍ଛୁଳି ଉଠେ—ପାଷାଣ ହୃଦୟ ବିଚଳିତ ହୋଇଯାଏ । ଅନ୍ୟ ଯୁଗରେ ଉତ୍କଟ ଦ୍ୱେଷ-ହିଂସା-ପ୍ରବୃତ୍ତିରେ ଅପରିମିତ ଅନିଷ୍ଟ ଘଟେ ; ମାତ୍ର ପରିଣାମରେ ଏହି ଉତ୍କଟ ପୈଶାଚିକ ଭାବର ଶକ୍ତି ସରିଗଲେ ଶାନ୍ତି ଆସେ । ଏପରି କେତେ ଭାବରେ କେତେବେଳେ ବିଧାତାଙ୍କର ମଙ୍ଗଳମୟୀ ଇଚ୍ଛା ପୂର୍ଣ୍ଣହେଉଅଛି ତାହା ମନୁଷ୍ୟ ବୁଦ୍ଧିର ଅଗମ୍ୟ । ଯୁଦ୍ଧର ଉତ୍କଟ ନୃଶଂସତା, ବିଶ୍ୱାସଘାତକତା, ନରହତ୍ୟା ମଧ୍ୟରେ ତାଙ୍କର ଇଚ୍ଛା ପୂର୍ଣ୍ଣହେଉଅଛି । ମାନବସମାଜର ଏହି ମଧୁମୟ ପରିଣତିରେ ଅଟଳ ପ୍ରତ୍ୟୟ ରଖି ବିଶ୍ୱାସୀ ପ୍ରାଣ ଗାଇଅଛି—

"ମଧୁବାତା ଋତାୟତେ ମଧୁ କ୍ଷରନ୍ତି ସିନ୍ଧବଃ
ମାଧ୍ୱୀର୍ନଃ ସନ୍ତ୍ୱୋଷଧୀଃ ।"

ଏହି ଋଷିବାଣୀର ସାର୍ଥକତା ନିମନ୍ତେ ସେ ଭଗବାନଙ୍କଠାରେ ଆକୁଳ ପ୍ରାର୍ଥନା କରି ଲେଖିଅଛନ୍ତି :—

'ଭାରତ ପ୍ରଭାବେ ହେଉ ସାର୍ଥ ଋଷିବାଣୀ,
ମଧୁମୟ ଭାବେ ମତ୍ତ ହେଉ ବିଶ୍ୱପ୍ରାଣୀ ।
ସର୍ବସିନ୍ଧୁସ୍ରୋତେ ଝରୁ ମଧୁମୟ ନୀର,
ବହୁ ମଧୁମୟ ଗନ୍ଧ ଶୀତଳ ସମୀର ।
ମଧୁମୟ ରସେ ପୁଷ୍ଟ ହେଉ ବନସ୍ପତି,
ମଧୁମୟ ରଙ୍ଗେ ଶୋଭୁ ସର୍ବ ବସୁମତୀ ।
ହେଉ ମଧୁମୟ ଉଷା ପ୍ରଦୋଷ ରଜନୀ,
ନଭେ ଦିଶେ ମଧୁମୟ ରବି ଦିନମଣି ।
ମଧୁମୟ ଋତେ ହେଉ ବିଶ୍ୱ ନିନାଦିତ,
ଉଠୁ ବିଶ୍ୱପ୍ରାଣେ ମଧୁ ଅମୃତ-ସଙ୍ଗୀତ ।'

ଯେଉଁ ମହାନ୍ ପ୍ରାଣ ଉତ୍କଳର ସେବା ପାଇଁ ଉତ୍ସର୍ଗୀକୃତ ହୋଇଥିଲା, ଏବଂ ଯେଉଁ ବିଶାଳ ହୃଦୟ ଭାରତର ପରାଧୀନତାରେ ଆତ୍ମଗ୍ଲାନିରେ ଜର୍ଜରିତ ହେଉଥିଲା, ସେହି ଶୁଦ୍ଧପୂତ ବଳିଷ୍ଠ ବିସ୍ତୀର୍ଣ୍ଣ ପ୍ରାଣ ବିଶ୍ୱଶାନ୍ତି ଓ ମଙ୍ଗଳ କାମନାରେ କିପରି ଉଦ୍‌ବେଳ ହେଉଥିଲା, ତାହାର ସମୁଜ୍ଜ୍ୱଳ ସ୍ୱାକ୍ଷର ଆମ୍ଭେମାନେ ଏଠାରେ ଦେଖିବାକୁ ପାଉ ।

---

# ଏକାଦଶ ପରିଚ୍ଛେଦ

## ପଲ୍ଲୀପ୍ରାଣତା

ଗୋପବନ୍ଧୁ ପଲ୍ଲୀର ବନ୍ଧୁ । ପଲ୍ଲୀପ୍ରାଣତା ହିଁ ତାଙ୍କ ଜୀବନର ସର୍ବଶ୍ରେଷ୍ଠ ବିଭୂତି । ପଲ୍ଲୀସେବାରେ ସେ ନିଜକୁ ଉତ୍ସର୍ଗ କରିଥିଲେ । ଏହି ଦୀନଦରିଦ୍ର ପଲ୍ଲୀ-ବାସୀମାନେ ହିଁ ତାଙ୍କର ନର-ନାରାୟଣ, ତାଙ୍କ ଦୃଷ୍ଟିରେ ସାକ୍ଷାତ୍ ଭଗବାନ୍ । ଧର୍ମଭାବର ପୀଠସ୍ଥଳୀ ପଲ୍ଲୀର ଭାଗବତ ଘରଗୁଡ଼ିକ ପାଶ୍ଚାତ୍ୟ ସଭ୍ୟତାର ସଂସ୍ପର୍ଶରେ କ୍ରମେ କ୍ରମେ ବିଲୁପ୍ତ ହୋଇଯାଉଥିବାର ଦେଖି ତାଙ୍କର ପ୍ରାଣ ବ୍ୟଥିତ ହେଉଥିଲା । ଯାନ୍ତ୍ରିକ ସଭ୍ୟତାର ପ୍ରଭାବରେ ଗ୍ରାମଗୁଡ଼ା ଯେ କ୍ରମେ କ୍ରମେ ଜନଶୂନ୍ୟ ହେବାକୁ ଯାଉଛି ଦେଖି ସେ ବଡ଼ ବିକଳ ହେଉଥିଲେ । ଯେଉଁ ଗ୍ରାମବାସୀମାନେ କଳ-କାରଖାନାରେ ଶ୍ରମିକ ହେବାକୁ ନ ଯାଇ ବାଧହୋଇ ଗ୍ରାମମାନଙ୍କରେ ଅଛନ୍ତି, ସେମାନଙ୍କର ରୁଚି, ଚରିତ୍ର, ଆଚାର ଓ କ୍ରିୟାକଳାପ କିପରି ବିକୃତ ହୋଇ-ଯାଉଛି ଏବଂ ଯେଉଁ ସରଳତା ସାଧୁତା ଏବଂ କର୍ମନିଷ୍ଠା ପଲ୍ଲୀଜୀବନର ମୂଳ ନିତ୍ୟାତ୍ମକ ଥିଲା, ତାହାର ଘୋର ଅଭାବ ବର୍ତ୍ତମାନ କିପରି ସର୍ବତ୍ର ଦେଖିବାକୁ ମିଳୁଛି, ଏହି ଚିନ୍ତାରେ ସେ ବିଶେଷ ମର୍ମାହତ ହେଉଥିଲେ । ଭାରତ ଜାତୀୟ ଜୀବନର ଅସ୍ତିତ୍ୱ ସେ କେବଳ ଏହି ପଲ୍ଲୀରେ ଦେଖିପାରୁଥିଲେ । ଭାରତୀୟ ସଭ୍ୟତାର ମୌଳିକତାକୁ ଏହି ପଲ୍ଲୀବାସୀମାନେ ଏପର୍ଯ୍ୟନ୍ତ ଅକ୍ଷୁଣ୍ଣକରି ରଖି ଅଛନ୍ତି ବୋଲି ଗୋପବନ୍ଧୁଙ୍କର ବିଶ୍ୱାସ ଥିଲା । ସହରର ସଭ୍ୟତା କୃତ୍ରିମ ଓ ଆଡ଼ମ୍ବରମୟ ସମ୍ଭୋଗ ଏହାର ମୂଳ । ବିଳାସ ବ୍ୟସନ ପ୍ରତି ସହରବାସୀଙ୍କର ଉତ୍କଟ ମମତା; କିନ୍ତୁ ପଲ୍ଲୀବାସୀ ଦରିଦ୍ର ହେଲେ ମଧ୍ୟ, ଭାରତୀୟ ସଭ୍ୟତାର ପୁଣ୍ୟ ପରମ୍ପରା ଏମାନଙ୍କ ଜୀବନରେ ପରିସ୍ଫୁଟ, ମାତ୍ର ଏମାନଙ୍କର ଅବସ୍ଥା ଆଜି ଅତି ଶୋଚନୀୟ, କେବଳ ଅର୍ଥନୈତିକ ଦିଗରୁ ନୁହେଁ, ନୈତିକ ଦିଗରୁ ମଧ୍ୟ ସେମାନେ କ୍ରମେ ନିଃସ୍ୱ ଓ ରିକ୍ତ ହେବାକୁ ଯାଉଛନ୍ତି । ଦୁର୍ଭିକ୍ଷ ଓ ବନ୍ୟା ସେମାନଙ୍କୁ ଗ୍ରାସ କଲେଣି । ସହରବାସୀଙ୍କର ସୁବିଧା ଦେଖିବାକୁ ସରକାର ତତ୍ପର, ନେତୃସ୍ଥାନୀୟ ଲୋକମାନେ ବ୍ୟସ୍ତ; କିନ୍ତୁ ଉପେକ୍ଷିତ ଓ ମୂକ ପଲ୍ଲୀବାସୀଙ୍କ ଦୁଃଖ ଶୁଣିବାର

ଶୁଣିବାକୁ କାହାର କାନ ଅଛି ? ମହାତ୍ମାଗାନ୍ଧି ୧୯୨୪ ମସିହାରେ ଯେଉଁ ଗ୍ରାମ-ରାଜ୍ୟର ପରିକଳ୍ପନା କରିଥିଲେ, ସେଥିରେ ଏହି ପଲ୍ଲୀଉନ୍ନୟନ ଓ ସଂଗଠନ ହିଁ ମୁଖ୍ୟ ବିଷୟ ଥିଲା । ଭାରତ ପଲ୍ଲୀପ୍ରଧାନ । ତେଣୁ ପଲ୍ଲୀର ସର୍ବାଙ୍ଗୀନ ଉନ୍ନତିରେ ସକଳ ଶକ୍ତି ନିୟୋଜିତ କରିବାକୁ ହେବ, ଏହାହିଁ ଥିଲା ଗାନ୍ଧିଜୀଙ୍କ ରାମ-ରାଜ୍ୟର ଆଦର୍ଶ । ଦୀନବନ୍ଧୁ ଆଣ୍ଡ୍ରୁଜ୍ ମଧ୍ୟ ଭାରତକୁ ଆସି ପଲ୍ଲୀସେବାରେ ତାଙ୍କର ଶକ୍ତି ନିୟୋଜିତ କରିଥିଲେ । ଗୋପବନ୍ଧୁଙ୍କ ସହିତ ସେ ବନ୍ୟା ଓ ଦୁର୍ଭିକ୍ଷକ୍ଲିଷ୍ଟ ଅଞ୍ଚଳରେ ବୁଲି ଓଡ଼ିଶାର ପଲ୍ଲୀମାନଙ୍କର ଦୁଃଖ ଦୁର୍ଦ୍ଦଶା ଦେଖି ଅଶ୍ରୁମୋଚନ କରିଥିଲେ; କିନ୍ତୁ ଗାନ୍ଧିଜୀ ଓ ଆଣ୍ଡ୍ରୁଜଙ୍କ ବହୁପୂର୍ବରୁ, ଏପରିକି ଗୋପବନ୍ଧୁ କଲେଜର ଛାତ୍ରଥିବା ଅବସ୍ଥାରେ ପୁରୀଜିଲ୍ଲାର ପ୍ରଧାନ ପ୍ରଧାନ ବ୍ରାହ୍ମଣଶାସନରେ ସଭା ସମିତି କରି ପଲ୍ଲୀର ଉନ୍ନତି-ବିଧାନରେ ମନପ୍ରାଣ ଢାଳି କାମକରିବାକୁ ଲୋକମାନଙ୍କୁ ଉଦ୍‌ବୋଧନ ଦେଉଥିଲେ । ସନ୍ନ୍ୟାସୀଙ୍କ ପରି ଗୈରିକ ବସନ ପରିଧାନ କରି ଗ୍ରାମେ ଗ୍ରାମେ ତ୍ୟାଗ ଓ ସେବାର ମନ୍ତ୍ର ପ୍ରଚାର କରୁଥିଲେ । ଦୀନଦରିଦ୍ରମାନଙ୍କ ସେବାରେ ଆତ୍ମୋତ୍ସର୍ଗ କରିବାକୁ ଦେଶବାସୀଙ୍କୁ ଆହ୍ୱାନ କରୁଥିଲେ । ମହାତ୍ମାଗାନ୍ଧିଙ୍କ ପଲ୍ଲୀସେବା ପରିକଳ୍ପନାର ବହୁପୂର୍ବେ, ଅର୍ଥାତ୍ ୧୯୧୪ ମସିହାରେ ପଲ୍ଲୀସଂଗଠନ ଏବଂ ପଲ୍ଲୀସେବା ସମ୍ବନ୍ଧରେ ତାଙ୍କର ଧାରଣା ଓ ଯୋଜନାକୁ ସେ ଦେଶବାସୀଙ୍କ ସମ୍ମୁଖରେ 'ସତ୍ୟବାଦୀ' ମାସିକ ପତ୍ରିକାରେ ଏହିପରିଭାବରେ ଉପସ୍ଥାପିତ କରିଥିଲେ; "ଆଜିକାଲି ଅଳ୍ପବହୁତ ଦେଶରେ ଯେ କିଛି ଶିକ୍ଷାପାଇଲେ ତାଙ୍କ ମୁହଁ ସହର ଆଡ଼କୁ । × × × × ପଲ୍ଲୀସହିତ ଶିକ୍ଷିତମାନଙ୍କ ସମ୍ପର୍କ, ସହାନୁଭୂତି, ସ୍ନେହ, ମମତା କ୍ରମେ ଏପରି ତୁଟିଯାଉଥିବା ସ୍ଥଳେ 'ଜାତୀୟ ଜୀବନ' 'ସାମାଜିକ କଲ୍ୟାଣ' 'ଦେଶର ଉନ୍ନତି' ପ୍ରଭୃତି କଥାମାନ ଏହି ଶିକ୍ଷିତ ଲୋକଙ୍କ ଅସାର ବିଡ଼ମ୍ବନା ବୋଲି ବୋଧହୁଏ ନାହିଁ କି ? ଦେଶକୁ ବୁଝିବାକୁ ହେଲେ ସହର, ପ୍ରାନ୍ତର, ଗ୍ରାମ, ଗୁହା, ପଡ଼ା, ପାଟଣା, ପୁର ପଲ୍ଲୀ ଛୋଟ ବଡ଼ ସମସ୍ତ ଜନ-ପଦକୁ ହିସାବକୁ ନେବାକୁ ହେବ । ଆମ୍ଭମାନଙ୍କ ଜାତୀୟ ଶକ୍ତିର ମଜ୍ଜା ପଲ୍ଲୀରେ । ଭାରତୀୟ ସଭ୍ୟତାର କେନ୍ଦ୍ର ସହର ନୁହେଁ, ପଲ୍ଲୀଗ୍ରାମ । ନଗରର କୃତ୍ରିମତାରେ ନୁହେଁ, ପଲ୍ଲୀର ସ୍ୱାଭାବିକତାରେ । × × × × ପାଶ୍ଚାତ୍ୟ ସଭ୍ୟତା ବର୍ତ୍ତମାନ ସମୟରେ ଆମ୍ଭମାନଙ୍କୁ ନାନାଭାବରେ ଗ୍ରାସ କରୁଅଛି, ଆମ୍ଭମାନଙ୍କର ଆଧୁନିକ ସହରଗୁଡ଼ିକ ପାଶ୍ଚାତ୍ୟ ଦେଶର ସହରମାନଙ୍କ ଅନୁକରଣରେ ଗଢ଼ା ଏବଂ ସେ ସବୁରେ ପାଶ୍ଚାତ୍ୟଭାବ ସମ୍ପୂର୍ଣ୍ଣରୂପେ ପ୍ରକାଶ ପାଉଅଛି । ଏ ପ୍ରଭାବ ଯେ ଗ୍ରାମରେ ଏକାବେଳେକେ ପ୍ରବେଶ କରୁନାହିଁ, ଏହା ବୋଲିଯାଇ ନପାରେ; କିନ୍ତୁ ପଲ୍ଲୀ ତଥାପି ତା'ର ବିଶୁଦ୍ଧତା ବହୁ ପରିମାଣରେ ରଖିଅଛି । ଅନ୍ତଃସଲିଳା ଫଲ୍‌ଗୁପରି ଆମ୍ଭମାନଙ୍କ ଜାତୀୟଜୀବନର ଧାରା ପଲ୍ଲୀକୁଟୀର ମଧ୍ୟରେ ଅଦ୍ୟାପି ପ୍ରବାହିତ

ହୋଇଅଛି । ସରଳତା, ନିଷ୍ଠା, ନିସ୍ପୃହତା ଧର୍ମବିଶ୍ୱାସ, ସଦାଚାରପ୍ରଭୃତି ବିଭିନ୍ନ ଗୁଣ-କ୍ରିୟାମାନ ଅନେକ ସ୍ଥଳରେ ପଲ୍ଲୀଜୀବନରେ ଅଦ୍ୟାପି ସୁସ୍ପଷ୍ଟ ଦେଖାଯାଏ, ମାତ୍ର ଦରିଦ୍ରତା କ୍ରମେ ଏ ସବୁକୁ କ୍ଷୀଣ ଓ ବିକୃତ କରିପକାଉଛି । ଅସ୍ତ୍ରବର ଅନ୍ତମଧ୍ୟରେ ପଲ୍ଲୀବାସୀମାନଙ୍କୁ ଉଦ୍ଧାରକରି ନ ପାରିଲେ ଆଉ ଦୀର୍ଘକାଳ ଆମ୍ଭମାନଙ୍କ ଜାତୀୟତା ରକ୍ଷାକରିବା ଅସମ୍ଭବ । ତେଣୁ ପ୍ରତ୍ୟେକ ପଲ୍ଲୀର ଅବସ୍ଥା ଅନୁସନ୍ଧାନ କରି ତହିଁର ଯଥାସମ୍ଭବ ପ୍ରତୀକାର କରିବା ଏକାନ୍ତ ଆବଶ୍ୟକ । ଏହି ପଲ୍ଲୀ ଉନ୍ନତିବିଧାନହିଁ ଜାତୀୟ କର୍ମ X X X ।”

ପଲ୍ଲୀସେବକମାନଙ୍କୁ ଉପଦେଶ ଓ ଉଦ୍‌ବୋଧନ ଦେବା ନିମନ୍ତେ ସେ ‘ସତ୍ୟବାଦୀ’ ମାସିକ ପତ୍ରିକାରେ ନିୟମିତରୂପେ ପଲ୍ଲୀର ବିଭିନ୍ନ ସମସ୍ୟାର ଆଲୋଚନା କରି ‘ପଲ୍ଲୀପ୍ରସଙ୍ଗ’ ଶୀର୍ଷକ ପ୍ରବନ୍ଧ ଲେଖିଥିଲେ । ଏସବୁ ଲେଖାରେ ପଲ୍ଲୀର ଅଧୋଗତିରେ ତାଙ୍କ ବେଦନାବିଜଡ଼ିତ ହୃଦୟର ଦୁଃଖ ଯେପରି ଅବାଧ ଉନ୍ମୁକ୍ତି ଲାଭକରିଛି । ପଲ୍ଲୀବାସୀଙ୍କର ଶ୍ରମବିମୁଖତା ଏବଂ ଆରାମପ୍ରିୟତା ଦେଖି ସେ ବ୍ୟଥିତପ୍ରାଣରେ ‘ପଲ୍ଲୀପ୍ରସଙ୍ଗ’ର ‘ନିଦ୍ରମନିଦ୍ରା’ ଆଲୋଚନାରେ ଥରେ ଲେଖିଥିଲେ, ‘ପଲ୍ଲୀସମାଜର ପୂର୍ବ ପ୍ରକୃତି ସଙ୍ଗେ ବର୍ତ୍ତମାନ ଲୋକଙ୍କ ଗତିସ୍ଥିତି ତୁଳନାକରି ଦେଖିଲେ ଆମ୍ଭେମାନେ କ୍ରମେ ସ୍ୱର୍ଗଆଡୁ ନରକକୁ ଗତିକରୁଅଛୁ ବୋଲି ମନେ ହୁଏ ।’

କିନ୍ତୁ ଗୋପ-ସାହିତ୍ୟରେ ଏ ପଲ୍ଲୀପ୍ରାଣତା କେବଳ କବିଙ୍କର ବିଷାଦବାଦ କିମ୍ବା ଦୁଃଖାନୁଭୂତି ଉପରେ ପ୍ରତିଷ୍ଠିତ ନୁହେଁ । ପଲ୍ଲୀରେ ସେ ଲାଳିତ-ପାଳିତ । ପଲ୍ଲୀରେ ତାଙ୍କର ପ୍ରାଥମିକ ଶିକ୍ଷାର ଆରମ୍ଭ । ପଲ୍ଲୀର ଭାଗବତ ପାଠରେ ତାଙ୍କର ଆତ୍ମା ନିୟନ୍ତ୍ରିତ । ପଲ୍ଲୀର ପ୍ରାକୃତିକ ଶୋଭାପଟଳ ତାଙ୍କ ପ୍ରାଣରେ ସୃଷ୍ଟି କରିଛି କବିତ୍ୱର ଉନ୍ମେଷ । ତେଣୁ ପଲ୍ଲୀ ସହିତ ତାଙ୍କ ଜୀବନର ବହୁ ସୁଖ ସୌଭାଗ୍ୟ ଜଡ଼ିତ । ଆଜୀବନ ସେ ପଲ୍ଲୀକୁ ଏତେ ଭଲ ପାଉଥିଲେ ବୋଲି ଏହାର କ୍ରମବିବର୍ଦ୍ଧମାନ’ ଅଧଃପତନରେ ସେ ମର୍ମାହତ ହୋଇଥିଲେ; କିନ୍ତୁ ପଲ୍ଲୀଜୀବନର ସରଳ ସ୍ୱାଚ୍ଛନ୍ଦ୍ୟରେ ସେ ସର୍ବଦା ବିମୋହିତ ଥିଲେ । ତେଣୁ ତାଙ୍କ କବିତାରେ ପଲ୍ଲୀର ଦୁଃଖଦୁର୍ଗତିର ଚିତ୍ର ଯେପରି ବାସ୍ତବ ଜୀବନ୍ତ ପ୍ରାଣସ୍ପର୍ଶୀ ଓ ଶାଣିତ କରବାଳର ଧାର ପରି ତୀକ୍ଷ୍ଣ, ପଲ୍ଲୀର ପ୍ରାକୃତିକ ଦୃଶ୍ୟ ଏବଂ ପଲ୍ଲୀବାସୀଙ୍କର ଶୁଦ୍ଧ ସରଳ ଓ ଆନନ୍ଦମୟ ଦୈନନ୍ଦିନ ଜୀବନଯାତ୍ରାର ଚିତ୍ର ମଧ୍ୟ ସେହିପରି ଚମତ୍କାର ଓ ଅନବଦ୍ୟ ସୁନ୍ଦର । ହଜାରିବାଗର ନିର୍ଜନପ୍ରକୋଷ୍ଠ ମଧ୍ୟରେ ରଚିତ ‘ସାନ୍ଧ୍ୟ ଭାବନା’ରେ ପଲ୍ଲୀର ସେହି ସ୍ନିଗ୍ଧ ରମଣୀୟ ମନମୋହନ ସ୍ମୃତି ତାଙ୍କ ପ୍ରାଣରେ କ୍ଷଣକାଳପାଇଁ ଆନନ୍ଦର ତରଙ୍ଗ ସୃଷ୍ଟି କରିଛି । ପଲ୍ଲୀର

କେତେ ଦୃଶ୍ୟ, କେତେ ତୁଚ୍ଛ ଘଟନା, 'ସମାଜବହିର୍ଭୂତ' କ୍ଷୁଦ୍ରାଦପି କ୍ଷୁଦ୍ର ଲୋକଙ୍କର କେତେ ସୁଖଦୁଃଖର ଅତୀତ ସ୍ମୃତି ତାଙ୍କ ନପୀଡ଼ିତ ଆତ୍ମାକୁ ଉଦ୍ଭାସିତ କରିଛି, ଦେଖିଲେ ଅବାକ ହେବାକୁ ପଡ଼େ । ଜାତୀୟ ଦେଶପୂଜ୍ୟ ବରେଣ୍ୟ ବନ୍ଦନୀୟ ଗୋପବନ୍ଧୁ, କାହିଁ ସମୁଦ୍ରକୂଳବର୍ତ୍ତୀ ମାଛଧରା ନୋଳିଆ ଜାତି ! ସର୍ବଭୂତାତ୍ମା ଗୋପବନ୍ଧୁ ଏହି ଅବହେଳିତ ଜାତିକୁ କିପରି ଆପଣାର କରି ନେଇଛନ୍ତି, ତାହାର ନିଦର୍ଶନ—

'ସୁନୀଳ ବିତାନ ତଳେ ଚନ୍ଦବାଲି ମୂଳଯାଏ
ଶ୍ୟାମଳ ପାଦପପନ୍ତି ତୀରେ ଦୂରେ ଶୋଭୁଥାଏ ।
ପଡ଼ିଉଠିରେ ମାଛ ପେନ ନୋଳିଆ ଲେଉଟି ଆସେ
କୂଳେ ତା ପିଲାଏ ଚୁହିଁ ଗୀତ ଗାନ୍ତି ଅଟ୍ଟହାସେ ।
ପାଣିକି ଉଆଁନ୍ତି କେତେ ଖୁଙ୍ଗିବେ ଲହଡ଼ି ସାତ
ପାଉଛନ୍ତି ଆଣିବେ କୂଳେ ଧରି ଯେଝା ବାପହାତ ।'

'ବନ୍ଦୀର ସ୍ୱଦେଶଚିନ୍ତା'ରେ ମଧ୍ୟ କବି ପଲ୍ଲୀଜୀବନର ବହୁ ସୁଖସ୍ମୃତି ରୂପାୟିତ କରିଅଛନ୍ତି । ଏ ରୂପାୟନ ଗୋପବନ୍ଧୁଙ୍କର ନିଜସ୍ୱ । ଏ ଚିତ୍ର ଗୋପବନ୍ଧୁଙ୍କର ଅନନ୍ୟ । ଏଠାରେ ତାଙ୍କୁ ପଲ୍ଲୀକବି ନନ୍ଦକିଶୋର ବଳ କିମ୍ବା କବି ସଚ୍ଚିଦାନନ୍ଦଙ୍କ ସହିତ ତୁଳନାକରି ପାଣ୍ଡିତ୍ୟପୂର୍ଣ୍ଣ ଗବେଷଣାତ୍ମକ ଆଲୋଚନା ଲେଖିବାର ପ୍ରୟାସ ବିଡ଼ମ୍ବନା । ଏ ପ୍ରକାର ଶୈଳୀ ଗୋପବନ୍ଧୁଙ୍କର ବ୍ୟକ୍ତିଗତ ସମ୍ପଦ । ପଲ୍ଲୀଜୀବନ ପ୍ରତି ଅକୃତ୍ରିମ ପ୍ରଗାଢ଼ ଅନୁରକ୍ତିରୁ ଏହାର ସୃଷ୍ଟି । ଯେ ପଲ୍ଲୀବାସୀମାନଙ୍କ ପ୍ରାଣ ସହିତ ପ୍ରାଣ ମିଶାଇ ଦେଇଛି, ମାନବିକତାରେ ଯାହାର ହୃଦୟ ସମୃଦ୍ଧ, ସେହି କେବଳ ପଲ୍ଲୀଜୀବନର ଏପରି ମର୍ମସ୍ପର୍ଶୀ ଚିତ୍ର ଅଙ୍କନ କରିପାରେ ।

"ଗ୍ରାମ-ସୀମନ୍ତିନୀ ଚହଲିଇ ପାଣି
କଳସରେ ଯେବେ ନିଅନ୍ତି ଭରି,
ନୀଳମଣି ଦାମ ପ୍ରାନ୍ତେ ସେ ଲହରୀ
ଖଣ୍ଡ ଦୂରଯାଏ କ୍ଷଣେ ପ୍ରସରି ।
ଗାଈଆଳ ପିଲା ଗୋଠୁଁ ବାହୁଡ଼ାଇ
ଆସୁଥାଏ ଗାଈ ବେଣୁ ବଜାଇ
ହାଟ କାମ ସାରି ଫେରନ୍ତି ବେପାରୀ
ଭଙ୍ଗ ଚଉପଦୀ ପଦ ପକାଇ ।

ଯାଗେଶ୍ବର ପାଶେ ଧୂପ ଦେଇ ବାସେ
ଆସନ୍ତି କୌତୁକେ କୁମ୍ଭାରକୁଳ
କିଏ କରେ କଳି ଆନ ସଙ୍ଗେ କେଳି
କିଏ ବା ଗୋଟାଏ ବଉଳ ଫୁଲ ।

× × ×
× × ×

ହଳ ଲେଉଟାଇ ଅପୁଥାଏ ଖେଳ
ମୁଣ୍ଡେ ଘାସଗୋଛ୍ର ହାତେ ପାଞ୍ଚଣ,
ବଳଦ ଅଡ଼ାଇ ଚଏ କେବେ ଗାଇ
'କେଁ। ଗ୍ରୁଡ଼ିଗଲୁ ତୁ ଲଇକ୍ଷଣ ।'
ବାଟୋଇ ଭିକାରୀ ବନ୍ଧରୁ ଉତୁରି
ଅଶ୍ୱତ୍ଥ ଆଶ୍ରାରେ ଗ୍ରାମରେ ପଶେ
ଦୁଏ ସନ୍ଧି ଗୀତ ଉଚ୍ଚେ ଭାଗବତ
ଶୁଣିବାକୁ ତହିଁ ପିଣ୍ଡାରେ ବସେ ।"

ଏହା ପଲ୍ଲୀର କବିଜନସୁଲଭ କଳ୍ପନାନୁରଞ୍ଜିତ ଆଲେଖ୍ୟ ନୁହେଁ । ଏହାହିଁ ଗୋପବନ୍ଧୁଙ୍କ ପରିଦୃଷ୍ଟ ପଲ୍ଲୀର ଜୀବନ୍ତ ଇତିହାସ । ଏହି ସୁମଧୁର ସରସ ଇତିହାସ ଗୋପବନ୍ଧୁଙ୍କ ପଲ୍ଲୀପ୍ରାଣତାରେ ରସାଣିତ ହୋଇ ଯେଉଁ ସାରସ୍ୱତ ସମ୍ପଦ ଆମ୍ଭମାନଙ୍କ ନିମନ୍ତେ ସମ୍ପାଦ ରଖିଛି, ଅତ୍ୟାଧୁନିକ ସାହିତ୍ୟର ପ୍ରବଳତମ ଉଚ୍ଛ୍ୱାହରେ ତା'ର ଧୋଇ ନାହିଁ କି ମରୁଡ଼ି ନାହିଁ ।

'ସତ୍ୟବାଦୀ'ର ୧ମ ଖଣ୍ଡ, ପ୍ରଥମ ସଂଖ୍ୟାରେ ଓଡ଼ିଆଜାତିର ହୃଦସ୍ପର୍ଶ 'ଭାବ ବୁଝିବାଲାଗି କି ଉପାୟ ଅବଲମ୍ବନ କରିବାକୁ ହେବ, ସେ ସମ୍ବନ୍ଧରେ ଗୋପବନ୍ଧୁ ଉଲ୍ଲେଖ କରିଥିଲେ, 'ଯୋଗୀ ଭିଖାରୀଙ୍କ ଗୋବିନ୍ଦଚନ୍ଦ୍ର ଗୀତ ଶୁଣିବାକୁ ହେବ, ଗୋରୁଗୋଠରେ ଗଉଡ଼ର ପ୍ରାଣରେ ପ୍ରାଣ ମିଶାଇ ଏକତାନରେ ବଂଶୀ ବଜାଇବାକୁ ହେବ, ଗ୍ରାମ ଭାଗବତ ଘର ଗୋଷ୍ଠୀମେଳରେ ଜଗନ୍ନାଥ ଦାସଙ୍କ ଭାଗବତ ପଦର ଦୁଆ ଧରିବାକୁ ହେବ ।' ଏହା କେବଳ ଗୋପବନ୍ଧୁଙ୍କ ପଲ୍ଲୀପ୍ରାଣତାର ନିଦର୍ଶନ ନୁହେଁ, ଏହାହିଁ ତାଙ୍କର ସାହିତ୍ୟ-ଦର୍ଶନ, ଏହିଠାରେ ହିଁ ତାଙ୍କ ସାହିତ୍ୟର ବୈଶିଷ୍ଟ୍ୟର ସରଣୀ ଅନୁସରଣ କରିବାକୁ ହେବ ।

ପଲ୍ଲୀର ଦୁଃଖ ଦୁର୍ଗତି ଓ ଦୈନ୍ୟ ଚିତ୍ରଣ କରିବାରେ ସେ ସିଦ୍ଧହସ୍ତ । ଏ ଚିତ୍ରଣ ଆୟାସଲଭ୍ୟ ନୁହେଁ, ସେଥିପାଇଁ କବିଙ୍କୁ ଉପକରଣ ସଂଗ୍ରହ କରିବାକୁ ପଡ଼ିନାହିଁ । ଏ ଦୁର୍ଗତିର ବର୍ଣ୍ଣନାରେ କବିଙ୍କର କଳା-କୌଶଳ କିମ୍ବା ପ୍ରସାଧନ-ପରିପାଟୀ ନାହିଁ । ଯେଉଁ ଦୁର୍ଗତି ଦୂରକରିବା ନିମନ୍ତେ ସେ ଚିନ୍ତାକୁଳରୁ

ସୁବର୍ଣ୍ଣରେଖା ପର୍ଯ୍ୟନ୍ତ ପରିଭ୍ରମଣ କରି ଅଛନ୍ତି, ଶତ ଶତ ପଲ୍ଲୀର ଦ୍ୱାରଦ୍ୱାରରେ ନିଜର ଉତ୍ତପ୍ତ ନିଃଶ୍ୱାସ ମିଶାଇ ଅଛନ୍ତି, ଦୁର୍ଭିକ୍ଷ-ପ୍ରପୀଡ଼ିତ ଅଞ୍ଚଳରେ ଖର୍ବୋଦର୍ଦ୍ଧୀ ସହି ପେଟରେ ଓଦାକନା ପକାଇ ଚୂଡ଼ା ଚୂଲି ବାଣ୍ଟିଛନ୍ତି, ବନ୍ୟାଗ୍ରସ୍ତ ଅଞ୍ଚଳର ମୃତଦେହକୁ ଆଲିଙ୍ଗନ କରି ଅନାଥ ଶିଶୁପରି କାନ୍ଦି କାନ୍ଦି ଭୂଇଁରେ ଲୋଟିପଡ଼ିଛନ୍ତି, ସେହି ଦରିଦ୍ରନାରାୟଣଙ୍କ ଦୁଃଖ ଦୈନ୍ୟକୁ ସେ ପରର ବୋଲି ଭାବୁ ନ ଥିଲେ, ସେ ସେପରି ଥିଲି ତାଙ୍କର ବ୍ୟକ୍ତିଗତ ବେଦନା—ନିଜ ଅନ୍ତରର ନିଗୂଢ଼ ଅନୁଭୂତି । ସେହି ଅନୁଭୂତି, ହିମାଳୟ ପର୍ବତରୁ ଗଙ୍ଗାନଦୀ ପ୍ରବାହିତ ହୋଇ ଆସି ଭାରତ ଭୂମିକୁ ଉର୍ବର କଲାପରି, ଓଡ଼ିଆ-ସାହିତ୍ୟକୁ ଶ୍ରୀ-ସମ୍ପନ୍ନ କରିଅଛି । ହଜାରିବାଗ କାରାଗାରର ନିର୍ଜନ ପ୍ରକୋଷ୍ଠରେ ମଧ୍ୟ ଉତ୍କଳର ସେହି ନିଦାରୁଣ ଦୃଶ୍ୟ ତାଙ୍କ ଆଖି ଆଗରେ ବାରମ୍ବାର ନାଚି ଉଠିଛି । ଦୁଃଖରେ ମନ ଭରି ଉଠିଛି । ତେଣୁ ସେ ବିଷାଦ-ଭାରାକ୍ରାନ୍ତ ପ୍ରାଣରେ ଗାଇଛନ୍ତି,—

‘ସଢ଼ି ମଞ୍ଜି ଗଛେ ରହିଛି ବକଳ
ସୁନ୍ଦର ସକଳ ବିକଟ ବକଳ ।
ଫେରିବ ଏ ଦଶା ସୁଖୀ ହେବ ପ୍ରଜା
ଉଦ୍ଭୁନା ଧାନ କି ସତେ ହେବ ଗଜା ?
ଉତ୍କଳର ଏହି ଚିତ୍ର ନିଦାରୁଣ
ନାଚିବ ମୋ ଆଖି ଆଗେ ପୁଣ ପୁଣ ।
ଏବେ କାରାବାସ ଦୂର ପରଦେଶ
ଦେଶ-ଦଶା ତହିଁ ମନେ ଦେଲେ କ୍ଲେଶ ।
କି ଭାବ ପରାଣେ ପାଇବି ଆଶ୍ୱାସ,
ପୋଛିବି ଲୋତକେ ଧରି କି ସାହସ ?”

ସେ ‘ନିଦାରୁଣ ଚିତ୍ର’ର ଅଭାସ ମାତ୍ର ‘ବନ୍ଦୀର ଆତ୍ମକଥା’ରେ ଅଛି । ଏହା-ପଲ୍ଲୀ-ଜୀବନର ଦୁର୍ଗତିର ପୂର୍ଣ୍ଣାଙ୍ଗ ଚିତ୍ର ନୁହେଁ । ଏ ଚିତ୍ର ପୁଣି କେବଳ ବର୍ଣ୍ଣନାରେ ପର୍ଯ୍ୟବସିତ ନୁହଁ । ଦୁର୍ଗତିର ଅପସାରଣର ପନ୍ଥା ମଧ୍ୟ ଏଥିରେ ସ୍ପଷ୍ଟଭାବରେ ଅଛି । ଗ୍ରାମର ନୈତିକ ଓ ଅର୍ଥନୈତିକ ଅଧଃପତନର ଦାରୁଣ୍ୟ ଦୃଶ୍ୟ ପରିବେଷଣ କରିବାକୁ ଯାଇ ସେ ଲେଖିଛନ୍ତି—

“ପଶିଗଲେ ଗ୍ରାମେ ନ ଶୁଭେ ଶବଦ,
ବେଦମନ୍ତ୍ର କିମ୍ବା ଭାଗବତପଦ ।
ଗ୍ରାମବାସିଗଣେ ନାହିଁ ପୂର୍ବମେଳ,
ଶିଶୁଙ୍କେ ଦାଣ୍ଡେ ନ ହୁଏ ଉଦ୍‌ବେଳ ।

× × ×

ନାହିଁ ଜନମୁଖେ ସତ୍ୟ-ଧର୍ମ-କ୍ଳାନ୍ତି
ନାହିଁ ହୃଦେ ଶୌଚ ପ୍ରାଣେ ସ୍ନେହଶାନ୍ତି ।
ପର ପ୍ରବଞ୍ଚନା କରେଷ୍ଟି-ବିସ୍ତର
ଗ୍ରାମ-ମୁଖିଆଙ୍କ ନିତ୍ୟ କାରବାର ।
ଆତ୍ମୀୟ ସୋଦର ପ୍ରତିବେଶୀ ସହ
ନୀଚ ସ୍ୱାର୍ଥ ଲାଗି ଲଗାନ୍ତି କଳହ..."

ମହାତ୍ମାଗାନ୍ଧି ଥରେ ତାଙ୍କର ଉତ୍କଳ-ଭ୍ରମଣ ସମୟରେ ଏଠାରେ ଦୁର୍ଭିକ୍ଷ-ପୀଡ଼ିତ ଲୋକମାନଙ୍କ ସମ୍ବନ୍ଧରେ ଗୋପବନ୍ଧୁଙ୍କୁ କହିଥିଲେ, "ଦୁର୍ଭିକ୍ଷର ଏ ଦାରୁଣ ଦୃଶ୍ୟ ଦେଖି, ମୋର ମନେହୁଏ, ଅଜ୍ଞ ଅନଶନରେ ଏ ଜୀବନ 'ତ୍ୟାଗକରନ୍ତି । ଲୋକଙ୍କର ଏ କଷ୍ଟ ଦେଖିବାଠାରୁ ମୃତ୍ୟୁ ସହସ୍ରଗୁଣେ ଶ୍ରେୟସ୍କର;' କିନ୍ତୁ ଏହାର ପୂର୍ବରୁ ଗୋପବନ୍ଧୁ ଏହି ଦୁର୍ଭିକ୍ଷଗ୍ରସ୍ତ ଲୋକମାନଙ୍କପାଇଁ ଅନଶନକୁ ଜୀବନର ବ୍ରତରୂପେ ଗ୍ରହଣ କରିନେଇଥିଲେ । ଭଲକରି ଖଣ୍ଡେ ଲୁଗା କିଏ ପିନ୍ଧିବାକୁ ଦେଲେ, ଆଦର ଅଭ୍ୟର୍ଥନା କରିବା ନିମନ୍ତେ ଭଲକରି ମୁଠିଏ କିଏ ଖାଇବାକୁ ଦେଲେ, ସେ ତାହାସବୁ ଅଶ୍ରୁ-ସଜଳ ନୟନରେ ପ୍ରତ୍ୟାଖ୍ୟାନ କରିଦେଉଥିଲେ । ତଥାପି ତାଙ୍କର ଭରସା ଥିଲା ଏ ଦୁର୍ଗତି ଦିନେ ଦୂର ହେବ, ଉତ୍କଳ ଧାନ ଦିନେ ଗଜା ହେବ, ମରୁଭୂମିରେ ଫୁଲ ଫୁଟିବ, ପଲ୍ଲୀବାସୀଙ୍କର ଅତୀତ ସୁଖ-ସୌଭାଗ୍ୟ ଦିନେ ଫେରିଆସିବ—ଅସମ୍ଭବ ଦିନେ ସମ୍ଭବ ହେବ । ଏ ଦୁଃଖର ଅବସାନ ନିମନ୍ତେ ସେ ଭୌତିକ ଓ ପାରମାର୍ଥିକ ଉଭୟ ପନ୍ଥାର ନିର୍ଦ୍ଦେଶ ଦେଇଅଛନ୍ତି । ସ୍ୱେଚ୍ଛାପ୍ରଣୋଦିତ ଓ ନିଃସ୍ୱାର୍ଥ ଦେଶ-ସେବକ କର୍ମୀ ଜନ-ନାୟକର ବଳିଷ୍ଠ ଆଶାବାଦ ଓ ଆତ୍ମପ୍ରତ୍ୟୟ ଏଥିରେ ସ୍ପଷ୍ଟ ପ୍ରତୀୟମାନ :—

"ଅରଟ ଚଳାଅ ପ୍ରତି ଘରେ ଘରେ
ଗ୍ରାମର କଳହ ତୁଟାଅ ଗ୍ରାମରେ
ଚାଲ ସତ୍ୟପଥେ ନାହିଁ ଡରଭୟ,
ଅସହଯୋଗର ବିଜୟ ନିଶ୍ଚୟ ।
ଛାଡ଼ ଉଚ୍ଚ ନୀଚ ଭେଦ ଅହଙ୍କାର,
ହେଉ ନୀଳାଚଳୁ ସମତା ପ୍ରଚାର
ଖଣ୍ଡଗିରି ଭେଦି ଅହିଂସା-ମନ୍ତ୍ରର
ଜାଗୁ ପୁଣି ଥରେ ଉତ୍କଳ-ଅନ୍ତର
ନୀଳାଚଳନାଥ ପ୍ରଭୁ ଶ୍ରୀନିବାସ
ପୂରାଇବେ ଆଶା ରଖ ଏ ବିଶ୍ୱାସ ।"

ଗୋପବନ୍ଧୁଙ୍କ ପଲ୍ଲୀପ୍ରାଣତାର ଅନ୍ୟତମ ନିଦର୍ଶନ, ୧୯୧୯ ମସିହାର ଉତ୍କଳ-ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନରେ ପ୍ରଦତ୍ତ ତାଙ୍କ ବକ୍ତୃତାରେ ଏହି ପ୍ରାସଙ୍ଗିକ ଅଂଶାବଶେଷ :—'ଆଜି ଆମ୍ଭମାନଙ୍କ ପଲ୍ଲୀର ଜନସାଧାରଣଙ୍କର ଅବସ୍ଥା ଦେଖିଲେ ହୃଦୟ ଫାଟିଯାଏ । ଏହି ଅବସ୍ଥା ଅଧିକ ଦିନ ଚାଲିଲେ ଆମ୍ଭମାନଙ୍କ ଜାତିର କି ଦୁର୍ଗତି ହେବ ଭାବି ହୃଦୟରେ ବେଳେବେଳେ ନିରାଶା ଆସେ । ଶ୍ରମଜୀବୀକୁଳ କ୍ରମେ ଛାରଖାର ହୋଇଯାଉଛନ୍ତି, ଖାଦ୍ୟର ଅଭାବ, ଜଳର ଅଭାବ, ବସ୍ତ୍ରର ଅଭାବ, ସ୍ୱାସ୍ଥ୍ୟ ନାହିଁ, ଶିକ୍ଷା ନାହିଁ ଏବଂ ସାହସ ନାହିଁ । × × × ମାତ୍ର ସେହିମାନଙ୍କ ପ୍ରାଣ ଉପରେ ପ୍ରତିଷ୍ଠିତ ନ ହେବାଯାଏ ଆମ୍ଭମାନଙ୍କର ସମ୍ମିଳନୀ ପ୍ରକୃତ ଓଡ଼ିଆଜାତିର ସମ୍ମିଳନୀ ନୁହେଁ । ନଗର, ଗ୍ରାମ, ପଡ଼ା, ପାଟଣା, ବିଲ, ହାଟ, ବାଟ, ରାଜପଥ ସର୍ବତ୍ର ଜାତୀୟତାର ଭାବସ୍ରୋତ ଭସାଇବାକୁ ହେବ । × × × ଜାତୀୟ କାର୍ଯ୍ୟରେ ସାହାର ମହାରାଜା ମଧ୍ୟରେ ଭେଦଭେଦ ହେବା ଉଚିତ ନୁହେଁ । ଓଡ଼ିଆମାନଙ୍କର ଏ ନୀତି ସମ୍ମିଳନୀର କାର୍ଯ୍ୟନିୟାମକ ନୀତି ହେବା ଉଚିତ ।'

---

# ଦ୍ୱାଦଶ ପରିଚ୍ଛେଦ

## ଗୋପବନ୍ଧୁ କି ବିଷାଦବାଦୀ ?

ଗୋପବନ୍ଧୁଙ୍କର ଅଧିକାଂଶ କବିତା କରୁଣରସାତ୍ମକ । ଦୁଃଖ ହିଁ ସେ ସବୁ କବିତାର ପ୍ରାଣଶକ୍ତି । ନୈରାଶ୍ୟର ବାଣୀ ସେଥିରେ ପ୍ରତିଧ୍ୱନିତ, ଅନ୍ତରର ନିଗୂଢ଼ ବେଦନା ଅଭିବ୍ୟକ୍ତ । ଏ ବେଦନା କେତେବେଳେ ବ୍ୟକ୍ତିଗତ, କେତେବେଳେ ସମଷ୍ଟିଗତ, କେତେବେଳେ ଆଧ୍ୟାତ୍ମିକ ଭାବନା ଉପରେ ପ୍ରତିଷ୍ଠିତ । ଦେଶର ଅତୀତ ଗୌରବର ସ୍ମୃତି ତାଙ୍କୁ ଯେତିକି ଆନନ୍ଦ ଦେଇଛି, ଅତୀତ ସହିତ ବର୍ତ୍ତମାନର ତୁଳନାରେ ତାଙ୍କ କୋମଳ ହୃଦୟର ତନ୍ତ୍ରୀ ଦୁଃଖରେ ସେତିକି ଛିନ୍ନବିଛିନ୍ନ ହୋଇଯାଇଛି । କର୍ମକ୍ଷେତ୍ରରେ ଦୀନଦୁଃଖୀଙ୍କ ପାଇଁ ଯେଉଁ ଅଶ୍ରୁନିର୍ଝର, କବିତାରେ ମଧ୍ୟ ସେହି ନିରବଚ୍ଛିନ୍ନ ଅଶ୍ରୁ-ପ୍ରବାହ । ତାଙ୍କ ମୃତ୍ୟୁର ୪୭ ବର୍ଷପରେ ଆଜି ଏ ଦେଶର ଲୋକେ ତାଙ୍କ ଅଶ୍ରୁକୁ ହିଁ ଧୂପ ଦେଉଛନ୍ତି । କବିମାନେ ନୟନର ଲୋତକ ଢାଳି ତାଙ୍କର ତର୍ପଣ କରୁଅଛନ୍ତି । ତେବେ କ'ଣ କର୍ମଯୋଗୀ ଓ ମାତୃଭୂମିର ଏକନିଷ୍ଠ ସାଧକ ଗୋପବନ୍ଧୁ କରୁଣ ରସର ମୂର୍ତ୍ତିପ୍ରତୀକ ? ବିଷାଦବୋଧ ହିଁ କେବଳ ତାଙ୍କ କବିତାର ଏକମାତ୍ର କଥା ? ସର୍ବୋଦୟବାଦୀ, ସାମ୍ୟବାଦୀ, ପରମ ଶ୍ରେୟବାଦୀ ଓ ସତ୍ୟବାଦୀ ଗୋପବନ୍ଧୁ କ'ଣ କେବଳ ଆଖିକୁ କନ୍ଦାଇବା ନିମନ୍ତେ ଏ କବିତାଗୁଡ଼ିକ ରଚନା କରିଯାଇଅଛନ୍ତି ? ଯେ ଓଡ଼ିଶାର ନବଜୀବନର ପ୍ରତିଷ୍ଠାତା, ବ୍ୟାପକ ଓ ଉଦାର ଜାତୀୟଭାବରେ ଯେ ଅନୁପ୍ରାଣିତ, କେବଳ ଚିନ୍ତା କିମ୍ବା ସମବେଦନା ନୁହଁ, 'କର୍ମ' 'କର୍ମ' 'କର୍ମ' ଯାହା ଜୀବନର ଏକମାତ୍ର ମନ୍ତ୍ର, ତାଙ୍କ କବିତା ଏପରି ନୈରାଶ୍ୟ କିମ୍ବା ବିଷାଦ-ଭାରାକ୍ରାନ୍ତ ହୋଇଛି କି ?

କିନ୍ତୁ ଦୃଷ୍ଟ ବିଶ୍ୱଦରବାରରେ ପ୍ରତୀୟମାନ ହୁଏ, ଯେତେ ଯେତେ କବି ବିଷାଦର ଗାଥା ଗାଇଯାଇଅଛନ୍ତି, ମନୁଷ୍ୟସମାଜର ଦୁଃଖ, ଦୁର୍ଦ୍ଦଶା ଓ ନିର୍ଯ୍ୟାତନାର ଚିତ୍ର ଅଙ୍କନ କରି ବିଶ୍ୱ-ସାହିତ୍ୟରେ ଅମରତ୍ୱ ଲାଭକରିଅଛନ୍ତି, ସେମାନେ ବିଷାଦବାଦୀ ନୁହନ୍ତି । ଉଦାର ମାନବିକତା ଓ ଉଚ୍ଚତର ମାନବିକ ମୂଲ୍ୟବୋଧ ମନୁଷ୍ୟ-ସମାଜର ଦୁଃଖ ଦୁର୍ଦ୍ଦଶାରେ ସେମାନଙ୍କ ପ୍ରାଣରେ ଯେଉଁ ଅତୃପ୍ତି ଓ ଅଶାନ୍ତିର ଉଦ୍ରେକ କରିଛି, ଏହି ବିଷାଦବାଦର ଉତ୍ସ ସେହି ମଙ୍ଗଳମୟ

ଅତୃପ୍ତି ଓ ଅଭାବବୋଧରେ, ଅପୂର୍ଣ୍ଣତାରୁ ପୂର୍ଣ୍ଣତା ଆଡ଼କୁ ଅଗ୍ରସର ହେବା ନିମନ୍ତେ ପ୍ରାଣର ଯେଉଁ ଉଦ୍ଦାମ ବ୍ୟାକୁଳତା. ଯେଉଁ ନ୍ୟୁନବ୍ୟାକୁଳତା ମଧ୍ୟରେ ଏହି ବିଷାଦବାଦର ବୀଜ ନିହିତ । ଏହି ବିଷାଦବାଦରେ ହିଁ ସେମାନଙ୍କର ଆନନ୍ଦ । ଏହି ବିଷାଦଗୀତିକା ମଧ୍ୟରେ ସେମାନେ ଆତ୍ମମାନଙ୍କ ଜୀବନର ଅମୃତମୟ ପଥର ସନ୍ଧାନ ଦେଇଥାନ୍ତି । ଗୋପବନ୍ଧୁ ଥରେ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ, 'ଆତ୍ମମାନଙ୍କର ଯେ ଅଭିଜ୍ଞତା ହୋଇଅଛି ଏବଂ ହୃଦୟରେ ଯେ ଉନ୍ନତି ଅଭିମୁଖୀ ଅଶାନ୍ତି ଜନ୍ମିଅଛି. ଏହା ସାମାନ୍ୟ ଲାଭ ନୁହେଁ, ତାଙ୍କ ଭାଷାରେ ଏହି 'ଉନ୍ନତି ଅଭିମୁଖୀ ଅଶାନ୍ତି'ହିଁ ଜାତିର ପରମ ସମ୍ପଦ । ଏହାହିଁ ଜାତିକୁ ଅପୂର୍ଣ୍ଣତାରୁ ପୂର୍ଣ୍ଣତା ଆଡ଼କୁ ଅଗ୍ରସର କରାଏ । ଏହି ଅଶାନ୍ତିହିଁ ଗୋପବନ୍ଧୁଙ୍କ କବିତାର ବିଷାଦ-ବାଦର କାରଣ । ତେଣୁ ଏ ବିଷାଦ, ସାଧାରଣତଃ ଆମ୍ଭେମାନେ ଯାହାକୁ 'ଦୁଃଖ' ବୋଲି ମନେ କରୁ, ସେ ଧୂଳିଧୂସରିତ ଦୁଃଖ ନୁହେଁ, ଯାହା କେବଳ ସ୍ୱାର୍ଥସାଧନର ବିଫଳତାରୁ ସଞ୍ଜାତ । ଗୋପବନ୍ଧୁ ଅବଶ୍ୟ ନିଜର ବ୍ୟକ୍ତିଗତ ଦୁଃଖ ନୈରାଶ୍ୟ ଓ ବିଫଳତାର ଚିତ୍ର ଅଙ୍କନକରି ଅନେକ କବିତାରେ ଅଶ୍ରୁମୋଚନ କରିଅଛନ୍ତି । ଶୈଶବ ଓ ଯୌବନର ନାନା ଶୋକ, ଦୁଃଖ, ଆତ୍ମୀୟ ବିୟୋଗ ଓ ବନ୍ଧୁ ବିଚ୍ଛେଦରେ ତାଙ୍କର ନିଃସଙ୍ଗ ପ୍ରାଣ ହାହାକାର କରିଉଠିଛି ।

> 'ଦେଖିନାହିଁ ମୁଁ ମାତୃବଦନ
> ପାନ କରି ନାହିଁ ମାତୃସ୍ତନ ।'

କିନ୍ତୁ ସେ ଭାର୍ଗବୀ ନଦୀ ପ୍ରତି ଶ୍ରଦ୍ଧାଞ୍ଜଳି ନିବେଦନକରି ଅନ୍ତରର ବେଦନା ପ୍ରକଟ କରିଅଛନ୍ତି । ଏତିକି କହି ସେ ଦୁଃଖରେ ବୁଡ଼ିଯାଇ ନାହାନ୍ତି । ଏ ଦୁଃଖ ଓ ଅବସାଦ ମଧ୍ୟରେ ଆଶାର ମଧୁମଞ୍ଜୁଳ ରକ୍ତିମ ଛଟାର ଆଭାସ ମଧ୍ୟ ସେ ପାଇଛନ୍ତି । ସେ ଯେଉଁଠାରେ ଦୁଃଖରେ ବୁଡ଼ିଛନ୍ତି, ସେଠାରୁ ସେ ଆଶା ଓ ବିଶ୍ୱାସ ନେଇ କ୍ରମେ କ୍ରମେ ଉପରକୁ ଉଠିଛନ୍ତି । ଯେଉଁ ଭାର୍ଗବୀ ନଦୀକୁ ଲକ୍ଷ୍ୟକରି ସେ ହୃଦୟର ଦୁଃଖ ଅଜାଡ଼ି ଦେଇଛନ୍ତି, ସନ୍ଧ୍ୟାରେ ତାହାର 'ହେମ ପ୍ରବାଳ-ବିଳ୍ପିସ ସର ଶୈବାଳଦଳ' ଦେଖି ତାଙ୍କର ହୃଦୟସ୍ଥ 'ଆଶା-ସମୀର'ରେ ତରଙ୍ଗାୟିତ ହୋଇଅଛି । ତେଣୁ ଅଶାୟିତ ପ୍ରାଣରେ ସେ ଭାର୍ଗବୀ ପଦରେ ବିନତି କରି ଭିକ୍ଷା ମାଗିଅଛନ୍ତି—

> 'ଭବ ଦୁଃଖ ନାଶୀ ଭାବ ରଙ୍ଗି ରଙ୍ଗି
> ଶବ୍ଦେ କହୁଅଛୁ ଏହି ମତ, ଲୋ ତଟିନି ।'

ତେଣୁ ଗୋପବନ୍ଧୁ ଭବ-ଦୁଃଖରେ କେତେବେଳେ ହେଲେ କମ୍ପାକାତର ନୁହନ୍ତି । ଏ ଦୁଃଖ ଆସିଛି ବିଦ୍ୟୁତର ଚପଳ ଚମକ ପରି କ୍ଷଣିକ ନିମନ୍ତେ;

ଏହା ତାଙ୍କ ଚିତ୍ତକୁ ବିଦ୍ଧ-ଗ୍ରସ୍ତ କରିପାରିନାହିଁ । ଯେଉଁ ଗିରି ଗିରି ଭାବରେ ଏ ଦୁଃଖର ବିଲୋପ ଘଟିବ, ସେହି ଉନ୍ନତ ଉଦାର ଭାବରାଶି ସକାଶେ ତାଙ୍କର ପ୍ରାଣ ନିରନ୍ତର ବ୍ୟାକୁଳ । ଏହି କ୍ଷଣିକ ବିଷାଦ ମଧ୍ୟରେ ତାଙ୍କର ପ୍ରାଣ ସେହି 'ଶୁଦ୍ଧ-ଜୀବନ' ସକାଶେ ଆକାଂକ୍ଷିତ । ସେ ଶୁଦ୍ଧ ଜୀବନର ସ୍ୱରୂପ କ'ଣ ?

'ପରହିତେ ଏକା ନିରନ୍ତର ବିକା ।
ଧନ୍ୟ ଧନ୍ୟ ତୋ ମହତପଣ, ଲୋ, ତଟିନି,

'ଛବିଶ ବର୍ଷ' ପ୍ରବେଶ କବିତାରେ ନିଜର ଅତୀତକୁ ଚାହିଁ ସେ ମର୍ମନ୍ତୁଦ ବେଦନା ଅନୁଭବ କରିଅଛନ୍ତି ।

'ଅତୀତ କେବଳ ମୋର ରୁକ୍ଷ ସଇକତ
ଦିଶେ ନାହିଁ କାହିଁ ଏକ ଶ୍ୟାମ ଦୂର୍ବାଦଳ ।'

"ଏ ଶ୍ୟାମ ଦୂର୍ବାଦଳ' କଣ କବିଙ୍କର ଧନ, ମାନ, ଯଶ ପ୍ରତିପତ୍ତିର ଆକାଂକ୍ଷା ? ଏ କଣ କେବଳ ଆତ୍ମୀୟ ସ୍ୱଜନମାନଙ୍କ ବିୟୋଗରେ ନିଃସଙ୍ଗ ନିରାଶ୍ରୟ ଜୀବନର କରୁଣ କାହାଣୀ ? ଏ ଦୁଃଖର ପର୍ଯ୍ୟବସନ କଣ କେବଳ ନୈରାଶ୍ୟର ଉତ୍ତପ୍ତ ହାହାକାରରେ ? ଆମେ ଏଠାରେ ଗୋପବନ୍ଧୁଙ୍କୁ 'ବିଷାଦବାଦୀ' ଆଖ୍ୟା ଦିଅନ୍ତୁ, ଯେବେ କେବଳ ସେ ନିଜର ବ୍ୟକ୍ତିଗତ ଜୀବନର ଦୁଃଖ ନିମନ୍ତେ ଅଶ୍ରୁ ଢାଳି ନୀରବ ହାହାକାରରେ ଅବଶିଷ୍ଟ ଜୀବନଟା କଟାଇ ଦେଇଥାନ୍ତେ ? ପୂର୍ଣ୍ଣତାର ଅଭିମୁଖୀ ଏ ଅତୃପ୍ତି ଓ ଅଶାନ୍ତି, ମାତ୍ର ଛବିଶବର୍ଷ ବୟସରେ ଯାହାର ପ୍ରାଣରେ ବେଦନାର ଜ୍ୟୋତିର୍ମୟୀ ରେଖା ଅଙ୍କନ କରେ ଏବଂ ଯେ ସେହି ଉଦାମଯୌବନରେ ଏପରି ଆତ୍ମ-ପ୍ରତ୍ୟୟ ପ୍ରକାଶ କରି କହିପାରେ—

'ଧର୍ମ ଅନୁକୂଳ ଯେବେ ମୋ କାମନାଚୟ
ସାଧନେ ଶକତି ଦିଅ ପ୍ରଭୁ ଦୟାମୟ ।'

ସେ କ'ଣ ନୈରାଶ୍ୟବାଦୀ କବି ? ନୈରାଶ୍ୟବାଦୀ କବିର ସାଧନା ପାଇଁ ଶକ୍ତି-ଆହରଣ ବା କି ଆବଶ୍ୟକତା ? ସେ ତ ଚିର-ଉଦାସୀନ, ସଂସାର ତା ପ୍ରତି ବିଷମୟ-ଆତ୍ମ-ଗୋପନ ତାର ଶ୍ରେୟସ୍କର ପନ୍ଥା । ପଳାୟନହିଁ ତା'ର ସହଜାତ ମନୋବୃତ୍ତି ।

ରେଭେନ୍‌ସା କଲେଜରୁ ବିଦାୟ ନେଲାବେଳେ ସେ କେବଳ ଦୁଃଖରେ ଏତିକି କହି ନାହାନ୍ତି:—

'ପ୍ରଜ୍ଜ୍ୱଳ ଭୂମିର ଧୂଳି ଅଙ୍କ ମଧ୍ୟସ୍ଥ
ନିଃସନ୍ଦେହେ କୋଡ଼େ ଏବେ ସଂସାରେ ଆଶ୍ରୟ'

କିମ୍ବା

'ଦେଲେ ଏ ଯେ ନରଦେହ
ଥିଲେ କି ଥାନ୍ତେ ସ୍ନେହ
ସ୍ୱପ୍ନେ ହେଁ ଦେଖି ନାହିଁ ତାଙ୍କ ସୁଧାମୁଖ
ଆଜନମ କାଳୁ ମୋର ଚିର ସଖା ଦୁଃଖ ।'

କିନ୍ତୁ ଏ ଦୁଃଖ ବି ଚିରସ୍ଥାୟୀ ନୁହେଁ, ଅତି କ୍ଷଣିକ-ଏ ମନୁଷ୍ୟ ପ୍ରାଣର ସ୍ୱାଭାବିକ ଦୁର୍ବଳତା । ରେଭେନ୍‌ସା କଲେଜରୁ ଏତିକରେ ତାଙ୍କର ସମ୍ପର୍କ ତୁଟି ଯିବାର ନୁହଁ । କେବଳ ଦୁଃଖରେ ସେ ଏହି ଅନୁଷ୍ଠାନରୁ ବିଦାୟ ନେଇନାହାନ୍ତି, ବରଂ ତାଙ୍କ ଜୀବନରେ ଏହି ଅନୁଷ୍ଠାନର ଆଦର୍ଶ କିପରି ନିରନ୍ତର ପ୍ରତିଫଳିତ ହୋଇରହିବ, ତା'ର ଶ୍ରୀ ଚରଣରେ କବିଙ୍କର ଏହି ଭିକ୍ଷାଃ—

'ଶିଖାଇଛ ଯେଉଁ ଶିକ୍ଷା
ଦେଇଅଛ ଯେଉଁ ଦୀକ୍ଷା
ନିରନ୍ତର ପ୍ରତିଫଳୁ ତାହା ମୋ ଜୀବନେ
ଏହି ଭିକ୍ଷା ଅକିଞ୍ଚନ କରେ ଶ୍ରୀ ଚରଣେ ।'

ଏ ବିଷାଦ-ଯୋଗର ବୈରାଗ୍ୟ ତତ୍ତ୍ୱ ନୁହଁ, ଏହା କର୍ମ-ଯୋଗର ଭବିଷ୍ୟତ କର୍ମ-ଯୋଜନା ।

ସ୍ୱଦେଶପ୍ରାଣ ଗୋପବନ୍ଧୁ ଉତ୍କଳର ଅତୀତ ଗୌରବର ଅବଲୁପ୍ତି ଦେଖି ଅନେକ କବିତାରେ ତାଙ୍କର ଦୁଃଖାନୁଭୂତି ଅଭିବ୍ୟକ୍ତ କରିଅଛନ୍ତି । ତାଙ୍କ ଚକ୍ଷୁରେ ଓଡ଼ିଶା ଥିଲା ବଡ଼ ଏବଂ ଭବିଷ୍ୟତରେ ସେ ଏପରି ପୁଣି ବଡ଼ହୋଇ ଉଠୁ, ଏହାହିଁ ଥିଲା ତାଙ୍କ ଜୀବନର ସ୍ୱପ୍ନ; କିନ୍ତୁ ଓଡ଼ିଆ ଜାତିର ନିର୍ବେଦ ନିଷ୍କ୍ରିୟ ସ୍ୱଭାବ ଦେଖି ସେ ଅନେକ ସମୟରେ ହତାଶ ହୋଇପଡ଼ୁଥିଲେ । ସେ ବିଷାଦର ଚିତ୍ର ଯୌବନରେ ରଚିତ 'ପ୍ରାର୍ଥନା' କବିତାରେ ଯେପରି ପରିସ୍ଫୁଟ, ପ୍ରୌଢ଼ତାର ପରିପକ୍ୱ କାଳରେ ରଚିତ 'ସ୍ୱଦେଶ-ଚିନ୍ତା' କବିତାର ମଧ୍ୟ ସୁନ୍ଦରଭାବରେ ରୂପାୟିତ । 'ପ୍ରାର୍ଥନା' କବିତାରେ ସେ ଲେଖିଅଛନ୍ତିଃ—

'ଉତ୍କଳ ମାତାର ଅତୀତ ଯଶ
ବିପୁଳ ବିଭବ ବଳ ସାହସ

ସୁମରଣି ଫାଟିଯାଏ ହୃଦୟ
ଦେଖି ଅବସ୍ଥାର ଏ ବିପର୍ଯ୍ୟୟ
ରକ୍ତ ମାଂସ-ଦେହ ଧରି ଯେ,
ଅଧୀର ଆତୁର କିଏ ସେ ନ ହେବ
ଦେଖି ମାତା ଏତେ ସରି ଯେ ।

ଏ ଜାତୀୟ ଦୁଃଖର ପରିସମାପ୍ତି ବି ଦୁଃଖରେ ସୀମାବଦ୍ଧ ନୁହେଁ । ଅତୀତକୁ ଭାଳି ଭାଳି କେବଳ 'ଅରଣ୍ୟ-ରୋଦନ'ରେ କି ଲାଭ, ଯଦି ସେ ଅତୀତକୁ ପୁନର୍ଜୀବିତ କରିବାର ବଳିଷ୍ଠ ପ୍ରେରଣା ହୃଦୟରେ ନାହିଁ ? ଶୂନ୍ୟସ୍ଥାନ ପୂରଣ କରିବାର ଅଭୀପ୍ସା ଯଦି ହୃଦୟରେ ପ୍ରଜ୍ୱଳିତ ହୋଇଉଠିଲା ନାହିଁ, ତେବେ କେବଳ ଲୁହ ଗଡ଼ାଇଲେ କି ଲାଭ ? ଦୁଃଖର ସାର୍ଥକତା ଅଛି ଏହାକୁ ମଙ୍ଗଳମୟ କର୍ମରେ ରୂପାନ୍ତରିତ କରିବାରେ । ତେଣୁ ଦୁଃଖର ସେହି ଘନଘଟା ମଧ୍ୟରେ କବିଙ୍କର ଆଶାନ୍ୱିତ ପ୍ରାଣ ଉଚ୍ଛ୍ୱସିତ କଣ୍ଠରେ ଗାଇ ଉଠିଛି :—

'ସର୍ବ ଧର୍ମଧାମ ପୁଣ୍ୟ ଉତ୍କଳ—
ବଦନ ବିକାଶୁ ଗୁରୁ ବିମଳ,
ଜୀବନ୍ତୁ ଚଉଦିଗେ ନବ ପରାଣ
କରି ଏ କରୁଣା ଆରତତ୍ରାଣ
ନୀଳାଚଳ, ନୀଳାଚଳ ହେ,
ବୋଲି ସୁବିଶାଳ ଭାରତ ଭୁବନେ
ପଡ଼ୁ ସତେ ଚହଳ ଯେ ।

ବିଂଶ ଶତାବ୍ଦୀର ପ୍ରଥମ ଦିବସରେ ବାରବାଟୀର ସ୍ତୁରଷାର ଅବସ୍ଥା କବିଙ୍କ ପ୍ରାଣରେ ସଞ୍ଚାର କରିଛି ମର୍ମଦାହୀ ଦୁଃଖ । ତଥାପି ଏ କବିତାର ଅନ୍ତର୍ନିହିତ ମର୍ମବାଣୀ ବିଷାଦବାଦ ନୁହେଁ । ବରଂ ଏକ ବଳିଷ୍ଠ ଦୀପ୍ତିମନ୍ତ ଆଶାବାଦ ଏବଂ ସାଙ୍ଗଠନିକ ଉତ୍ସାହର ପରିଚୟ ସ୍ପଷ୍ଟ । ସର୍ବବିଧ୍ୱଂସୀ ମହାକାଳକୁ ସେ ଆବେଦନ କରି ଲେଖିଅଛନ୍ତି :—

'ଉତ୍କଳେ ତନୟେ ଦିଅ ନବବଳ
ଉତ୍କଳ ପାଦପେ ରସମୟ ଫଳ

କବି ନିଜେ ସ୍ୱୀକାର କରିଅଛନ୍ତି ଅତୀତର ଏ ସ୍ମୃତିରେ ମନରେ ଅବଶ୍ୟ ଦୁଃଖ ଜାତ ହୁଏ, ତଥାପି ଏ ଦୁଃଖରେ ଆନନ୍ଦ ଅଛି, ସାନ୍ତ୍ୱନା ଅଛି, ଜାତୀୟ

ଗୌରବବୋଧ ଅଛି, ଏହି ଦୁଃଖରୁ ଆସିବ ଜାତିର ଭବିଷ୍ୟତ ଗଠନର କର୍ମ-ପ୍ରେରଣା । କବିଙ୍କ ଭାଷାରେ—

'ପୂର୍ବ ସୁଖସ୍ମୃତି                    ଦୁଃଖେ ମନେ ଆସେ
ବଢ଼ାଏ ବିଷାଦ-ଦ୍ୱିଗୁଣ ପ୍ରାଣେ
ତଥାପି ଉଚିତ                    ବିଷାଦ ସଙ୍ଗୀତ
ସନ୍ତାପେ ସନ୍ତତ ସାନ୍ତ୍ୱନା ଆଣେ ।'

ଯେଉଁ ମୁହୂର୍ତ୍ତରେ ଘୋର ବିଷାଦ ଓ ନୈରାଶ୍ୟରେ ସେ ମୂହ୍ୟମାନ, ଚତୁର୍ଦ୍ଦିଗ ତାଙ୍କ ଦୃଷ୍ଟି ତମସାବୃତ, ସେତେବେଳେ ମଧ୍ୟ ଏ ବିଷାଦକୁ ସେ ଜୀବନର ଧ୍ରୁବ ସତ୍ୟ ବୋଲି ମାନିନେଇ ନାହାନ୍ତି, ଏ ବିଷାଦର କାଳିମାରୁ ସେ ଆବିଷ୍କାର କରିଅଛନ୍ତି ଉଜ୍ଜ୍ୱଳ ଆନନ୍ଦର ଦୀପ୍ତି । ତେଣୁ ପ୍ରକୃତିର ଅନନ୍ତ କୋଡ଼ରେ ନିଜକୁ ବିସର୍ଜନ କରିଦେଇ ସେ ପରମ ଶାନ୍ତିର ଆସ୍ୱାଦ ଲାଭକରିଅଛନ୍ତି । 'ଗିରିଶିଖେ ଲକ୍ଷ୍ୟ ରଖି ଚାଲିବା' ନିମନ୍ତେ ଯେତେବେଳେ ସେ ଦୃଢ଼ସଂକଳ୍ପ ସେତେବେଳେ ବି ସାଧନା-ପଥରେ ସେ ଦୁଃଖ ଓ ନୈରାଶ୍ୟର ସମ୍ମୁଖୀନ ହୋଇ-ଅଛନ୍ତି । ଗିରିଶିଖରେ ଲକ୍ଷ୍ୟରଖି କବିଙ୍କର ଯାତ୍ରାପଥ କେଉଁ ଦିଗକୁ ? ଜୀବନର ଏ ଚରମ ଲକ୍ଷ୍ୟ କ'ଣ ? ପଥ ହୁଏତ କବିଙ୍କର ମାନବ ସେବାଦ୍ୱାରା ଭଗବତ-ପ୍ରାପ୍ତିର ଦୁର୍ଗମ ପଥ । ଏ ପଥରେ କବିଙ୍କର ସାଧନା ସହଜଲଭ୍ୟ ହୋଇନାହିଁ । ଏହି ଅଧ୍ୟାତ୍ମ ସାଧନାରେ କବି ବ୍ୟର୍ଥମନୋରଥ ହୋଇ ଦୁଃଖରେ ଗାଇଅଛନ୍ତି—

'ଆଉ କେତେ ଦିନ ଅନ୍ତେ
ଏ ଦୁସ୍ତର ବାଲିବନ୍ତେ
ନ ଚାଲି ରହିବ ପାଦ ସିନା ଥକାମାରି,
ନ ଦେଖିବ ଜନ ଆଖି
ଘୋର ପନ୍ଥାରେ ଏକାକୀ
ଚାଲିଦିବ ପଛେ ପ୍ରାଣ ବୃଥା ଘାରି ଘାରି ।'

ଯାହାର ଆଦର୍ଶ ଅବିଚଳ, ସାଧନା ଯାହାର ସୁଦୂରପ୍ରସାରୀ, ଲକ୍ଷ୍ୟ ଯାହାର ସୁମହାନ୍, ସେ ସମୟେ ସମୟେ ମାନସିକ ଦୌର୍ବଲ୍ୟରେ ଏପରି ଦୁଃଖାଭିଭୂତ ହୋଇ ପଡ଼େ, କିନ୍ତୁ ଲକ୍ଷ୍ୟଭ୍ରଷ୍ଟ କିମ୍ବା ଆଦର୍ଶବିଚ୍ୟୁତ ହୁଏନାହିଁ । ଏ ଦୁଃଖ ଆସେ କେବଳ ସେ ସାଧନାକୁ ଆହୁରି ଦୃଢ଼ ଓ ସଂଯତ କରିବାପାଇଁ, ଗନ୍ତବ୍ୟ ସ୍ଥାନରେ ପହଞ୍ଚିଯାଇ ଅଧିକ ଶକ୍ତି ଆହରଣ କରିବାପାଇଁ । ତେଣୁ ଦୁଃଖର

ଘନଘଟା ଯେତକ ପ୍ରାଣକୁ ଆକୁଳ କରେ, ଆଶା ଓ ଆନନ୍ଦର ଆଲୋକରେ ମନ ସେହିପରି ଉଦ୍ଭାସିତ ହୋଇଉଠେ । କବି ସେତେବେଳେ କହନ୍ତି:—

ଅନୁସରି ସେହି ଗାନ
କରି ମନେ ଏକ ଧ୍ୟାନ
ଅବଶେଷେ ବସିବ ସେ ଗିରି ଉଚ୍ଚଶିରେ ।'

କିମ୍ବା

'ଚଳେ ପଚ୍ଛେ ଯାଉ ଜୀବ
ଯାହା ହେବ ଦେଖାଯିବ
ଗିରି-ଶିଖେ ଲକ୍ଷ୍ୟ ରଖି ଚଳିବ ମୁଁ ଚିର ।'

ସେତେବେଳେ ହିଁ ପ୍ରତୀତ ହୁଏ, କବି ଆଶାବାଦୀ, ଆନନ୍ଦବାଦୀ ଓ ଜଗତରେ ଯାହା କିଛି ଅଛି, ଆନନ୍ଦରୁ ତା'ର ଉତ୍ପତ୍ତି, ଆନନ୍ଦରେହିଁ ତା'ର ଶେଷ ପରିଣତି ।

ଦୁର୍ଗମ ସାଧନା-ପଥର ସେହି ଶ୍ରାନ୍ତକ୍ଳାନ୍ତ ପଥିକ ତାଙ୍କର ଅସାଧ୍ୟ-ସାଧନରେ ଯେତେବେଳେ ନୈରାଶ୍ୟର ସମ୍ମୁଖୀନ, ସେତେବେଳେ ପ୍ରାଣରେ କି ମର୍ମନ୍ତୁଦ ବେଦନା !

'ମୋ ପଥ ତ ମରୁ, ନାହିଁ ଲତାତରୁ
ନାହିଁ ବାୟୁ, ନାହିଁ ଜଳ ।'

କିନ୍ତୁ ଏ ପଥ ସମ୍ପୂର୍ଣ୍ଣ ମରୁ ନୁହେଁ । ଏ ପଥ ଭଗବତ୍‌-ସାଧନାର ଦୁରନ୍ତ ପଥ ନୁହେ । ଏ କର୍ମର ପଥ ମାନବ-ସେବାର କଣ୍ଟକିତ ପଥ—ଲୋକହିତ ସାଧନର କ୍ଳେଶ ଓ ତ୍ୟାଗମୟ ପଥ, ଏ ପଥରେ ବହୁ ବାଧା ବିଘ୍ନ । ଏହି ସଙ୍କଟ-ସଙ୍କୁଳ ପଥରେ ଯାହା କରୁ କରୁ କବି ଯେଉଁ ନୈରାଶ୍ୟର ସମ୍ମୁଖୀନ ହୋଇ-ଅଛନ୍ତି, ତାହାକୁହିଁ ରୂପକଚ୍ଛଳରେ କହିଅଛନ୍ତି 'ନାହିଁ ବାୟୁ, ନାହିଁ ଜଳ', ଏ ସାଧନା ପଥରେ ଉତ୍ସାହ ଓ ଅଶ୍ୱାସନାଦେବାକୁ କେହି ନାହାନ୍ତି । ଦୂର ଦିଗ୍‌ବଳୟରେ ଆଶାର ସଙ୍କେତ ନାହିଁ । ତେବେ କ'ଣ କା'ପୁରୁଷ ପରି ଏ ପଥକୁ ପରିହାର କରିବାକୁ ହେବ ? ବ୍ୟର୍ଥତାକୁ ଜୀବନର ସାର୍ଥକତା ବୋଲି ଧରି ନେବାକୁ ହେବ ? ତାହା ବିଧାତାଙ୍କର ଇଚ୍ଛା ନୁହେଁ, ସେହିତ ସକଳ କଲ୍ୟାଣର ଆଧାର । ତାଙ୍କର ବିଚିତ୍ର ବିଧାନରେ କର୍ମକ୍ଳାନ୍ତ ଓ ନୈରାଶ୍ୟଜର୍ଜରିତ ପଥିକକୁ 'ହୃଦ୍ୟ ପ୍ରୀତି-ପୂରିତ ମୂର୍ତ୍ତିମତୀ' ହୋଇ ଆସି ଦେଖାଦେଇଛି । ଏ ତାଙ୍କରି ବୋଧହୁଏ

ସ୍ୱର୍ଗଗତା ପତ୍ନୀଙ୍କର ପ୍ରୀତି ସ୍ମୃତି । ପ୍ରୀତି ବିରହିତ ଶୂନ୍ୟ ପ୍ରାଣରେ ଏହି ମନୋରମା ପ୍ରୀତି-ପ୍ରତିମା ଢାଳି ଦେଇଛି ସାର୍ବଜନୀନ ପ୍ରେମର ଅମିୟ ଧାରା । ଯେଉଁ ପ୍ରୀତିର ବନ୍ଧନରେ ସେହି ପ୍ରୀତି-ପ୍ରତିମା ତାଙ୍କୁ କେତେଦିନ ପାଇଁ ବାନ୍ଧି ରଖିଥିଲା, ତାହା ଆଜି ସମଗ୍ର ପୃଥିବୀରେ ଯେପରି ବିକୀର୍ଣ୍ଣ ଓ ପରିବ୍ୟାପ୍ତ ହୋଇ ପଡ଼ିଛି । ସେହି ପ୍ରୀତି-ପ୍ରତିମା ତାଙ୍କ ହୃଦୟରେ ପୁଣି ପବିତ୍ର ବାସନା, ଅଥଚ ସାର୍ବଜନୀନ ପ୍ରେମ ଓ ସେବାଭାବର ସଞ୍ଚାର କରିଛି । ହୃଦୟରେ ଆସିଛି ନବ ବଳ । ଏହାହିଁ ବନ୍ଧୁଙ୍କର ଆଶ୍ୱାସନା । ଏ ଆଶ୍ୱାସନା ଓ ପୁଣ୍ୟ ଉତ୍ସାହରେ କର୍ମକ୍ଳାନ୍ତ ପଥିକର କ୍ଳାନ୍ତି ଦୂର ହୁଏ । ହୃଦୟ ପୁଣି ପ୍ରୀତିପ୍ରବାହରେ ପୁଲକିତ ହୋଇ ଉଠେ । କବିଙ୍କର ଆଉ କର୍ମ-ପଥରେ ଅଗ୍ରସର ହେବା ନିମନ୍ତେ ଦୁଃଖ ନାହିଁ କି ନୈରାଶ୍ୟ ନାହିଁ । କବିଚିତ୍ତ ବର୍ତ୍ତମାନ କର୍ମ ପ୍ରତି ପ୍ରଗାଢ଼ ଅନୁରକ୍ତ । କର୍ମଯୋଗୀର ଏହି ବନ୍ଧୁ—ଆଶ୍ୱାସନା ହିଁ ପରମ ସମ୍ବଳ । ଏ ପ୍ରୀତି-ପ୍ରତିମା କିଛି ଭାବରେ ଆସି ଦେଖାଦେଇ ନିମିଷକ ମଧ୍ୟରେ ଅପସରି ଯାଏ; କିନ୍ତୁ ଦୁଃଖ ଓ ଗ୍ଲାନିର ହଳାହଳକୁ ଆନନ୍ଦ-ରସରେ ପରିଣତ କରିଦିଏ; ନୈଷ୍କର୍ମ୍ୟର ନିଦ୍ରାକୁ ଛିନ୍ନ କରି କବି ଗାଏ—

> 'ତେବେ କର୍ମପଥେ          ବ୍ୟର୍ଥ ମନୋରଥେ
>          ଯିବି ମୁଁ ହେବି କପାଳ
> ଏହି କିଏ କହେ          ବାହ୍ୟ କି ଅନ୍ତରେ
>          ଅଶ୍ୱାସିଣ 'ନାହିଁ' 'ନାହିଁ' ।

ସେତେବେଳେ କବିଙ୍କ ଅନ୍ତରରେ ବିଷାଦର ଧ୍ୱନି ଶୁଣା ଯାଏ ନାହିଁ ? ଅନନ୍ତ ଆଶାରେ, ଉତ୍ସୁକ କର୍ମର ସେ ଦୁର୍ଗମ ପଥ କବିଙ୍କ ପ୍ରତି ବର୍ତ୍ତମାନ ମହାନନ୍ଦମୟ ।

କବି ତ ଅନେକ ଥର କହିଅଛନ୍ତି—ସୁଖ-ଦୁଃଖ ତାଙ୍କର ସମ ସହଚର; ହର୍ଷ-ବିଷାଦ ତାଙ୍କ ପ୍ରତି ସମାନ । ସମ୍ପଦ-ବିପଦ ପ୍ରତି ତାଙ୍କର ସମାନ ଆଦର । ଏ ସକଳ ବିଶ୍ୱବିଧାତାଙ୍କ ଶୁଭ ଆଶୀର୍ବାଦ ; କିନ୍ତୁ ଏତିକି ମାତ୍ର ଦୁଃଖ, ମରତ ନିକଟ ହୋଇଆସୁଛି, ଜୀବନରେ ଅନେକ ବହୁତ କାର୍ଯ୍ୟ କରିବାର ଅଛି । ଏ ବିଷାଦ-ବାଦୀର ବିଳାପ ନୁହେ । ଏହା ବିପୁଳ ଉତ୍ସାହନାମୟ ଆଶାବାଦୀ କର୍ମଯୋଗୀର ଅଭିବ୍ୟକ୍ତି । ଯେତେବେଳେ ତାଙ୍କୁ ଦୁଃଖ ଓ ନୈରାଶ୍ୟରେ ଚତୁର୍ଦ୍ଦିଗ ଅନ୍ଧକାରମୟ ଦେଖାଯାଏ ଏବଂ ଭଗବତ୍ ପ୍ରୀତିର ପୁଣ୍ୟ ପ୍ରେରଣାକୁ ଯେତେବେଳେ ସେ ବଞ୍ଚିତ ବୋଲି ଅନୁଭବ କରନ୍ତି, ସେତେବେଳେ ମଧ୍ୟ ସେ ବିଷାଦରେ ଆତ୍ମ-ସମର୍ପଣ କରି ନାହାନ୍ତି । ସେତେବେଳେ ମଧ୍ୟ ନୈରାଶ୍ୟରେ ତାଙ୍କର ଚେତନା ବୁଡ଼ିନାହିଁ । ସେତେବେଳେ ନିଜକୁ ଆଶ୍ୱାସନା ଦେଇ କହିଅଛନ୍ତି—

'ଉଠୁ ପଡ଼ନ୍ତୁ ତାକେ ଦୁଃଖମୟ ଗୀତ
ଦୁଃଖଗତା ପ୍ରାଣ ପାଉ ଦୁଃଖେ ପ୍ରୀତ
ଦୁଃଖେ ସୁଖେ ମୋର ସମାନ ଆଦର
— ବାଅ, ବେଳଯାଏ ବଢ଼ି;'

ଦୁଃଖ-ସୁଖ ପ୍ରତି ଉଦାସୀନ ଓ ନିର୍ଲିପ୍ତ ରହି କବି କେବଳ ନିଃସ୍ୱାର୍ଥକର୍ମ-ପଥରେ ହିଁ ଜୀବନର ସାର୍ଥକତା ଉପଲବ୍ଧି କରିଅଛନ୍ତି । ଏହି ସାଧନାର ସୁବିମଳ ଆନନ୍ଦର ସ୍ୱାକ୍ଷର ଆମ୍ଭେମାନେ ଯେପରି ତାଙ୍କ କର୍ମମୟ ଜୀବନରେ ଦେଖୁ, ସେହିପରି ତାଙ୍କର କବିତାରେ ବି ଦେଖୁ । ଉତ୍କଳ-ସମ୍ମିଳନୀର ସଭାପତି-ଅଭିଭାଷଣର ଉପସଂହାରରେ କବିଙ୍କର ଏହି ଆଶା ଓ ଆନନ୍ଦବାଦ ଉଜ୍ଜ୍ୱଳରୂପେ ପ୍ରତିଭାତ ।

"ଆମ୍ଭମାନଙ୍କ ସମ୍ମୁଖରେ ଅସଂଖ୍ୟ କାର୍ଯ୍ୟ ରହିଅଛି । ଜୀବନର ଯେ କୌଣସି କ୍ଷେତ୍ରକୁ ଦେଖିଲେ ତାହା ବିସ୍ତୃତ ପତିତ ପ୍ରାନ୍ତର ହୋଇ ପଡ଼ିଅଛି, ତୈଳଶୋଧ କରିବାକୁ ହେବ; ଏଥିରେ ପୁଣି କେତେ ବାଧା ବିପତ୍ତି ଅଛି, ସେ ସବୁ ସହିବାକୁ ହେବ । ପ୍ରାଣରେ ଧୈର୍ଯ୍ୟ ଓ ବିଶ୍ୱାସ ରଖି କ୍ରମାଗତ ଚାଲିବାକୁ ହେବ । ଏଥିରେ ବିଶ୍ରାମ ନାହିଁ, କର୍ମର ବିରାମ ନାହିଁ । ଜାତୀୟ କାର୍ଯ୍ୟ ପଥରେ ସାଧନା ସହଜ ନୁହେଁ ।

'ଦୁର୍ଗମ ପଥ ଏ ଭଜନ ଭୟେ ଛାଡ଼ିଲେ ଯୋଗିଜନ'; କିନ୍ତୁ ଏହା ବୋଲି ଅବିଶ୍ୱାସ, ଅବସାଦ ଓ ନିରାଶାରେ ବିଜଡ଼ିତ ହେବାର ନୁହେଁ । ଭାଇ, ବହୁଦୂରରେ ଏହି ଯେ ନୀଳଚକ୍ର ଉପରେ ଧ୍ୱଜା ଉଡ଼ୁଅଛି ତାହାରି ଉପରେ ଲକ୍ଷ୍ୟ ରଖି ଚାଲିବାକୁ ହେବ । ପଥ ଅନେକ ସ୍ଥଳେ ଦୁସ୍ତର ଏବଂ ଦୁର୍ଗମ । 'ଗଲେ ପଛେ ଯାଉ ଜୀବ । ଯାହା ହେବ ଦେଖାଯିବ ।', ଏହି ପଣ କରିବାକୁ ହେବ ।"

ବିଶ୍ୱକବି ରବୀନ୍ଦ୍ରନାଥ ଦୁଃଖ ସମ୍ବନ୍ଧରେ ଯେଉଁ ଦାର୍ଶନିକ ତତ୍ତ୍ୱର ବ୍ୟାଖ୍ୟାନ ଦେଇଅଛନ୍ତି, ତାହା ଗୋପବନ୍ଧୁଙ୍କ ଦୁଃଖବାଦ ପ୍ରତି ସମ୍ପୂର୍ଣ୍ଣରୂପେ ପ୍ରଯୋଜ୍ୟ । "ଜଗତମଧ୍ୟରେ ଅପୂର୍ଣ୍ଣତା ଯେପରି ପୂର୍ଣ୍ଣତାର ବିପରୀତ ନୁହେଁ; କିନ୍ତୁ ତାହା ଯେପରି ପୂର୍ଣ୍ଣତାର ଗୋଟିଏ ପ୍ରକାଶ, ସେହିପରି ଅପୂର୍ଣ୍ଣତାର ନିତ୍ୟସହଚର ଦୁଃଖ ମଧ୍ୟ ଆନନ୍ଦର ବିପରୀତ ନୁହେଁ, ତାହା ଆନନ୍ଦର ଅଙ୍ଗ । ଅର୍ଥାତ୍, ଦୁଃଖର ପରିପୂର୍ଣ୍ଣତା ଓ ସାର୍ଥକତା ଦୁଃଖ ନୁହେ, ତାହା ଆନନ୍ଦ । ଦୁଃଖ ବି 'ଆନନ୍ଦ-ରୂପମମୃତଂ' କବିତାରେ ମଧ୍ୟ ବିଶ୍ୱକବିଙ୍କର ସେହି ଦୁଃଖଜ ଆନନ୍ଦର ବାଣୀ ଧ୍ୱନିତ—

'ଶରୀରର ଏ ରକ୍ତସ୍ରୋତ ମାତାର ଏ ଅଶ୍ରୁଧାର
ଏର ଯେତେ ମୂଲ୍ୟ ସେ କି ଧରାର ଧୂଳିରେ ହେବେ ହାର ।
ସ୍ୱର୍ଗ କି ହେବେନା କେନା,
ବିଶ୍ୱର ଭଣ୍ଡାରୀ ଶୁଝିବେ ନା ଋଣ
ରାତ୍ରିର ତପସ୍ୟା ସେ କି ଆଣିବେ ନା ଦିନ ।'

ଦେଶମାତୃକାପାଇଁ ଗୋପବନ୍ଧୁଙ୍କର ତିଳ ତିଳ କରି ଏହି ଯେଉଁ ରକ୍ତପାତ, ସ୍ୱରାଜ୍ୟପଥର ଗର୍ତ୍ତ ପୂରଣ କରିବା ନିମନ୍ତେ ଦଧୀଚି ସମ ଏ ଯେଉଁ ତାଙ୍କର ଅସ୍ଥିଦାନ, ଦରିଦ୍ର-ନାରାୟଣଙ୍କପାଇଁ ଏ ଯେଉଁ ଅବାରିତ ଅଜସ୍ର ଅଶ୍ରୁଧାର, ଏ ଯେଉଁ ଅମୂଲ୍ୟ ମାନବିକତା ଓ ହୃଦୟବତ୍ତା ଏ କ'ଣ ସବୁ ଆଜି ଧୂଳିରେ ବିଲୁପ୍ତ ହୋଇଯାଇଛି ? ତାଙ୍କର ଅଶ୍ରୁ ଆମପାଇଁ ସ୍ୱର୍ଗ ରଚନା କରି ଯାଇ ନାହିଁକି ? ଆମର ଅଶ୍ରୁଜଳକୁ ସେ ଆଉରି ସୁନ୍ଦର କରିଯାଇ ନାହାନ୍ତିକି ? ଆଧୁନିକ ଶିକ୍ଷାଦର୍ପିତ ଦାମ୍ଭିକ ମନର ଶୂନ୍ୟ ଆସ୍ଫାଳନର ଅସାରତା ପ୍ରତିପାଦନ କରି ଆମକୁ ଅମୃତପଥର ଆଲୋକ ସେ ଦେଖାଇ ଯାଇ ନାହାନ୍ତିକି ? ଆମେ ଅତି କ୍ଷୁଦ୍ର, ଅତି ନୀଚ, ଅତି ସ୍ୱାର୍ଥସର୍ବସ୍ୱ, ଅତି କୁତ୍ସିତ, ଅତି ସଙ୍କୀର୍ଣ୍ଣ । ଆମେ କେବଳ ଅର୍ଥର ଦାସ—ପ୍ରତିପତ୍ତି ବୋଲି ମନ୍ଦିରେ ଗର୍ବ ଅନୁଭବ କରୁ, ଟୁଟିଣ ଫୁଲାଇ ଚାଲୁ, ତାର ଅନ୍ୟ ନାମ ଲୋକଚକ୍ଷୁର ଅନ୍ତରାଳରେ ବ୍ୟଙ୍ଗବିଦ୍ରୂପ ଓ ଅଟ୍ଟହାସ । ଗୋପବନ୍ଧୁଙ୍କ ରାତ୍ରିର ତପସ୍ୟା ଯଦି ସେ ଉନ୍ନତ ମାନବିକତାର ଦିନ ଆମପାଇଁ ଆଣି ନ ଦିଏ, ତେବେ ସେ ଦୁର୍ଭାଗ୍ୟ ଗୋପବନ୍ଧୁଙ୍କର ନୁହେଁ, ଆମର । ବିଶ୍ୱକବି ରବୀନ୍ଦ୍ରନାଥ ପୁଣି କହିଛନ୍ତି ମନୁଷ୍ୟ ସତ୍ୟ ପଦାର୍ଥ ଯାହା କିଛି ପାଏ, ତାହା ଦୁଃଖଦ୍ୱାରା ପାଏ ବୋଲି, ତା'ର ମନୁଷ୍ୟତ୍ୱ । ଗୋପବନ୍ଧୁ ତାଙ୍କ ଜୀବନର ଯାହା କିଛି ସତ୍ୟ, ତାହା ଏହି ଦୁଃଖ, କ୍ଳେଶ, ତ୍ୟାଗ ଓ ତିତିକ୍ଷାଦ୍ୱାରା ଲାଭ କରିଅଛନ୍ତି । ଏହି ଦୁଃଖଦ୍ୱାରା ସେ ଈଶ୍ୱରଙ୍କୁ ଆପଣାର ଅତି ନିକଟବର୍ତ୍ତୀ କରିପାରି ଅଛନ୍ତି । ଦୁଃଖ ପରେ ସୁଖ ନିଶ୍ଚୟ ଆସିବ, ଏଥିରେ ତାଙ୍କର ସନ୍ଦେହର ଅବକାଶ ନାହିଁ । ତେଣୁ ଦେଶବାସୀଙ୍କୁ ସେ ଆଶ୍ୱାସନା ଦେଇ କହିଅଛନ୍ତି—

"ନ ହୁଅ ନିରାଶ, ନ ହୁଅ ଦୁଃଖିତ,
ଉତ୍କଳର ଦେଖି ଦୁଃଖମୟ ଦିନ ।
ସୁଖ-ଦୁଃଖ ଚକ୍ର ଘୂରେ ନିରନ୍ତର,
ଏକ ପରେ ଆନ ଆସିବ ମୁକର ।"

# ତ୍ରୟୋଦଶ ପରିଚ୍ଛେଦ

## ଜୀବନ-ଦର୍ଶନ

ଜଣେ ବିଶିଷ୍ଟ ପ୍ରତ୍ୟକ୍ଷଦର୍ଶୀଙ୍କ ବିବରଣୀ । ସେ ଗୋପବନ୍ଧୁଙ୍କୁ ଦେଖିବା ପୂର୍ବରୁ କୁଳବୃଦ୍ଧ ମଧୁସୂଦନଙ୍କଠାରୁ ତାଙ୍କର ପ୍ରଶଂସା ଶୁଣିଥିଲେ । ସେ ବିବରଣୀଟି ଏଠାରେ ଅବିକଳ ଉଦ୍ଧାର କରିବାର ଉଦ୍ଦେଶ୍ୟ, ପରୋକ୍ଷ ଓ ଗଳ୍ପଚ୍ଛଳ-ଭାବରେ ଏଥିରେ ଗୋପବନ୍ଧୁଙ୍କ ଜୀବନ-ଦର୍ଶନ ଅନ୍ତର୍ନିହିତ । ପ୍ରତ୍ୟକ୍ଷଦର୍ଶୀ ଶ୍ରୀ ବୀରକିଶୋର ଦାସ ଲେଖିଛନ୍ତି, "ଉତ୍କଳ-ସମ୍ମିଳନୀ କାଲି କଟକରେ ବସିବ । ମଧୁବାବୁଙ୍କ କୋଠିରେ କନିକାରାଜା, ୰ବିଚିତ୍ରାନନ୍ଦବାବୁ, ଭଗୁବାବୁ (ଶ୍ରୀଯୁକ୍ତ ଭଗୀରଥ ମହାପାତ୍ର) ୰ ବ୍ରଜସୁନ୍ଦର ଦାସ, ୰ ପାରେଶ୍ୱରବାବୁ (ଶ୍ରୀଯୁକ୍ତ ପାରେଶ୍ୱର ମହାନ୍ତି, ଓକିଲ) ପ୍ରମୁଖ ବହୁ ବିଶିଷ୍ଟ ଲୋକ ତଳମହଲାରେ ବସିଥାନ୍ତି । ସମ୍ମିଳନୀ ବିଷୟରେ ଆଲୋଚନା ଚାଲିଥାଏ । ମଧୁବାବୁ ଉପର ମହଲାରୁ ଓହ୍ଲାଇ ଆସି ଗୁରୁଗମ୍ଭୀରସ୍ୱରରେ କହିଲେ, 'ଓ ହୋ, ବିଚିତ୍ରାନନ୍ଦ, ଦେଖ ତମ କଟକର କଲେଜପିଲା ନ ଆସିଲେ ନ ଆସନ୍ତୁ । ମଙ୍ଗରାଜ କେତେ ମଙ୍ଗ ମୋଡ଼ିବ ମୋଡ଼ୁ । ଏଇ ଦେଖ, ଗୋପବନ୍ଧୁ ଟେଲିଗ୍ରାମ ପଠାଇଛି ସତ୍ୟବାଦୀରୁ । କାଲି ଶିକ୍ଷକମାନେ ଶହ ଶହ ସ୍ୱେଚ୍ଛାସେବକ ନେଇ ଏଠାରେ ଆସି ପହଞ୍ଚିବେ । ଦେଶର ଯଦି କିଛି ହେବ, ତାହାହେଲେ ତା' ଦ୍ୱାରା ହେବ । କବି ଲେଖିଛନ୍ତି—

"କୋଟିର ସନ୍ତାନ ମାଗୋ ଧରିଅଛୁ କୋଳେ
ଗୋଟିଏ ମନୁଷ୍ୟ କାହିଁ ନ ଦେଖିଲି ଡୋଳେ ।"

ମୁଁ ତାଙ୍କୁ କହିବି ସେ ତାକୁ ସଂଶୋଧନ କରନ୍ତୁ—

"କୋଟିଏ ସନ୍ତାନ ମାଗୋ ଧରି ଅଛୁ କୋଳେ
ଗୋଟିଏ ମନୁଷ୍ୟ ଆଜି ଦେଖିଲି ମୁଁ ଡୋଳେ ।।"

(ଦ୍ୱାବିଂଶତିତମ ଗୋପବନ୍ଧୁ
ବାର୍ଷିକ ଶ୍ରାଦ୍ଧଦିବସ-ସଂଖ୍ୟା—ସମାଜ । )

ଏହା ୧୯୧୮ ମସିହାର ଉତ୍କଳସମ୍ମିଳନୀ । ସ୍ୱର୍ଗତ ଫକୀରମୋହନ ସେନାପତି ଏହି ସମ୍ମିଳନୀର ପୁରୋଧା । 'ମଙ୍ଗରାଜ' ହେଉଛନ୍ତି ସ୍ୱର୍ଗତ ଯଦୁମଣି ମଙ୍ଗରାଜ, ତତ୍କାଳୀନ ଜନନେତା । ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନେ ଏହି ସମ୍ମିଳନୀରେ ସ୍ୱେଚ୍ଛାସେବକରୂପେ ଯୋଗଦେଇଥିଲେ । ଏହାର କିଛି ଦିନ

ପୂର୍ବରୁ ଏହି ଗୁରୁମାନଙ୍କର ବାର୍ଷିକ ସମ୍ମିଳନୀରେ ଯୋଗଦେଇ ସେମାନଙ୍କର ସ୍ୱାବଲମ୍ବନଶୀଳତା, କର୍ତ୍ତବ୍ୟବୋଧ ଏବଂ ଶୃଙ୍ଖଳାଜ୍ଞାନରେ ପ୍ରୀତ ହୋଇ ମଧୁବାବୁ ଗୋପବନ୍ଧୁଙ୍କୁ ଆନନ୍ଦରେ କୁଣ୍ଢାଇ ପକାଇ କହିଥିଲେ ଗୋପବନ୍ଧୁ, ନାଳନ୍ଦାଟାଏ ତ ଗଢ଼ିଦେଲୁ! ଗୋପବନ୍ଧୁ କହିଲେ-ମୁଁ ନୁହେଁ, ନୀଳକଣ୍ଠ ।

ସେହି ଉତ୍କଳ-ସମ୍ମିଳନୀରେ ଗୋପବନ୍ଧୁଙ୍କର ବକ୍ତୃତା ଦେବାର ନ ଥିଲା, କିନ୍ତୁ ସମବେତ ଜନତା ବାରମ୍ବାର ଅନୁରୋଧ କଲେ, ଗୋପବନ୍ଧୁବାବୁ ବକ୍ତୃତା ଦିଅନ୍ତୁ । ତେଣୁ ମଧୁବାବୁ ଗୋପବନ୍ଧୁଙ୍କୁ ବକ୍ତୃତା-ମଞ୍ଚରେ ଠିଆକରେଇ ଦେଇ କହିଲେ, "ଗୋପବନ୍ଧୁ ଆଉ ଗୋପ୍ୟ ହୋଇ ରହି ନ ପାରେ । ତାହାଙ୍କର ବକ୍ତୃତା ଦେବାର ନ ଥିଲା, ମାତ୍ର ଲୋକପ୍ରାଣରେ ମୋ ଗୋପବନ୍ଧୁ ସ୍ଥାନପାଇଛୁ । ସଭାପତିଙ୍କ ଅନୁମତି ହେଉ ।" ଗୋପବନ୍ଧୁ ସେ ଦିନ ଉତ୍କଳସମ୍ମିଳନୀର ପ୍ରକାଶ୍ୟ ଅଧିବେଶନରେ ଦେଶମିତ୍ରସମ୍ପର୍କରେ ଯେଉଁ ଓଜସ୍ୱିନୀ ଓ ପ୍ରାଣସ୍ପର୍ଶୀ ବକ୍ତୃତା ଦେଇଥିଲେ ତାହା ସମଗ୍ର ଜନତାର ନୟନକୁ ଅଶ୍ରୁସିକ୍ତ କରିଥିଲା । ଜଡ଼ପ୍ରାଣରେ ଜାତୀୟତାର ଅପୂର୍ବ ସ୍ପନ୍ଦନ ସଞ୍ଚାର କରିଥିଲା । 'ଗୋଟିଏ ମନୁଷ୍ୟ କିନ୍ତୁ ନ ଦେଖିଲି ତୋଳେ' ଏ କବିତାର ରଚୟିତା ଭକ୍ତକବି ମଧୁସୂଦନ ରାଓ ଏବଂ 'ଗୋଟିଏ ମନୁଷ୍ୟ ଆଜ ଦେଖିଲି ମୁଁ ତୋଳେ' ସଂଶୋଧିତ କବିତାର 'ଗୋଟିଏ ମନୁଷ୍ୟ' ହେଉଛନ୍ତି ଗୋପବନ୍ଧୁ ।

ଗୋପବନ୍ଧୁଙ୍କ ଜୀବନ ଦର୍ଶନ ବିଚାର କରିବାକୁ ହେଲେ ଆମ୍ଭମାନଙ୍କୁ ଚିନ୍ତା କରିବାକୁ ହେବ, ମଧୁବାବୁଙ୍କ ପରି ଜଣେ ଦେଶମାନ୍ୟ ନେତା ଓଡ଼ିଶାରେ ଏତେ ବିଶିଷ୍ଟ ଲୋକ ଥାଉ ଥାଉ ଗୋପବନ୍ଧୁଙ୍କୁ କାହିଁକି 'ଗୋଟିଏ ମନୁଷ୍ୟ' ବୋଲି କହିଲେ । ଏହି 'ଗୋଟିଏ ମନୁଷ୍ୟ'ର ଅନନ୍ୟସାଧାରଣତ୍ୱ କେଉଁଠାରେ ? ଓଡ଼ିଶାର କେତେକ ବିଶିଷ୍ଟ ଲୋକଙ୍କ ସମ୍ମୁଖରେ ଗୋପବନ୍ଧୁଙ୍କୁ ଟେକାଟେକି କରି କହିବାର ଆବଶ୍ୟକତା ସେଠାରେ ମଧୁବାବୁଙ୍କର ମୋଟେ ନ ଥିଲା । କାହିଁକି ମଧୁବାବୁ ତାଙ୍କର ତେଜସ୍ୱିତା ଓ ସ୍ପଷ୍ଟବାଦିତାଯୋଗେ ସେତେବେଳେ ସର୍ବତ୍ର ସୁବିଦିତ । ସ୍ପଷ୍ଟଭାବରେ କହିବାକୁ ଗଲେ, ମଧୁବାବୁ ଗୋପବନ୍ଧୁଙ୍କୁ ଯେପରିଭାବରେ ଚିହ୍ନିଥିଲେ, ଅନ୍ୟ କୌଣସି ବିଶିଷ୍ଟ ଉତ୍କଳୀୟ ସେତେବେଳେ ସେପରି ଚିହ୍ନିପାରି ନ ଥିଲେ । ପରେ ଅବଶ୍ୟ ଚିହ୍ନିଛନ୍ତି । ଏବେ ତାଙ୍କ ମୃତ୍ୟୁପରେ ଲୋକେ କ୍ରମେ କ୍ରମେ ଆଉରି ଭଲଭାବରେ ତାଙ୍କର ଅସାଧାରଣ ମନୁଷ୍ୟତ୍ୱ ଉପଲବ୍ଧି କରୁଅଛନ୍ତି ଏବଂ ଯୁଗ ଯୁଗ ଧରି କରୁଥିବେ ମଧ୍ୟ । ଏ ମନୁଷ୍ୟତ୍ୱର ଅନ୍ତରାଳରେ ଥିଲା ତାଙ୍କର ଅନ୍ତରର କେତେକ ପ୍ରତିଷ୍ଠିତ ଭାବ । ଜୀବନର କେତେକ ମୂଳମନ୍ତ୍ର ଓ ଉନ୍ନତ ଉଦାର ନୀତି ।

ମଧୁସୂଦନ ଗୋପବନ୍ଧୁଙ୍କୁ ଲକ୍ଷ୍ୟ କରି ଦିନେ ଯାହା କହିଥିଲେ 'ଗୋଟିଏ ମନୁଷ୍ୟ ଆଜି ଦେଖିଲି ମୁଁ ତୋଳେ', ଠିକ୍ ସେହିପରି ଗୋଟିଏ କଥା ତାଙ୍କ ସମ୍ବନ୍ଧରେ ଆଣ୍ଡ୍ରୁଜ ସାହେବ କହିଥିଲେ, 'His pity for the villagers was a beautiful thing to witness'—ଗ୍ରାମବାସୀଙ୍କ ପାଇଁ ତାଙ୍କର କରୁଣା ଏକ ପରମ ରମଣୀୟ ଦ୍ରଷ୍ଟବ୍ୟ ଜିନିଷ, ଏ ଦୁଇଟି କଥା ଏକ। ମଧୁସୂଦନ ସତ୍ୟବାଦୀରେ ଗୋପବନ୍ଧୁଙ୍କୁ କୁଣ୍ଢାଇ ପକାଇ ଯେପରି କହିଥିଲେ, 'ଗୋପବନ୍ଧୁ, ଗୋଟିଏ ନାଳନ୍ଦା ଗଢ଼ିଦେଲୁ', ସେହିପରି ୧୯୨୫ ମସିହାରେ ପୁରୀ ଜିଲ୍ଲାର ଗର୍ଗବାଟି ନଦୀକୂଳର ଗୋଟିଏ ବନ୍ୟାଗ୍ରସ୍ତ ଅଞ୍ଚଳରୁ ଫେରିଆସି ସତ୍ୟବାଦୀରେ ଦିନେ ରାତିରେ ଶୋଇବାପୂର୍ବରୁ ଆଣ୍ଡ୍ରୁଜ ସାହେବ ଗୋପବନ୍ଧୁଙ୍କୁ ଯାକିଧରି 'May God help the distressed people, May God bless you' କହି ଈଶ୍ୱରଙ୍କୁ ପ୍ରାର୍ଥନା କରିଥିଲେ। ଦୁର୍ଭିକ୍ଷପୀଡ଼ିତ ନିରାଶ୍ରୟ ଲୋକଙ୍କ ନିମନ୍ତେ ସେଦିନ ନିର୍ଜନ ରାତିରେ ଦୁଇଜଣ ମହାମାନବଙ୍କ ଲୋତକଧାରା ମିଶି ଏକାକାର ହୋଇ ଯାଇଥିଲା। ଏପରି ଦୃଶ୍ୟ ଏ ଜଗତରେ ଖୁବ୍ କମ୍ ଦେଖାଯାଏ।

ବାସ୍ତବରେ ଗୋପବନ୍ଧୁ ସେତେବେଳେ ଓଡ଼ିଶାର 'ଗୋଟିଏ ମଣିଷ' ଥିଲେ, ଏବେ ମଧ୍ୟ ସେ ମାନବିକତା ଅନତିକ୍ରମଣୀୟ ଓ ଅପରାଜେୟ ହୋଇ ରହିଛି। ଏହିର କାରଣ ଗୋପବନ୍ଧୁ ଗୋଟିଏ ନିର୍ଦ୍ଦିଷ୍ଟ ନୀତିରେ ତାଙ୍କ ଜୀବନକୁ ନିୟମିତ କରୁଥିଲେ; କିନ୍ତୁ ଏ ନୀତି ଥିଲା ତାଙ୍କର ସହଜାତ ଧର୍ମବୋଧ। ଗୋଟିଏ ଗଭୀର ଈଶ୍ୱର ବିଶ୍ୱାସ କିମ୍ବା ଆଧ୍ୟାତ୍ମିକତା ତାଙ୍କ ପ୍ରାଣକୁ ଅତି ଉଦାର ଓ ମହିମାନ୍ୱିତ କରି ବାଲ୍ୟକାଳରୁ ଗଢ଼ିଥିଲା। ତେଣୁ ତାଙ୍କର ଦୃଷ୍ଟିଭଙ୍ଗୀ ଥିଲା ବ୍ୟାପକ। ସାଧନା ଥିଲା ବହୁମୁଖୀ। ସର୍ବତ୍ର ସେ ଈଶ୍ୱରଙ୍କର ସତ୍ତା ଅନୁଭବ କରୁଥିଲେ। ବ୍ୟକ୍ତିଠାରେ ଯେପରି ସେ ବିଭୂତି ଦେଖି ପାରୁଥିଲେ, ଜାତିକୁ ମଧ୍ୟ ସେହିପରି ଭଗବାନଙ୍କର ପ୍ରତିମୂର୍ତ୍ତି ବୋଲି ମନେକରୁଥିଲେ। ସଙ୍କୋଚଧର୍ମୀ ଭେଦଭାବ ସେ ବିଶାଳ ହୃଦୟରେ ସ୍ଥାନ ପାଇପାରୁ ନ ଥିଲା। ଈଶ୍ୱରଙ୍କର ସତ୍ତା ନିଜ ଅନ୍ତରରେ ଅହରହ ଅନୁଭବ କରୁଥିବାରୁ ପରସ୍ପର ଭେଦଭାବରୁ ସେ ବହୁଦୂରରେ ଥିଲେ। ନରକୁ ନାରାୟଣ ମନେ କରି ସେହିମାନଙ୍କ ସେବା ପୂଜାରେ ଜୀବନ ସମର୍ପଣ କରି ଦେଇଥିବାରୁ ଯେଉଁଠାରେ ଯେ ମନୁଷ୍ୟର ଦୁଃଖ-ଦୁର୍ଦ୍ଦଶା ଦେଖୁଥିଲେ, ତାହା ଦୂରକରିବା ନିମନ୍ତେ ସକଳ ବିପଦ ବରଣକରିବାକୁ ପ୍ରସ୍ତୁତ ଥିଲେ। ଗୋପବନ୍ଧୁଙ୍କର ଜାତିପ୍ରୀତି କିମ୍ବା ଦେଶାତ୍ମବୋଧ ସୁଦୃଢ଼ପ୍ରବାହ ଥିଲା। ସେ ଉତ୍କଳର ସେବାରେ ବିଶ୍ୱସେବା କରୁଥିଲେ। ଅନ୍ୟାନ୍ୟମାନଙ୍କ ପରି ଜୀବନକୁ ଯେ ଭୋଗ-ବିଳାସରେ କଟାଇଦେବାକୁ ଇଚ୍ଛା କରୁ ନ ଥିଲେ। ଓକିଲାତି ପାସ୍ କରିଥିଲେ।

ସେତେବେଳେ ଓଡ଼ିଶାରେ ଅଇନଜୀବୀଙ୍କ ସଂଖ୍ୟା ଅଳ୍ପ ଥିଲା । ବ୍ୟବସାୟ କରି ଅଜସ୍ର ଅର୍ଥ ସେ ସେତେବେଳେ ଉପାର୍ଜନ କରି ସମାଜରେ ପ୍ରାଧାନ୍ୟ ଓ ପ୍ରତିପତ୍ତି ଜଣେ ସାଧାରଣ ଧନଶାଳୀ ବ୍ୟକ୍ତିଙ୍କପରି ବିସ୍ତାର କରିପାରିଥାନ୍ତେ; କିନ୍ତୁ ତାଙ୍କର କି ଦରକାର ଥିଲା, ଦେଶ-ସେବାରେ ଜୀବନକୁ ଏପରିଭାବରେ ଉତ୍ସର୍ଗ କରିଦେବା ? ୧୯୧୯ ମସିହାରେ ପୁରୀ ଜିଲାର ଗୋଟିଏ ଦୁର୍ଭିକ୍ଷ-ପୀଡ଼ିତ ଅଞ୍ଚଳରେ ମାସ ମାସ କାଳ କଟାଇ ଫେରିଆସିଲା ପରେ ତତ୍କାଳୀନ ସତ୍ୟବାଦୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ସ୍ୱର୍ଗତ ଶ୍ରୀ କୃପାସିନ୍ଧୁ ମିଶ୍ରଙ୍କୁ ସେ କହିଥିଲେ, "କୃପାସିନ୍ଧୁ, ଏ ସ୍କୁଲ ବନ୍ଦ କରିଦିଅ, ଏହାର ଛାତ୍ରମାନେ ଯାହାଙ୍କର ସେବା କରିଥାନ୍ତେ ସେମାନେ ତ ଆଜି ଦୁର୍ଭିକ୍ଷରେ ପୋକମାଛି ପରି ଟଳି ପଡ଼ୁଛନ୍ତି, ଏ ଜାତି ତ କ୍ରମେ ଭୂପୃଷ୍ଠରୁ ନିଶ୍ଚିହ୍ନ ହେବାକୁ ବସିଛି, ଏମାନେ କାହାର ସେବା କରିବେ ଯେ, ତୁମେ ଏ ସ୍କୁଲ ରଖିବ ?" ବ୍ୟକ୍ତି ନିମନ୍ତେ ଅନୁଷ୍ଠାନ ନୁହେଁ, ଅନୁଷ୍ଠାନର ପ୍ରୟୋଜନୀୟତା ସମଗ୍ର ଜାତିର ସମୃଦ୍ଧି-କଲ୍ୟାଣ ନିମନ୍ତେ, ଦେଶରେ ମାନବିକତାର ପ୍ରସାର ଓ ପ୍ରତିଷ୍ଠା ନିମନ୍ତେ, ଜୀବନର ଏ ଦର୍ଶନ, ସେତେବେଳେ ମଧୁବାବୁଙ୍କ ବ୍ୟତୀତ ଓଡ଼ିଶାରେ ଅତି ଅଳ୍ପଲୋକେ ବୁଝିଥିଲେ ବୋଲି ସେଦିନ କହିଥିଲେ 'ଗୋଟିଏ ମନୁଷ୍ୟ ଅଛି ଦେଖିଲି ମୁଁ ଡୋଳେ ।' ଗୋପବନ୍ଧୁଙ୍କଠାରେ ବିଭୁପ୍ରୀତି ଓ ସ୍ୱଦେଶ-ପ୍ରୀତି ମଧ୍ୟରେ କୌଣସି ତାରତମ୍ୟ ନ ଥିବାରୁ ସେ ଉପାସନା କଲାବେଳେ ଯେପରି ଭାବ-ବିହ୍ୱଳ ହୋଇ ଉଠୁଥିଲେ, ସେହି ଭାବ-ବିହ୍ୱଳତା ଓ ଐଶୀ ଉନ୍ମାଦନାରେ ସେ କର୍ମକ୍ଷେତ୍ରରେ ଆତ୍ମଶକ୍ତି ନିୟୋଜିତକରି ଜନ-ସେବାରେ ନିଜ ଜୀବନକୁ କୃତାର୍ଥ ମଣୁଥିଲେ । ସତ୍ୟ ଓ ଶ୍ରେୟବୋଧର ପରମ ଉପାସକ ଥିଲେ ଗୋପବନ୍ଧୁ । ରାଜନୈତିକ ସ୍ୱାଧୀନତା ତାଙ୍କ ପକ୍ଷରେ କୌଣସି ବାହ୍ୟ ଜିନିଷ ନ ଥିଲା, ଏହା ଥିଲା ଅନ୍ତରର କଥା, ଏହା ବିଭୁଭାବ । ଥରେ ପ୍ରାଣରେ ଏ ବିଭୁଭାବର ଆବିର୍ଭାବ ଘଟିଲେ ତାହାକୁ ଦମନ କରିବାର ଶକ୍ତି ଏ ପୃଥିବୀରେ କାହାରି ନାହିଁ, ଏ ଅଟଳ ବିଶ୍ୱାସ ତାଙ୍କର ଥିଲା । ଅସହଯୋଗ ଆନ୍ଦୋଳନର କ୍ରମବର୍ଦ୍ଧିଷ୍ଣୁ ପ୍ରସାରକୁ ଲକ୍ଷ୍ୟକରି ସେ ଲେଖିଛନ୍ତି—

"ଦମନ-ପବନେ ଥରେ ଜଳିଲେ ପାବକ
ମାନେ ନାହିଁ ବେତ୍ର ଶୂଳ କୃପାଣ ସାୟକ ।
ଉଠେ ସେ ଦାବାଗ୍ନି କ୍ରମେ ମହାରୁଦ୍ରବେଶେ
ଭୀଷଣ ବିପ୍ଳବ ବାତ୍ୟା ବହେ ସାରାଦେଶେ ।"

କରୁଣା ଓ କର୍ମ, ଏ ଉଭୟର ସମନ୍ୱୟରେ ତାଙ୍କର ଜୀବନଦର୍ଶନ ଗଠିତ । ଏ କର୍ମ ପୁଣି କେତେବେଳେ ଗଠନାତ୍ମକ, କେତେବେଳେ ବା ବିଦ୍ରୋହାତ୍ମକ ।

ଜନତାର ଦୈବୀ ଓ ମାନୁଷୀ ଦୁର୍ବିପାକରେ କେତେବେଳେ ଚକ୍ଷୁରୁ ଅଶ୍ରୁଧାର ନିଃସାରିତ, କେତେବେଳେ ଅନ୍ୟାୟ, ଅଧର୍ମ ଓ ଶାସକଗୋଷ୍ଠୀର ବୀଭତ୍ସ ପାପାଚାର ଦେଖି ସେହି ଚକ୍ଷୁରୁ ଅଗ୍ନିସ୍ଫୁଲିଙ୍ଗ ବହିର୍ଗତ। ଏହି ସୌମ୍ୟ ଓ କାନ୍ତ, ରୁଦ୍ର ଓ ସୁନ୍ଦର, କଠିନ ଓ କର୍କଶ, ପରସ୍ପର ବିରୋଧୀ ଉଭୟ ଗୁଣର ପଶ୍ଚାତ୍‌ପଟରେ ପ୍ରେରଣାର ଅଫୁରନ୍ତ ଉତ୍ସସ୍ୱରୂପ ଥିଲା ତାଙ୍କର ସାର୍ବଜନୀନ ଓ ସୃଜନଶୀଳ ପ୍ରେମ।

ଗୋପବନ୍ଧୁ ଥିଲେ ଜଣେ ଉତ୍କୃଷ୍ଟ ସମାଜବାଦୀ। ଏଇ ଦଶବର୍ଷ ତଳେ ଆନ୍ଧ୍ର ମହିଳାସଭାର ରଜତଜୟନ୍ତୀ ଉତ୍ସବରେ ରାଷ୍ଟ୍ରପତି ଡକ୍‌ଟର ରାଧାକିଷ୍ଣନ କହିଥିଲେ, "କରୁଣା ଆମକୁ ମଣିଷରୂପେ ଗଢ଼େ। ଅନ୍ୟଗୁଣ ଆମକୁ ପଶୁ କରିପକାଏ। ଅପର ସହିତ ଶ୍ରଦ୍ଧା ଏବଂ ସମ୍ମାନର ସହିତ ବ୍ୟବହାର କରିବାର ଗୁଣକୁ ବିକଶିତ କରିବା ନିତାନ୍ତ ଦରକାର। ସମାଜବାଦ ସମ୍ବନ୍ଧରେ ବଡ଼ ବଡ଼ କଥା ଆମେ କହୁଛୁ; କିନ୍ତୁ ପ୍ରକୃତ ସମାଜବାଦ ରହିଛି ଅନ୍ୟମାନଙ୍କ ସହିତ ଶ୍ରଦ୍ଧା ଓ ସମ୍ମାନର ସହିତ ବ୍ୟବହାର କରିପାରେ।" ପୃଥିବୀର ଜଣେ ଅସାମାନ୍ୟ ମନୀଷାସମ୍ପନ୍ନ ଦାର୍ଶନିକଙ୍କର ଦେଶକାଳ ପାତ୍ରୋପଯୋଗୀ ଏ ଉକ୍ତି କେବଳ ଗୋପବନ୍ଧୁଙ୍କ ସାହିତ୍ୟରେ ପ୍ରକଟିତ ହୋଇନାହିଁ; ତାଙ୍କର ସେବାମୟ ଜୀବନର ମୂଳଭିତ୍ତି ହେଉଛି ଏହି ମାନବଶ୍ରଦ୍ଧା, ଜନସାଧାରଣଙ୍କ ପ୍ରତି ଏହି ନିଷ୍କପଟ ପ୍ରେମ।

'ପ୍ରେମଭାବେ ଯା'ର ଅନ୍ତର ପୂରିତ
ସର୍ବ ପ୍ରାଣୀ-ହୃଦ ତା ହୃଦେ ଅଙ୍କିତ।'

'ବନ୍ଦୀର ଆତ୍ମକଥା'ରେ ଏ ଲୋକ-ଶ୍ରଦ୍ଧା, ଏହି ମାନବୀୟ ମମତା ଓ ପ୍ରୀତି ଛତ୍ରେ ଛତ୍ରେ ଅଭିବ୍ୟକ୍ତ। ଦୁଃଖିନୀ ଜନନୀକୁ ଶାସକର ଅତ୍ୟାଚାରରେ ଆକୁଳ ନ ହେବାକୁ ଆଶ୍ୱାସନା ଦେଇ ସେ ମମତା-ମେଦୁର କଣ୍ଠରେ ଗାଇ-ଅଛନ୍ତି......

"ଦୁଃଖିନୀ ଜନନୀ ନ ହୁଅ ଆତୁର
ହେଉ ନିର୍ଯ୍ୟାତନ ଧନ ଦ୍ରବ୍ୟ ଚୂର
ଧର୍ମପକ୍ଷେ ଜୟ ସଦା ସୁନିଶ୍ଚୟ,
ରଖ ହୃଦୟରେ ଏ ଦୃଢ଼ ପ୍ରତ୍ୟୟ
× × ×
ମୋ ଶୁଭ କାମନା, ସ୍ନେହ ନେତ୍ରଜଳ
ଘେନ, ଏଥି ମୋର ଏତିକି ସମ୍ବଳ।"

ଜେନାପୁରର ଲୋକଙ୍କଠାରୁ ବିଦାୟ ନେଇ ଲେଖିଛନ୍ତି—

"ସୁବିଧା ଥିଲେ ମୁଁ ଓହ୍ଲାନ୍ତି ଏଠାରେ
ଦେଖିଯାନ୍ତି ଜେନାପୁର ଏବେ ବାରେ ।
ଭୁଲି ବ୍ରାହ୍ମଣୀର ତୀର ଜନପଦେ,
ବିଦାୟ ନିଅନ୍ତି କହି ପଦେ ପଦେ ।"

ତାଙ୍କର ଜୀବନଦର୍ଶନମୂଳରେ କେବଳ ଧର୍ମବୋଧ କିମ୍ବା ଆଧ୍ୟାତ୍ମିକତା ନାହିଁ, ଅଛି 'ଶିବରାତ୍ରିର ଧର୍ମ' । 'ଜଗଦ୍ଧିତାୟ କୃଷ୍ଣାୟ' ଏବଂ 'ନହି କଲ୍ୟାଣକୃତ୍ କଶ୍ଚିତ୍ ଦୁର୍ଗତିଂ ତାତ ଗଚ୍ଛତି'—ଏହି ଦୁଇଟି ମହାର୍ଘବାଣୀ ଗୋପବନ୍ଧୁଙ୍କ ଜୀବନକୁ ନିରନ୍ତର ନିୟନ୍ତ୍ରିତ କରିଥିବା ପରି ମନେ ହୁଏ । ଭଗବତ୍-ସେବା ହିଁ ମାନବସେବା, ଏହା ହିଁ ଥିଲା ତାଙ୍କ ଜୀବନର ମୂଳମନ୍ତ୍ର । କଲ୍ୟାଣକାରୀର ଦୁଃଖ ନାହିଁ, ବିପଦ ନାହିଁ, ଏହାହିଁ ଥିଲା ତାଙ୍କର ବଳିଷ୍ଠ ଆତ୍ମ-ପ୍ରତ୍ୟୟ ; ଜୀବନର ଉଚ୍ଚତର ସ୍ତରକୁ ଆରୋହଣ କରିବା ଥିଲା ତାଙ୍କର ଜୀବନ ସାଧନକଳା । ତେଣୁ ଶିବରାତ୍ରି କବିତାରେ ସେ ଦେଶ-ବାସୀଙ୍କୁ ନିଷ୍ଠାପର ଓ ନିରବଚ୍ଛିନ୍ନ ଜନକଲ୍ୟାଣ-ଧର୍ମରେ ଆତ୍ମୋତ୍ସର୍ଗ କରିବାକୁ ଉଦ୍‌ବୋଧନ ଦେବାକୁ ଯାଇ ଯେପରି ଲେଖିଅଛନ୍ତି—

"ଉଜାଗର ରହି କର ତାଙ୍କ ପ୍ରିୟକର୍ମ
ପାଇବାକୁ ବାଞ୍ଛା ଯେବେ ଶିବରାତ୍ରିଧର୍ମ ।"

ଧର୍ମପଦ ମୁଖରେ ସେହି କର୍ମନିଷ୍ଠାର ମହତ୍ତ୍ୱ ବ୍ୟକ୍ତ କରି ଲେଖିଅଛନ୍ତି—

"ମୁହୂର୍ତ୍ତେ ମାତର ଉଜ୍ଜ୍ୱଳ ପ୍ରଖର
ଶିଖାଟେକ ହୁତାଶନ
ଜାଳି ଯେବେ କରେ ଆଲୋକ ଉତ୍ତାପ
ଚଉଦିଗେ ବିତରଣ,
ଲିଭୁ ସେ କ୍ଷଣକେ ତଥାପି ଏ ଲୋକେ
ରହେ ତା ଆଦରପଣ
କି ଲୋଡ଼ା ତହିଁରେ ରହେ ଯେ ମହୀରେ
କୁହୁଳି ସହସ୍ର ବର୍ଷ ?"

## ଚତୁର୍ଦ୍ଦଶ ପରିଚ୍ଛେଦ

### ଲେଖନଶୈଳୀ

୧୯୧୯ ମସିହାର ଶେଷଭାଗ । ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ର ସେତେବେଳେ ଚକ୍ରଧରପୁର ହାଇ ଇଂରେଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ । ଓଡ଼ିଆ ଭାଷାର ପ୍ରଚାର ଉଦ୍ଦେଶ୍ୟରେ ଗୋପବନ୍ଧୁ ଚକ୍ରଧରପୁର ଯାଇଥାନ୍ତି । ସେତେବେଳେ ସ୍କଟ ସାହେବ ସିଂହଭୂମି ଜିଲାର ଡେପୁଟି କମିସନର । ଘଟନାକ୍ରମେ ଏହି ସ୍କଟ ସାହେବଙ୍କ ସହିତ ଚକ୍ରଧର ପୁର ରେଲଷ୍ଟେସନରେ ଗୋପବନ୍ଧୁ ଓ ଗୋଦାବରୀଶଙ୍କର ସାକ୍ଷାତ ହୁଏ । ସେହିଠାରେ ସ୍କଟ ସାହେବଙ୍କ ସହିତ ଗୋପବନ୍ଧୁଙ୍କର ପ୍ରଥମ ପରିଚୟ, କିନ୍ତୁ ସାହେବ ଆଗରୁ ଗୋପବନ୍ଧୁଙ୍କୁ ଚିହ୍ନିଥିଲେ । ତା'ପରେ ଗୁଳିବସାରେ ଥିବା ସରକାରୀ ବାସଭବନରେ ସାହେବଙ୍କ ସହିତ ଗୋପବନ୍ଧୁ ଓ ଗୋଦାବରୀଶଙ୍କର ସାକ୍ଷାତ୍ ହୋଇଥିଲା । ସେଦିନ ତାଙ୍କ ସହିତ ଗୋପବନ୍ଧୁଙ୍କର ଦୁଇ-ତିନଘଣ୍ଟାବ୍ୟାପୀ ଦୀର୍ଘ ଆଳାପ । କଥାବାର୍ତ୍ତା ମଧ୍ୟରେ ସ୍କଟ ସାହେବ ଗୋପବନ୍ଧୁଙ୍କୁ କହିଥିଲେ, "ଗୋପବନ୍ଧୁ, ମୁଁ ସତରବର୍ଷ ହେଲା ଦେଶ ଛାଡ଼ି, ଆପଣଙ୍କ ଭାରତରେ ଆସି ରହିଲିଣି । ମୁଁ ବିଲାତରେ ପାଠ ପଢ଼ିସାରି ଏ ଦେଶକୁ ଆସିବା ପୂର୍ବରୁ କେତେଥର ପାର୍ଲିଆମେଣ୍ଟକୁ ଯାଇ ବକ୍ତୃତା ଶୁଣିଛି, ସେତେବେଳେ ବାଲ୍ ଫୋର୍ ଥିଲେ ପ୍ରଧାନ ମନ୍ତ୍ରୀ । ଆପଣଙ୍କ ଭାଷଣ ଶୁଣିଲାବେଳେ ମୋର ମନେ ହୁଏ, ମୁଁ ସତେ ଅବା ବିଲାତ ପାର୍ଲିଆମେଣ୍ଟରେ ବସି ବାଲ୍‌ଫୋର୍‌ଙ୍କ ବକ୍ତୃତା ଶୁଣୁଛି, ଆମେ ଇଂରେଜ ଲୋକେ ଶତ୍ରୁଠାରେ ମଧ୍ୟ ଗୁଣର ଉପାସନା କରୁ । ଆପଣ ଜଣେ ଇଂରେଜ ସରକାରର ଘୋର ଶତ୍ରୁ; ତଥାପି ଆପଣଙ୍କୁ କେବଳ ମୁଁ କାହିଁକି, ଆମ ଗୋଟି ହାକମମାନେ ସମସ୍ତେ ଖାତିର କରନ୍ତି ।" ତତ୍କାଳୀନ ବିହାର-ଓଡ଼ିଶାର ଲାଟ୍ ସାହେବ ସାର୍ ଏଡ୍‌ଓ୍ୱାର୍ଡ୍ ପ୍ରଥମଥର ସତ୍ୟବାଦୀ ସ୍କୁଲ ପରିଦର୍ଶନ କରିବାକୁ ଗଲାବେଳେ ଗୋପବନ୍ଧୁ ବାବୁଙ୍କୁ କହିଥିଲେ, 'ଗୋପବନ୍ଧୁ ! ଏଥର ଆପଣ ବ୍ୟବସ୍ଥା ପରିଷଦ୍ ବୈଠକକୁ ଗଲେନାହିଁ ! ଆପଣ ନ ଥିଲେ ମୋତେ ସଭାଗୃହଟା ଭଲ ଲାଗେନାହିଁ ।'

ଗୋପବନ୍ଧୁଙ୍କ ସହକର୍ମୀ ସ୍ୱର୍ଗତ ଗୋଦାବରୀଶ ମିଶ୍ର ନିଜେ ଏ ସବୁ ଘଟଣାର ପ୍ରତ୍ୟକ୍ଷ ସାକ୍ଷୀ । 'ବ୍ୟବସ୍ଥାପକ ଗୋପବନ୍ଧୁ' ପ୍ରବନ୍ଧରେ ସେ ଏହା ଅତି ପ୍ରାଞ୍ଜଳଭାବରେ ବର୍ଣ୍ଣନା କରିଅଛନ୍ତି । ଏହା ଉପସ୍ଥିତ ଲେଖକର କପୋଳକଳ୍ପନା ନୁହେଁ । ପ୍ରବନ୍ଧଟି ପ୍ରକାଶ ପାଇଥିଲା 'ସମାଜ'ର ଚତୁର୍ବିଂଶତିତମ ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟାରେ ।

ଏଠାରେ ଗୋପବନ୍ଧୁଙ୍କ ବକ୍ତୃତାର ଏ ଉଦ୍ଧୃତି ଓ ଅନେକ ପ୍ରଶସ୍ତିର ଅବତାରଣାର ଉଦ୍ଦେଶ୍ୟ କଣ ? ବିହାର ଓଡ଼ିଶା ବ୍ୟବସ୍ଥାପକସଭାରେ ଗୋପବନ୍ଧୁ ଇଂରେଜୀରେ ବକ୍ତୃତା ଦେଉଥିଲେ । ତାଙ୍କର ଇଂରେଜୀ ଭାଷାରେ ଏତେ ପ୍ରତିପତ୍ତି ଥିଲା ଯେ, ସାହେବମାନେ ସେ ବକ୍ତୃତା ଶୁଣି ବିମୁଗ୍ଧ ହେଉଥିଲେ । ମନ୍ତ୍ରୀ ବାଲ୍‌ଫୋର୍‌ଙ୍କ ସହିତ ତାଙ୍କୁ ତୁଳନା କରୁଥିଲେ । ଗୋପବନ୍ଧୁ ନଥିଲେ ବ୍ୟବସ୍ଥା ସଭା ନୃହଣ୍ଠା ଲାଟସାହେବ ସାର୍ ଏଡ଼ୱାର୍ଡ଼ଙ୍କୁ ଭଲ ଲାଗୁନଥିଲା । ଏହି ଅସାଧାରଣ ବାଗ୍ମିତା ଯୋଗୁ ବିଦେଶୀ ଶାସକମଣ୍ଡଳରେ ଗୋପବନ୍ଧୁଙ୍କର ଖାତିର ଓ ଖ୍ୟାତି ବହୁଗୁଣରେ ବଢ଼ିଯାଇଥିଲା । ଯେଉଁ ଗୋପବନ୍ଧୁ ଇଂରେଜୀରେ ଏଡ଼େ ଚମତ୍କାର ଭାଷଣ ଦେଇ ପାରୁଥିଲେ, ନିଜର ମାତୃଭାଷାରେ ତାଙ୍କର ଲେଖା ଓ ବକ୍ତୃତା କିପରି ପ୍ରାଣସ୍ପର୍ଶୀ ଓ ମୂଲ୍ୟବାନ୍ ହୋଇଥିବ, ତାହା ଏଥିରୁ ସହଜରେ ଅନୁମେୟ । କେତେକ ଭାରତୀୟ ଅଛନ୍ତି, ଯେଉଁମାନେ ଇଂରେଜୀରେ ଖୁବ୍ ଭଲ ଲେଖିପାରନ୍ତି, ଅଥଚ ନିଜର ମାତୃଭାଷାରେ ସେତେ ଭଲ ଲେଖି ପାରନ୍ତିନାହିଁ, କି କହି ପାରନ୍ତିନାହିଁ । ଏଥିରେ ମଧ୍ୟ ସେମାନେ ଆତ୍ମ-ଗ୍ଲାନି ଅନୁଭବ ନ କରି ଆତ୍ମ-ଶ୍ଲାଘାରେ ନିଜକୁ ଗୌରବାନ୍ୱିତ ମନେକରନ୍ତି ; କିନ୍ତୁ ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱ ଏପରି ଉପାଦାନରେ ଗଠିତ ନୁହେଁ । ତାଙ୍କର ଜାତୀୟ ପ୍ରୀତି ଏପରି ଆତ୍ମ-ଶ୍ଲାଘାକୁ ପସନ୍ଦ କରେନାହିଁ । ତାଙ୍କର ଦୃଢ଼ ଧାରଣା, ଯେଉଁ ଜାତିର ସ୍ୱତନ୍ତ୍ର, ଭାଷା ଓ ସୁଗଠିତ ସମୁନ୍ନତ ସାହିତ୍ୟ ନାହିଁ, ସେ ଜାତିର ବର୍ତ୍ତମାନ କିମ୍ବା ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ । ଭାଷା-ଭିତ୍ତିରେ ପ୍ରଦେଶଗଠନ ଥିଲା ତାଙ୍କର ମୌଳିକ ମତ । ଏପରି ପରିସ୍ଥିତିରେ କିଏ କହିପାରିବ ନାହିଁ, ଗୋପବନ୍ଧୁ ଓଡ଼ିଆ ଅପେକ୍ଷା ଇଂରେଜୀ ଭାଷା ଉପରେ ଅଧିକ ଗୁରୁତ୍ୱଦେଇ ଗୋରା ହାକିମମାନଙ୍କଠାରୁ ଏ ସମ୍ମାନ ଅର୍ଜନ କରିଥିଲେ । ବସ୍ତୁତଃ ନିଜର ମାତୃଭାଷାରେ ଯାହାର ବ୍ୟୁତ୍ପତ୍ତି ଓ ବିଚକ୍ଷଣତା ନାହିଁ, ବୈଦେଶିକ ଭାଷାରେ ତା'ର ଏପରି ବ୍ୟୁତ୍ପତ୍ତି ଜନ୍ମିବ କିପରି ? ଗୋପବନ୍ଧୁଙ୍କର ଇଂରେଜୀ ବକ୍ତୃତାକୁ ଗୋରା ସାହେବମାନେ ପ୍ରଶଂସା କରିଯାଇଅଛନ୍ତି; କିନ୍ତୁ ତାଙ୍କର ଓଡ଼ିଆ ବକ୍ତୃତା ଶୁଣିଥିବା ଲୋକେ ଏବେ ମଧ୍ୟ ଅନେକ ଜୀବିତ ଅଛନ୍ତି, ଏବେ ମଧ୍ୟ ସେ ବକ୍ତୃତା ଶୁଣିଥିବା ଲୋକେ କହନ୍ତି, ଗୋପବନ୍ଧୁଙ୍କ ବକ୍ତୃତାରେ କି ଯାଦୁଶକ୍ତି ଥାଏ କେଜାଣି, ଘଣ୍ଟା ଘଣ୍ଟା ଧରି ସେ ବକ୍ତୃତା ଶୁଣିଲେ ମଧ୍ୟ ମନରେ ଲେଶମାତ୍ର ବିରକ୍ତି ଜନ୍ମେ-ନାହିଁ । କି ଦିବ୍ୟ ଉନ୍ମାଦନା ସେଥିରେ ଥାଏ, ଶ୍ରୋତା ତାଙ୍କ ଚିନ୍ତାଧାରାରେ ଦ୍ରବିତ ଓ ଉତ୍ତେଜିତ ନ ହୋଇ ରହିପାରେ ନାହିଁ । ସେ ତାଙ୍କର ବକ୍ତୃତାଦ୍ୱାରା ସମବେତ ଜନସାଧାରଣଙ୍କୁ ଏକ ମୁହୂର୍ତ୍ତରେ ଯେପରି ହସାଇ ଦେଇପାରନ୍ତି, ଅନ୍ୟ ମୁହୂର୍ତ୍ତରେ ସେହିପରି କନ୍ଦାଇଦେଇ ପାରନ୍ତି; ଏପରି ଶକ୍ତି ବଡ଼ କମ୍

ବକ୍ତାଙ୍କଠାରେ ଦେଖାଯାଏ । କୁଳବୃଦ୍ଧ ମଧୁସୂଦନ ମଧ୍ୟ ଏହିପରି ଜଣେ ଅସାଧାରଣ ବକ୍ତା ଥିଲେ । କେବଳ ବକ୍ତୃତା ନୁହେଁ, ଗୋପବନ୍ଧୁଙ୍କ ସାଧାରଣ କଥାବାର୍ତ୍ତା, ପଦ୍ୟ ଓ ଗଦ୍ୟ ରଚନାରେ ମଧ୍ୟ ଏପରି ଗୋଟିଏ ପ୍ରାଣୋନ୍ମାଦକାରୀ ଚୁମ୍ବକଶକ୍ତି ଅଛି ଯେ ଶ୍ରୋତା ଓ ପାଠକ ସେଥିରେ ଆତ୍ମହରା ହୋଇଉଠେ, ଗୋପବନ୍ଧୁଙ୍କ ଉନ୍ନତ ଉଦାରଭାବପ୍ରବାହରେ ଭାସିଯାଇ ପ୍ରାଣ-ପ୍ରାନ୍ତରରେ ନିଜକୁ ମହିମାନ୍ୱିତ କରେ । ଅତି ସାଧାରଣ ନିରକ୍ଷର ଲୋକ ମଧ୍ୟ ମୁହୂର୍ତ୍ତିକ ନିମନ୍ତେ ମାନବିକତାର ମହତ୍ତ୍ୱ ଉପଲବ୍ଧି କରି ନିଜର କ୍ଷୁଦ୍ରତ୍ୱ ଛିନ୍ନ କରେ । ଭାବ-ପ୍ରକାଶର ଏ ଅବ୍ୟର୍ଥ ନୀତିର ରହସ୍ୟ କ'ଣ ? କାହିଁକି ଗୋପବନ୍ଧୁଙ୍କ ଲେଖା ଏତେ ଲୋକପ୍ରିୟ, ଲୋକଙ୍କ ପ୍ରାଣରେ ତାଙ୍କର ଲେଖା ଏତେ ପ୍ରତିଷ୍ଠା ଅର୍ଜନ କରିପାରିଛି କାହିଁକି ? ଏ ପ୍ରଶ୍ନର ଯଥାଯଥ ଉତ୍ତର ଦେବାକୁ ହେଲେ, ଆମ୍ଭମାନଙ୍କୁ ତାଙ୍କର ଲିଖନ ଶୈଳୀଉପରେ କିଞ୍ଚିତ ଆଲୋକପାତ କରିବାକୁ ହେବ ।

ଗୋପବନ୍ଧୁଙ୍କର ପ୍ରକାଶ-ଭଙ୍ଗୀ ଓ ଭାବପ୍ରବାହ କଠିନ କଠୋର ପ୍ରାଣକୁ କିପରି ମୁହୂର୍ତ୍ତିକ ମଧ୍ୟରେ ଦ୍ରବୀଭୂତ କରିପାରେ ତାହାର ଇତିହାସ ଏବେ ମଧ୍ୟ ଜନସାଧାରଣଙ୍କ ପ୍ରାଣରେ ଜୀବନ୍ତ ଓ ଜାଗ୍ରତ ହୋଇରହିଛି । ୧୯୧୯ ମସିହାରେ ପୁରୀ ଜିଲାର ଏକ ଦୁର୍ଭିକ୍ଷପୀଡ଼ିତ ଅଞ୍ଚଳର ଅନାହାରକ୍ଲିଷ୍ଟ ବ୍ୟକ୍ତି-ମାନଙ୍କର ଅସ୍ଥିସାର ମୂର୍ତ୍ତିଶାଗ ପ୍ରଭୃତି ବିହାର-ଓଡ଼ିଶାର ଲାଟ ସଭାର ସଭ୍ୟମାନଙ୍କୁ ଦେଖାଇ ଅଶ୍ରୁବିଗଳିତ କଣ୍ଠରେ ସେ କହିଥିଲେ "ରାଜ୍ୟପାପ ରାଜା ମୁଣ୍ଡରେ ।' ତୁମ୍ଭେ ବର୍ତ୍ତମାନ ରଜାର ପ୍ରତିନିଧିରୂପେ ଏ ପ୍ରଦେଶରେ ବସିଛ । ଗରିବ ପ୍ରଜାଙ୍କଠା ପ୍ରଦତ୍ତ ରାଜସ୍ୱରେ ତୁମ ସରକାର ଚଳୁଛି । ସେ ଗରିବ ଲୋକେ ଯେତେବେଳେ ନ ଖାଇ ମରିଯାଉଛନ୍ତି, ସେତେବେଳେ ତୁମେ ଯଦି 'ଆହା' ବୋଲି ନ ବୋଲ, ସେମାନଙ୍କ ପାଖରେ ଠିଆ ନ ହୁଅ, ସେମାନଙ୍କୁ ଏ ବିପଦରୁ ଉଦ୍ଧାର ନ କର, ଜାଣିଥାଅ, ଏ ନରହତ୍ୟାପାତକ ତୁମରି ମୁଣ୍ଡରେ ଲାଗିବ । ଏ ପାତକର ପରିଣାମ ତୁମ୍ଭେ ଭୋଗକରିବ ।" ଏହି ଗମ୍ଭୀର ସମବେଦନାପୂର୍ଣ୍ଣ ଉକ୍ତିରେ ତତ୍କାଳୀନ ଲାଟସାହେବଙ୍କ ହୃଦୟ ତରଳି ଯାଇଥିଲା । ଦୁର୍ଭିକ୍ଷପୀଡ଼ିତ ଅଞ୍ଚଳରେ ସରକାରଙ୍କ ପକ୍ଷରୁ ଯାହା କରାଯିବାର ଥିଲା ତାହା କରାଯାଇନାହିଁ ବୋଲି ଲାଟସାହେବ ଅନୁଶୋଚନା ପ୍ରକାଶକରି ଗୋପବନ୍ଧୁଦାସଙ୍କ ପାଖକୁ ଚିଠି ଲେଖିଥିଲେ । (What ought to have been done has not been done) ଏବେ ଏହା ଓଡ଼ିଶାର ଏକ କଥାନୀରେ ପରିଣତ ହୋଇଅଛି । ଲାଟ୍‌ସଭାରେ ଏ ହୃଦୟ-ବିଦାରଣ ଐତିହାସିକ ବକ୍ତୃତା ଗୋପବନ୍ଧୁ ଇଂରେଜୀରେ ଦେଇଥିଲେ, ଓଡ଼ିଆରେ ନୁହେଁ, କିନ୍ତୁ ଇଂରେଜୀରେ ହେଉ ବା ଓଡ଼ିଆରେ ହେଉ ଗୋପବନ୍ଧୁଙ୍କ ଲେଖା ଓ ବକ୍ତୃତାରେ ତାଙ୍କ ଜନକଲ୍ୟାଣବ୍ରତୀ ଆତ୍ମାର ସ୍ୱକୀୟତା କରେ

ପରିସ୍ଫୁଟ ହୋଇଅଛି ତାହା ଲକ୍ଷ୍ୟ କରିବାର କଥା । ତାଙ୍କର ରୁଚି ବ୍ୟକ୍ତିତ୍ୱ ଓ ମାନବିକତା ଉପରେ ଏଥିରେ ପ୍ରକଟିତ ତାହା ଚିନ୍ତା କରିବାର ସାମଗ୍ରୀ । ଇଂରେଜୀରେ ହେଉ କମ୍ବା ଓଡ଼ିଆରେ ହେଉ, ରଚନା-ଶୈଳୀର ବିଶେଷତ୍ୱ କିମ୍ବା ମହତ୍ତ୍ୱ ହେଉଛି, ଏହା ରଚୟିତା କମ୍ବା ବକ୍ତାର ଶୀଳ, ସ୍ୱଭାବ, ଚରିତ୍ର ଏବଂ ବ୍ୟକ୍ତିସ୍ୱାତନ୍ତ୍ର୍ୟର ଜ୍ୱଳନ୍ତ ସ୍ୱାକ୍ଷର ବହନ କରିଥିବ । ଏ ଶୈଳୀ ରଚନାର ବହିରଙ୍ଗ ପରିପାଟୀ ନୁହଁ । ଏହା ପ୍ରଯତ୍ନସିଦ୍ଧ ଭାଷା-ବିନ୍ୟାସର କଳା-କୌଶଳ ନୁହଁ । ଏ ଶୈଳୀ ସାହିତ୍ୟର ଅନ୍ତରାତ୍ମା, ଲେଖକର ଚରିତ୍ର ଓ ବ୍ୟକ୍ତିତ୍ୱ ସହିତ ଏହା ଅବିଚ୍ଛେଦ୍ୟଭାବରେ ସମ୍ପୃକ୍ତ । ଏଥିପାଇଁ ଲେଖକକୁ ପୃଥକ୍ ଯତ୍ନ କରିବାକୁ ପଡ଼େନାହିଁ । ଏହା ଚିନ୍ତା, ଅନୁଭୂତି ଓ ବିଷୟବସ୍ତୁକୁ ଅନୁସରଣ କରି ସ୍ୱତଃସ୍ଫୂର୍ତ୍ତିଭାବରେ ଅଭିବ୍ୟକ୍ତ ଲାଭକରେ । ଭାରତର ଜଣେ ପ୍ରାଚୀନ ଆଲଙ୍କାରିକ ବାମନାଚାର୍ଯ୍ୟ 'ରୀତି' କିମ୍ବା 'ଶୈଳୀର' ଆଖ୍ୟା ଦେଇଥିଲେ, କାବ୍ୟର ଆତ୍ମା' । ତାଙ୍କ ମତରେ ଶୈଳୀ ହେଉଛି, ବିଶିଷ୍ଟ ପଦରଚନାରୀତି । ସେ କହନ୍ତି, ଏପରିଭାବରେ ଶବ୍ଦ ଓ ଅର୍ଥର ସନ୍ନିବେଶ କରିବାକୁ ହେବ, ଯହିଁରେ ପ୍ରସାଦ, ମାଧୁର୍ଯ୍ୟ, ଓଜ, ସମତା, ସୌକୁମାର୍ଯ୍ୟ, କାନ୍ତି ଏବଂ ଉଦାରତାପ୍ରଭୃତି ଗୁଣମାନ ପରିସ୍ଫୁଟ ହୋଇଥିବ; କିନ୍ତୁ ଏହା କାବ୍ୟର ବହିରଙ୍ଗ କିମ୍ବା ରଚନା ଅଙ୍ଗସୌଷ୍ଠବର କଥା । ଆଧୁନିକ ପାଶ୍ଚାତ୍ୟ ସମାଲୋଚକମାନଙ୍କର ଏହି ସୁପ୍ରସିଦ୍ଧ ଉକ୍ତି 'Style is the man'—ଅର୍ଥାତ୍ ଶୈଳୀ ରଚୟିତାର ସ୍ୱକୀୟ ଭାବାବେଗ, ଚିନ୍ତାନୁଭୂତି ଓ ସଂସ୍କାରର ବହିଃପ୍ରକାଶ, ଏ ଗମ୍ଭୀରତତ୍ତ୍ୱ ବାମନାଚାର୍ଯ୍ୟଙ୍କ ରୀତିର ସ୍ୱରୂପରେ ନାହିଁ । ଗୋପବନ୍ଧୁଙ୍କ ସାହିତ୍ୟରେ ବିଶିଷ୍ଟ ପଦରଚନାରୀତି ଯେ ନାହିଁ ତାହା ନୁହଁ । ସରଳ ସତେଜ ଓ ପ୍ରାଣସ୍ପର୍ଶୀ ଶବ୍ଦର ବିନ୍ୟାସ ତାଙ୍କ ଲେଖାର ବୈଶିଷ୍ଟ୍ୟ । ପ୍ରସାଦ, ମାଧୁର୍ଯ୍ୟ, ଓଜ, ସମତା ଓ ସୌକୁମାର୍ଯ୍ୟ ପ୍ରଭୃତି ଗୁଣମାନଙ୍କରେ ତାଙ୍କର ଲେଖା ଅଳଙ୍କୃତ । ସମଗ୍ର 'ବନ୍ଦୀର ଆତ୍ମକଥା' ଓଜଗୁଣସମ୍ପନ୍ନ । ଛନ୍ଦେ ଛନ୍ଦେ ଏଥିରେ ସଂଗ୍ରାମୀ ପୁରୁଷର ବୀରତ୍ୱ ଓ ବିପ୍ଳବର ଅପୂର୍ବ ସ୍ଫୁରଣ । 'ଅବକାଶ ଚିନ୍ତା'ରେ ପ୍ରସାଦ, ମାଧୁର୍ଯ୍ୟ, କାନ୍ତି, ଓ ସୌକୁମାର୍ଯ୍ୟଗୁଣାଦିର ସମାହାର । 'ଅନାଥ-କଳିକା' 'ଭାର୍ଗବୀ ପ୍ରତି' ଓ 'ମୋ ନାନୀ' ପ୍ରଭୃତି କବିତାମାନଙ୍କରେ କରୁଣରସଜନିତ ମାଧୁର୍ଯ୍ୟଗୁଣର ମଧୁର ସମାବେଶ । ସର୍ବତ୍ର ଭାଷାର କାନ୍ତି ଓ ଲାଳିତ୍ୟ ପରିସ୍ଫୁଟ । 'କାରାକବିତା'ରେ କବିଙ୍କ 'ବନ୍ଦୀର ସ୍ୱଦେଶଚିନ୍ତା' ଏବଂ 'ବନ୍ଦୀର ବିରହ-ବ୍ୟଥା' ପ୍ରଭୃତି କବିତାମାନଙ୍କରେ ମାଧୁର୍ଯ୍ୟ ଓ କରୁଣ ରସର ଅଭିବ୍ୟକ୍ତି । 'ଈଶ୍ୱର ମିଳନଚିନ୍ତା' କବିତାରେ ଶାନ୍ତରସ-ସଞ୍ଚାରୀ ଗାମ୍ଭୀର୍ଯ୍ୟବ୍ୟଞ୍ଜକ ଭାଷାର ଅନବଦ୍ୟ ପରିପାଟୀ । 'ଧର୍ମପଦ'ରେ ବାତ୍ସଲ୍ୟରସଜନିତ ମାଧୁର୍ଯ୍ୟ, କରୁଣରସାଶ୍ରିତ ଗାମ୍ଭୀର୍ଯ୍ୟ ଓ ପ୍ରଶାନ୍ତି । 'ନଚିକେତା ଉପାଖ୍ୟାନ'ରେ ବ୍ରହ୍ମତତ୍ତ୍ୱର ସାତ୍ତ୍ୱିକଭାବାପନ୍ନ ଶାନ୍ତ ରସର ଅମିୟ ଧାରା, ଏପରି କି 'ଗୋ-ମାହାତ୍ମ୍ୟ'ର ସୁଲଳିତ ଭାଗବତୀ ଭାଷା ଏବଂ

ଜନସାଧାରଣଙ୍କ ପ୍ରାଣରେ ଗୋ ଜାତି ପ୍ରତି ସକ୍ରିୟ ସମବେଦନା ଜାଗ୍ରତ କରିବାର ଐକାନ୍ତିକ ନିଷ୍ଠାର ପରାକାଷ୍ଠା, ଏ ସକଳ ମଧ୍ୟରେ ଗୋପବନ୍ଧୁଙ୍କର ବିଶିଷ୍ଟ ପଦ ରଚନା-ରୀତି ସୁସ୍ପଷ୍ଟ; କିନ୍ତୁ ଗୋପବନ୍ଧୁଙ୍କ ରଚନା-ଶୈଳୀକୁ ବାମନାଗ୍ରଣିଙ୍କର ଏହି 'ବିଶିଷ୍ଟ ପଦ-ରଚନା-ରୀତି' ରୂପକ ଆଲଙ୍କାରିକ ସୂତ୍ରରୁ ବିଚାର ନ କରି ଆମ୍ଭମାନଙ୍କୁ ସାମ୍ପ୍ରତିକ ପାଶ୍ଚାତ୍ୟ ସାହିତ୍ୟ-ସମାଲୋଚକଙ୍କର ସୂତ୍ର 'Style is the man' ଏହି ମତରୁ ବିଚାର କରିବାକୁ ହେବ । ଗୋପବନ୍ଧୁଙ୍କ ରଚନାରେ ସର୍ବତ୍ର ତାଙ୍କର ଆତ୍ମାର ସ୍ୱକୀୟତାର ପ୍ରତିଫଳନ ଦେଖିବାକୁ ମିଳେ । ତାଙ୍କର ଭାଷା ଅକୃତ୍ରିମ ଓ ଭାଷାର ସୃଷ୍ଟି-ନିର୍ଝର ତାଙ୍କ ତ୍ୟାଗପୂତ ଆତ୍ମାରୁ । ଏଥିରେ ପ୍ରସାଧନ ପରିପାଟୀର ପ୍ରୟତ୍ନ ନାହିଁ । ଗୋପବନ୍ଧୁଙ୍କ ସାହିତ୍ୟ ପ୍ରକୃଷ୍ଟ ଜନ କିମ୍ବା ଗଣ-ସାହିତ୍ୟ ଲୋକଙ୍କ ପ୍ରାଣରେ ସଚ୍ଚିନ୍ତା ଏବଂ କର୍ମପ୍ରେରଣା ଜାଗ୍ରତକରିବା ଥିଲା ତାଙ୍କ ଜୀବନର ଲକ୍ଷ୍ୟ । ଲୋକସେବା ଥିଲା ସେ ପୁଣ୍ୟାତ୍ମାଙ୍କର ଜୀବନର ଏକମାତ୍ର ସ୍ୱପ୍ନ । ଲୋକହିତୈଷିଣା ଥିଲା ତାଙ୍କର ଅସ୍ଥିମଜ୍ଜାଗତ ଏକ ସହଜାତ ଧର୍ମବୋଧ କିମ୍ବା ମାନସପ୍ରବଣତା । ଲୋକଙ୍କପାଇଁ ସେ ବଞ୍ଚିଥିଲେ । ତାଙ୍କ ସାହିତ୍ୟସେବାର ଅନ୍ୟନାମ ଲୋକସେବା । ଏହି ଲୋକ-ସେବା ହିଁ ତାଙ୍କର ବ୍ୟକ୍ତିତ୍ୱ । ତାଙ୍କର ସ୍ୱଳ୍ପ ସାହିତ୍ୟକୃତି-ମଧ୍ୟରେ ସେ ମାନବର ସେବା କରୁଛନ୍ତି ବୋଲି ଉପଲବ୍ଧି କରୁଥିଲେ । ଗୋପବନ୍ଧୁ ଅଳ୍ପ ଲେଖିଛନ୍ତି; କିନ୍ତୁ ଦେଶବାସୀଙ୍କର କଲ୍ୟାଣଚିନ୍ତା କରିଛନ୍ତି ତା'ଠାରୁ ଅଧିକ । ସେ ଥିଲେ ଜଣେ ଉଚ୍ଚକୋଟିର ଭାବୁକ । ଦେଶକୁ ଯେଉଁ ଭାବନାରେ ସେ ଉଦ୍‌ବୁଦ୍ଧ କରିବାକୁ ଆମରଣ ବ୍ୟସ୍ତ ଓ ବ୍ୟାକୁଳ ଥିଲେ, ସେହି ଭାବନାରେ ସେ ନିଜ ଜୀବନକୁ ନିୟନ୍ତ୍ରିତ କରୁଥିଲେ । ଦରିଦ୍ର ଲୋକମାନଙ୍କ ପରି ସରଳ ଓ ନିରାଡ଼ମ୍ବର ଜୀବନ-ଯାପନ କରୁଥିଲେ । ସେ ଥିଲେ ସତେ ଯେପରି 'ବିଧାତା ରଚିତ ଏକ କାବ୍ୟ' । ସେ ଥିଲେ ମୂର୍ତ୍ତିମତୀ କବିତା । କବିତାର ସୁକୁମାର ସ୍ପନ୍ଦନ ତାଙ୍କ ପ୍ରାଣକୁ ନିରନ୍ତର ଝଂକୃତ କରୁଥିଲା । କବିଙ୍କ ପରି ସେ ଅନ୍ୟ ପ୍ରାଣରେ ନିଜର ପ୍ରାଣ ମିଶାଇ ଦେଇ ସେଥିରେ ଅପାର ଆନନ୍ଦ ଅନୁଭବ କରୁଥିଲେ । ସେବା-ଭାବର-ସରଳ ସୁନ୍ଦର ଦାର୍ଶନିକ ବ୍ୟାଖ୍ୟା ଦେବାକୁ ଯାଇ ସେ ଥରେ 'ସତ୍ୟବାଦୀ' ମାସିକ ପତ୍ରିକାରେ ଲେଖିଥିଲେ, 'ମାନବ ସାଧାରଣର ସମ୍ପର୍କରେ ଆସି ସେମାନଙ୍କର ଅଭାବ, ଆକାଂକ୍ଷା, ରୋଗ, ଦୁଃଖ, ଭାବ, ବିକାରପ୍ରଭୃତି ଅନୁଭବରେ ନ ଆଣିଲେ ଜୀବନରେ ସତ୍ୟ ଶିଖିବା ଅସମ୍ଭବ । ମାନବକୁ ସ୍ନେହକରି ନ ଶିଖିଲେ, ମାନବ ପ୍ରତି ପ୍ରାଣରେ ସହାନୁଭୂତି ନ ଆସିଲେ, ଜୀବନର ବିକାଶ ହେବନାହିଁ । ପ୍ରକୃତ ନୀତିଶିକ୍ଷାର ପନ୍ଥା ଲୋକସେବା । ଲୋକସେବା ଅଭ୍ୟାସ କରିବାରେ ଜୀବନର ପ୍ରକୃତ ତତ୍ତ୍ୱ ଅନୁଭବରେ ଶିକ୍ଷା ହୁଏ । ତେଣୁ ଛାତ୍ରଜୀବନରେ ଏହି ଲୋକସେବା ଶିଖିବା-ବିଷୟରେ ଛାତ୍ରମାନଙ୍କୁ ଯଥୋଚିତ ପ୍ରଶ୍ରୟ ଦେବା ପ୍ରୟୋଜନ ।'

ଏହି ସେବା ଓ ସହାନୁଭୂତିରେ ଗୋପବନ୍ଧୁ ଅନୁପ୍ରାଣିତ ଥିଲେ ବୋଲି ଜଣେ ପାଶ୍ଚାତ୍ୟ ସାହିତ୍ୟ-ସମାଲୋଚକଙ୍କ ଭାଷାରେ ଆମ୍ଭେମାନେ ଗୋପବନ୍ଧୁଙ୍କ ରଚନା-ଶୈଳୀ ସମ୍ପର୍କରେ କହିପାରୁ—Whenever we read a book we are aware of a voice. It is as though some one had been speaking to us, telling us something, or working upon our feeling. It is this voice which we roughly call style, and, however a writer may ignore his personality, even seek to conceal it, he cannot disguise his voice, his style—ଗ୍ରନ୍ଥଟିଏ ପଢ଼ିଲେ ଗ୍ରନ୍ଥକର୍ତ୍ତାର ବିଶିଷ୍ଟ କଣ୍ଠସ୍ୱରଟି ଯେପରି ଆମ ପ୍ରାଣ-କନ୍ଦରରେ ପ୍ରତିଧ୍ୱନିତ ହୋଇ ଉଠେ, ମନେହୁଏ କିଏ ଯେପରି ଅଦୃଶ୍ୟଭାବରେ କାନେ କାନେ ତା କଥାରେ ଆମକୁ ପ୍ରଭାବିତ କରିବାକୁ ଇଙ୍ଗିତ ଦେଉଛି । ଏହି ବିଶିଷ୍ଟ ସ୍ୱରଟି ହେଲା ରଚନାର ଶୈଳୀ । ଲେଖକ ତାଙ୍କର ଲେଖାରେ ନିଜକୁ ପ୍ରଚ୍ଛନ୍ନ ରଖିବାକୁ ଯେତେ ଚେଷ୍ଟା-କଲେ ମଧ, ସେ ଚେଷ୍ଟା ବ୍ୟର୍ଥ ହୁଏ, ସେ ତାଙ୍କର ସ୍ୱର କିମ୍ବା ଶୈଳୀକୁ କଦାପି ଗୋପନରେ ରଖିପାରନ୍ତି ନାହିଁ । ଲେଖକର ଏହି ଆତ୍ମପ୍ରକାଶ ହିଁ ଶୈଳୀର ଅନ୍ତର୍ନିହିତ ତତ୍ତ୍ୱ ।

ଗୋପବନ୍ଧୁ ତାଙ୍କ ଲେଖା ଭିତରେ ନିଜର ସ୍ୱରକୁ ପ୍ରଚ୍ଛନ୍ନକରି ରଖିବାର ପ୍ରୟାସ କେଉଁଠାରେ କରିନାହାନ୍ତି । ସେଇ ତ ତାଙ୍କର କବି କିମ୍ବା ସାହିତ୍ୟିକ-ଭାବରେ ପରମବୈଶିଷ୍ଟ୍ୟ । କର୍ମର ମନ୍ତ୍ରରେ ପ୍ରବୃତ୍ତ କରିବାପାଇଁ ଦେଶବାସୀଙ୍କ ପ୍ରାଣରେ ଚିନ୍ତା ଓ ଆବେଗର ସଞ୍ଚାରକରିବା ଯାହାର ଲକ୍ଷ୍ୟ, ସେ ନିଜକୁ ପ୍ରଚ୍ଛନ୍ନ କରିବ କିପରି ? ଏହି ଆତ୍ମ-ଗୋପନ ମଧରେ ଅଛି ଛଳନା, ଛଦ୍ମବେଶ ଓ କପଟ-କାଳିମା । ଗୋପବନ୍ଧୁଙ୍କ ଲେଖାରେ ତାଙ୍କର ବ୍ୟକ୍ତିତ୍ୱ ମଧ ହୀରା ଖରରଶ୍ମି ପରି ଉଜ୍ଜ୍ୱଳ; କିନ୍ତୁ ସନ୍ତାପଦାୟକ ନୁହେଁ । ତାଙ୍କ ରଚନାରେ ଭାଷାର କାରୁ-ଚାତୁରୀ ନାହିଁ । ସେ କଳ୍ପନାର ବିଚିତ୍ର ଜାଲ ସୃଷ୍ଟିକରି କେଉଁଠାରେ ପାଠକମାନଙ୍କୁ ବିଭ୍ରାନ୍ତ କରିବାକୁ ଚେଷ୍ଟା କରିନାହାନ୍ତି । ଅଳଙ୍କାରର ସୁକୁମାର ଛଟା ତାଙ୍କ ଲେଖାରେ ସେତେ ଦେଖିବାକୁ ମିଳେନାହିଁ; କିନ୍ତୁ ନିଜର ଭାବାବେଗକୁ ପାଠକ-ପ୍ରାଣରେ ସୁଦୃଢ଼ଭାବରେ ପ୍ରତିଷ୍ଠିତକରିବା ନିମନ୍ତେ ସେ ତାଙ୍କ କବିତାରେ ଅଳଙ୍କାରକୁ ସମ୍ପୂର୍ଣ୍ଣରୂପେ ଉପେକ୍ଷା କରିନାହାନ୍ତି । 'ସେହି କୃତୀ, ଯେହୁ ପରହିତେ କରେ ଜୀବନ ଆହୁତି ଦାନ', ଏହି ମଙ୍ଗଳମୟ ସତ୍ୟର ପ୍ରତିଷ୍ଠା ନିମନ୍ତେ "ଧର୍ମପଦ"ରେ ମହାଭାରତର 'ଛଞ୍ଚାଣ-କପୋତ' ଆଖ୍ୟାନ ବର୍ଣ୍ଣନାକରି ଦୃଷ୍ଟାନ୍ତ

ଅଲଙ୍କାରର ସୁନ୍ଦର ନିଦର୍ଶନ ଦେଇ ଲେଖିଅଛନ୍ତି—

'କପୋତର ହିତେ ଶିବି ଶୁଭବତେ
କଲ ଏ ଆତ୍ମ-ଉତ୍ସର୍ଗ,
ଇହ ପରଲୋକେ ଲଭିଲେ ଅକ୍ଷୟ
ଧର୍ମ ଆଦି ଗୁଣବର୍ଗ ।'

ଅନ୍ୟାୟ ଓ ଅସତ୍ୟ ବିରୁଦ୍ଧରେ ଜନମତ ଜାଗରିତ କରିବା ଉଦ୍ଦେଶ୍ୟରେ ସେ ବିଭିନ୍ନ ଦେଶର ଇତିହାସରୁ ଦୃଷ୍ଟାନ୍ତମାନ ଦେଇ ଉଦ୍‌ବୋଧନ-ମନ୍ତ୍ର ଗାୟନ କରିଅଛନ୍ତି—

''ପଶ୍ଚିମ ରାଇଜେ ହେରଡ଼ ନୃପତି
ଥିଲା କଂସ ସମ ଦୁରାତ୍ମା ଦୁର୍ମତି ।
ପ୍ରଭୁ ଯୀଶୁ ପ୍ରତି ମନେ ବାନ୍ଧି ରୋଷ
ଶିଶୁହତ୍ୟା ଆଦି କଲା ନାନା ଦୋଷ ।
ଥିଲା ସେହିପରି ମିଶରେ ଫେରଓ
ଗଲେ ଏ ସକଳେ ଯଥାକାଳେ ଧ୍ୱଂସ ।
ଶାସ୍ତ୍ର-ପୁରାଣର ବୁଝି ଏ ଚରିତ
ନ କର କପଟେ ଚିତ୍ତ ବିଚଳିତ ।''

ଏ ଅର୍ଥାନ୍ତରନ୍ୟାସ କିମ୍ବା ଦୃଷ୍ଟାନ୍ତ ଅଲଙ୍କାରରେ ଅସ୍ପଷ୍ଟତା ନାହିଁ, ଏଥିରେ କୃତ୍ରିମତା କିମ୍ବା କପଟତାର ଗୁରୁତ୍ୱ ନାହିଁ, ଏ ଉପମା କେବଳ କାବ୍ୟର ସୌନ୍ଦର୍ଯ୍ୟ ସୃଷ୍ଟି କରିବାପାଇଁ ନୁହେଁ, ଲୋକ-ସମାଜରେ ଜ୍ଞାନବିକିରଣ କରି ପରୋପଦେଶେ ପାଣ୍ଡିତ୍ୟର ପ୍ରକଟନ ଏ ଭାଷାଭଙ୍ଗୀର ଉଦ୍ଦେଶ୍ୟ ନୁହେଁ; ଉଦ୍ଦେଶ୍ୟ, ଏହି ଅଲଙ୍କାର ଯୋଜନାଦ୍ୱାରା ପାଠକମାନଙ୍କ ପ୍ରାଣରେ ସତ୍ୟ ଓ ନ୍ୟାୟର ମଙ୍ଗଳମୟ ପ୍ରଦୀପ ପ୍ରଜ୍ୱଳିତକରି ରଖିବା ଏବଂ ଜନହିତକର କର୍ମରେ ଲୋକମାନଙ୍କୁ ପ୍ରରୋଚିତ କରିବା ।

ଆଧୁନିକ ପାଶ୍ଚାତ୍ୟ ସମାଲୋଚକ କହେ, 'ଷ୍ଟାଇଲ ବା ଶୈଳୀ ସ୍ରଷ୍ଟାର ସ୍ୱଭାବର ସ୍ୱକୀୟତା, ବଶିଷ୍ଟତା ବା ସ୍ୱତନ୍ତ୍ରତା ଉପରେ ନିର୍ଭରଶୀଳ । ସ୍ରଷ୍ଟାର ଅନନ୍ୟତା ହିଁ ତା'ର ଷ୍ଟାଇଲ କିମ୍ବା ଶୈଳୀ'—ଗୋପବନ୍ଧୁଙ୍କ ରଚନାଶୈଳୀ ପ୍ରତି ଏହା କେତେଦୂର ପ୍ରଯୋଜ୍ୟ ତାହା ରହାନୁଭୂତିଶୀଳ ସହୃଦୟ ପାଠକମାନଙ୍କର ପ୍ରତ୍ୟକ୍ଷ ଅନୁଭୂତିର କଥା । ଯେଉଁ ତ୍ୟାଗ, ତିତିକ୍ଷା, ନିଃସ୍ୱାର୍ଥ ସେବା, ନିରହଙ୍କାର ସରଳତା, ଭକ୍ତି, ପ୍ରୀତି, ମୈତ୍ରୀ ଓ ବିଶ୍ୱଜନୀନ ଉଦାରଭାବ ଗୋପବନ୍ଧୁଙ୍କର

କର୍ମମୟ ଜୀବନର ସ୍ୱକୀୟତା, ଏବଂ ଯାହା ସକାଶେ ସେ ଓଡ଼ିଶାର ଜାତୀୟ ଇତିହାସରେ ଅଦ୍ୱିତୀୟ ଓ ଅନନ୍ୟ, ସେହି ସୁମହାନ୍ ଭାବରାଶି ଯେତେବେଳେ ସାହିତ୍ୟରେ ପ୍ରତିଫଳିତ ହେବାର ପାଠକ ଦେଖେ, ସେତେବେଳେ ସେ ଆଉ କାହାର ନୁହେ, ସେହି ଗୋପବନ୍ଧୁଙ୍କର ଆତ୍ମାରହିଁ ପ୍ରତିଧ୍ୱନି ଶୁଣିବାକୁ ପାଏ, ତାଙ୍କର ସ୍ୱକୀୟତାର ମାଧୁରୀ ଅନୁଭବ କରେ । ଗୋପବନ୍ଧୁଙ୍କ ପରି ଓଡ଼ିଶାବାସୀଙ୍କୁ ଏପରି ଭାବାବେଗରେ ମନ୍ତ୍ରମୁଗ୍ଧ କରିପାରିଛି ଆଉ କେଉଁ କବି ?

'କର୍ମଭୂମେ କିଏ ନେତା କି ବା ମିତ,<br>
ସରବେ ନମିତ ବିଧି-ନିୟୋଜିତ ।'

କିମ୍ବା

'ପୂଣ୍ୟ ଜନ୍ମମାଟି ପୂଣ୍ୟ ଦେବାଳୟ,<br>
ଉଦ୍ଧରିବାପାଇଁ କଲେ ତନୁକ୍ଷୟ ।<br>
ମାନବ-ଜୀବନ ହୁଅଇ ସଫଳ,<br>
ଏ ମହାଦୀକ୍ଷା କି ବୁଝିବ ଉତ୍କଳ ?'

କିମ୍ବା

ଆଦ୍ୟ ଯୌବନର ସେହି ତପଃସାଧନାର ମୀରବମନ୍ତ୍ର—

'କେତେବେ କର୍ମୀ ତରୁଦଳେ ଚଞ୍ଚଳ ଚକ୍ରାର,<br>
କିପାଇଁ ମାନବ କରେ ଏତେ ଅପଚାର ?<br>
ରୁହି ଅନ୍ତରୀକ୍ଷ, ରୁହି ଆପଣା ଅନ୍ତର,<br>
ଶୁଣ ଶିଖ ସାଧ ସଦା ମୀରବ ମନ୍ତ୍ରର ।

ଏ ଶୈଳୀ କେବଳ ଗୋପବନ୍ଧୁଙ୍କ ପରି ଶୁଦ୍ଧ ବୁଦ୍ଧ ଗମ୍ଭୀର ବ୍ୟକ୍ତିତ୍ୱରୁ ଆଶା କରାଯାଇପାରେ—ଇତର ଲେଖମାନଙ୍କ ନୁହେଁ ।

Midleton Murry ଏହି ଶୈଳୀର ସ୍ୱରୂପ ନିର୍ଦ୍ଦେଶ କରିବାକୁ ଯାଇ କହନ୍ତି, 'on the one hand, it is a Concentration of peculiar and personal emotion, on the other, it is a complete projection of this personal emotion into the created thing', ଅର୍ଥାତ୍ ଶୈଳୀ ଏକାନ୍ତଭାବେ ବ୍ୟକ୍ତିଗତ ହେଲେ ମଧ୍ୟ, ତାହା ନୈର୍ବ୍ୟକ୍ତିକ ନ ହେଲେ ନ ଚଳେ । ଲେଖକର ବ୍ୟକ୍ତିସ୍ୱାତନ୍ତ୍ର୍ୟ ଯଦି ସାର୍ବଜନୀନ ନ ହୁଏ, ପାଠକପ୍ରାଣର ସ୍ୱୀକୃତି ଲାଭ ନ କରେ, ଅଗଣିତ ପାଠକ-

ପ୍ରାଣରେ ଲେଖକ ଯଦି ତା'ର ଭାବ ଓ ଭାବନା ସଞ୍ଚାରିତ କରିବାକୁ ଅସମର୍ଥ ହୁଏ, ଏବଂ ଆଧୁନିକ କବିତା ପରି ତା ଯଦି ଅତ୍ୟନ୍ତ ଦୁର୍ବୋଧ ଓ କ୍ଲିଷ୍ଟ ହୋଇ-ପଡ଼େ, ତେବେ ସେ ଲେଖକର ବ୍ୟକ୍ତିସ୍ୱାତନ୍ତ୍ର୍ୟର କିଛି ସାହିତ୍ୟିକ ମୂଲ୍ୟ ନାହିଁ, କି ସେ ଲେଖାର ଆଦର ଜନ-ସମାଜରେ ନାହିଁ । ଗୋପବନ୍ଧୁ ତାଙ୍କ ସାହିତ୍ୟରେ ଯେଉଁ ବ୍ୟକ୍ତି-ସ୍ୱାତନ୍ତ୍ର୍ୟ ଦେଖାଇ ଅଛନ୍ତି, ଯେଉଁ ଭାବାବେଗ ସେ ତାଙ୍କ ଗଦ୍ୟ କିମ୍ବା ପଦ୍ୟରେ ପ୍ରକାଶ କରିଅଛନ୍ତି, ତାହା ତାଙ୍କର ନିଜସ୍ୱ, ତାଙ୍କର ସ୍ୱକୀୟ ପ୍ରତିଭା-ସଞ୍ଜାତ, ତଥାପି ସେ ସମସ୍ତଙ୍କ ପ୍ରାଣରେ ନିଜର ପ୍ରାଣକୁ ଢାଳି ଦେଇଥିଲେ ବୋଲି ଜନ-ସାଧାରଣଙ୍କର ହୃଦୟର ଅବ୍ୟକ୍ତ ଦୁଃଖ ମର୍ମେ ମର୍ମେ ଉପଲବ୍ଧି କରିପାରୁଥିଲେ । ଗୋଟିଏ ହୃଦୟରେ ସହସ୍ର ହୃଦୟର ପ୍ରତିଛବି ଅଙ୍କିତ ହୋଇଥିଲା । ଗୋପବନ୍ଧୁଙ୍କ ହୃଦୟ ଏକ ହୋଇ ବହୁ ଦୁଃଖାର୍ତ୍ତ ଓ ଦୁର୍ଗତ ହୃଦୟର ପ୍ରତିଭୂସ୍ୱରୂପ ଥିଲା । ଦୁଇ ଚକ୍ଷୁ ଥାଇ ସେ ଥିଲେ ଅୟୁତଚକ୍ଷୁ, ଗୋଟିଏ ମନ ଥାଇ ସେ ଥିଲେ ନିୟୁତମନା । ତେଣୁ ପ୍ରାଣର ଗଭୀର ସମ୍ବେଦନଶୀଳତା ଓ କରୁଣାପୂର୍ଣ୍ଣ ବିରାଟ ବ୍ୟକ୍ତିତ୍ୱଯୋଗେ ସେ ଯେତେବେଳେ ଉତ୍କଳର ପୁରପଲ୍ଲୀର ଦୁଃଖ ଦୁର୍ଦ୍ଦଶା ଦେଖି ଅଶ୍ରୁମୋଚନ କରି ଲେଖିଅଛନ୍ତି :—

> "କେତେ କେତେ କୃଷୀ ଭଲ ଭଲ ଲୋକ,
> ନ ପାନ୍ତି ଦି ବେଳା ପେଟପୂରା ଟୋକ ।
> × × ×
> ଦେହେ ନାହିଁ ମାଂସ ଦୋହଲୁଛି କଣ୍ଠା,
> ଅନାହାରେ ଆହା ନ ଉଠଇ ଅଣ୍ଟା ।
> × × ×
> ଉତ୍କଳର କେତେ କନ୍ୟା ନାରଖାର
> ନ କରନ୍ତି ପେଟ ପୂରାଇ ଆହାର ।
> ଲଜ୍ଜା ଢାଙ୍କିବାକୁ ନ ପାନ୍ତି ବସନ,
> ଫୁଟେ ନାହିଁ କେବେ ଅଙ୍ଗେ ଯଉବନ ।"

ସେତେବେଳେ ପାଠକ ଏଥିରେ ଗୋପବନ୍ଧୁଙ୍କର ବ୍ୟକ୍ତିସ୍ୱାତନ୍ତ୍ର୍ୟ ଦେଖି କେବଳ ବିସ୍ମିତ ହୁଏନାହିଁ । ସେତେବେଳେ ପାଠକ ଭାବେ, ଏହା ହିଁ ଆମ ଜାତିର ଦୁର୍ଦ୍ଦଶା, ଏହା ହିଁ ଓଡ଼ିଶାର ବାସ୍ତବ ନିଦାରୁଣ ଚିତ୍ର, ଏହା ହିଁ ଆମର ଜାତୀୟ ଦୁର୍ବିପାକ । ଏହା ଭାବି ପାଠକ ଗୋପବନ୍ଧୁଙ୍କ ଅଶ୍ରୁଧାରରେ ନିଜର ଅଶ୍ରୁଧାର ମିଶାଇ କହେ 'ଧନ୍ୟ ତୁମେ କବି, ତୁମପରି ଏ ଜାତିକୁ ଆଉ କିଏ ଚିହ୍ନିଛି ; କିଏ ବା ଏପରି ଧ୍ୟାନ-ନିବିଷ୍ଟଭାବରେ ଏ ଜାତିର ଅନ୍ତର ମଧ୍ୟରେ ପ୍ରବେଶ କରିପାରିଛି ।'

ଗୋପବନ୍ଧୁ ତାଙ୍କର କର୍ମସାଧନା ଓ ସାହିତ୍ୟ-ସୃଷ୍ଟି ମଧ୍ୟରେ ନିଜେ କାନ୍ଦି ଆମକୁ ବହୁତ କନ୍ଦାଇ ଅଛନ୍ତି, କିନ୍ତୁ ତାଙ୍କ ରଚନାରେ କ'ଣ ହାସ୍ୟରସର ଅବତାରଣା ନାହିଁ ? ସେ ପ୍ରଶାନ୍ତ ତରୁଣ ମୁଖ-ମଣ୍ଡଳରେ କ'ଣ ଆନନ୍ଦର ପ୍ରସ୍ରବଣ ନ ଥିଲା ? ତାଙ୍କ ପ୍ରାଣରେ ଯେପରି ଥିଲା କରୁଣାର ଅବ୍ୟାହତ ଫଲ୍‌ଗୁଧାରା, ସେହିପରି ଅନ୍ୟାୟ, ଅତ୍ୟାଚାର ଓ ଅପଚାରର ପ୍ରତି ତୀବ୍ର ବଳିଷ୍ଠ ବିଦ୍ରୋହାତ୍ମକ ଭାବ । ଏହି ବିଦ୍ରୋହ ପ୍ରକାଶ କରିବା ନିମନ୍ତେ ସେ ଶାଣିତ ବ୍ୟଙ୍ଗ ଓ ବିଦ୍ରୂପର ଆଶ୍ରୟ ନେଇ ଅଛନ୍ତି । ଅଶ୍ରୁ ଯେଉଁଠାରେ ବ୍ୟର୍ଥତାର ପରାଜୟ ସ୍ୱୀକାର କରିଅଛି, ସେଠାରେ ସେ ପ୍ରୟୋଗ କରିଅଛନ୍ତି ଏହି ତୀକ୍ଷ୍ଣ ବ୍ୟଙ୍ଗାସ୍ତ୍ର । ଆବେଗମୟ ଭାବାତ୍ମକ ଗୀତିକବିତାରେ ଏ ବ୍ୟଙ୍ଗ ବିଦ୍ରୂପର ଅଭିବ୍ୟକ୍ତିର ଅବକାଶ ନାହିଁ; କିନ୍ତୁ ଗୋପବନ୍ଧୁଙ୍କ ଲିଖନ-ଶୈଳୀର ସ୍ୱରୂପ ନିର୍ଦ୍ଧାରଣ କରିବାକୁ ହେଲେ ତାଙ୍କର ଗଦ୍ୟ ଓ କବିତାରଚନା ଏ ଉଭୟକୁ ଏକ ସଙ୍ଗରେ ବିଚାର କରିବାକୁ ହେବ । 'ସମାଜ'ର ସମ୍ପାଦକୀୟ ଆଲୋଚନା ଓ ବକ୍ତୃତାମାନଙ୍କରେ ସ୍ୱଭାବ-କବି ଗୋପବନ୍ଧୁ ସମୟେ ସମୟେ ଉପଯୋଗୀ ସଂସ୍କୃତ ଶ୍ଳୋକ ଓ ପୂର୍ବବର୍ତ୍ତୀ କବିମାନଙ୍କର କବିତାରୁ ପଦେ ଅଧେ, ଉଦ୍ଧାର କରି କିମ୍ବା ସ୍ୱରଚିତ କବିତାରୁ କେତେକ ପଦ ସଂଯୋଗ କରି ବକ୍ତବ୍ୟକୁ ଅଧିକ ପ୍ରାଣସ୍ପର୍ଶୀ କରୁଥିଲେ । ବେଳେବେଳେ ବକ୍ତବ୍ୟ କିମ୍ବା ବିଷୟ-ବସ୍ତୁକୁ ଆବେଦନଶୀଳ ଓ ଉପଭୋଗ୍ୟ କରିବା ନିମନ୍ତେ ସେ ବ୍ୟାସକବି ଫକୀର-ମୋହନ ସେନାପତିଙ୍କ ପରି ପ୍ରସିଦ୍ଧ ସଂସ୍କୃତ ଶ୍ଳୋକମାନଙ୍କୁ ବିକୃତାକାରରେ ପ୍ରକାଶ କରୁଥିଲେ । ଇଉନିୟନ ପ୍ରେସିଡେଣ୍ଟମାନଙ୍କ ଦୁର୍ନୀତି ଓ ଅତ୍ୟାଚାରର ନିନ୍ଦା କରି ସେ ଥରେ 'ସମାଜ'ରେ ଲେଖିଥିଲେ—

'ରେସିଡେଣ୍ଟ ପ୍ରେସିଡେଣ୍ଟ ସୁ ପ୍ରଡେଣ୍ଟ ତଥୈବଚ—<br>ସଂଯୁକ୍ତେଷ୍ଠାଃ ସମାମ୍ନାତା ରାଜ୍ୟନାଶସ୍ୟ ହେତବଃ ।'

ସମ୍ବାଦର ନାମକରଣରେ ମଧ୍ୟ ସ୍ୱଭାବକବି ଗୋପବନ୍ଧୁଙ୍କର କବିତ୍ୱର ଛଟା ପ୍ରକାଶ ପାଉଥିଲା । ଗୋଟିଏ ସାଂଘାତିକ ସତ୍ୟ ଘଟନାକୁ ସରକାର ମିଥ୍ୟା ବୋଲି ପ୍ରମାଣ କରିବାର ଅପଚେଷ୍ଟାକୁ ଲକ୍ଷ୍ୟକରି ସେ ଏ ସମ୍ପର୍କରେ ନିର୍ଭୀକଭାବରେ ଯେଉଁ ସମ୍ବାଦ ପ୍ରକାଶ କରିଥିଲେ, ସେ ସମ୍ବାଦର ନାମକରଣ ଥିଲା—

'ଅଦ୍ଭୁତ ସେ ସତ୍ୟ ଘଟନା<br>କିମ୍ବା କରି ମିଥ୍ୟା ରଚନା ?'

ସରକାରଙ୍କ ଅଫିମ ବେପାର ଆମ ଦେଶର ଲୋକଙ୍କୁ କିପରି ନିଃସ୍ୱ, ଚରିତ୍ରହୀନ ଓ ନିଶାଖୋର କରି ପକାଉଛି, ସେ ବିଷୟରେ 'ସମାଜ'ରେ ଗୋଟିଏ

ତଥ୍ୟପୂର୍ଣ୍ଣ ବିବରଣୀ ଉପସ୍ଥାପିତ କରି ଉପସଂହାରରେ ଲୋକମାନଙ୍କୁ ଉପଦେଶ ଦେଇ ଲେଖିଥିଲେ—

'କୂଟ ବେପାରୀ ମାଡ଼କୁ ନ ଜାଣି
ଆପୁ ଭକ୍ଷି ମଜା ପାଲିଟିଲଣି,
ଘରଧନକୁ ପରହାତେ ଦେଲ
ପେଟ ବିକଳେ ଜଳବଳ ହେଲ
ଏଥକୁ ଉପାୟ !
ଅସହଯୋଗଟି ଜାଣ ନିଶ୍ଚୟ ।'

୧୯୨୧ ମସିହା ସେପ୍‌ଟେମ୍ବର ମାସ ୧୦ ତାରିଖରେ ଗୋପବନ୍ଧୁଙ୍କ ଉପରେ ସରକାର ୧୪୪ ଧାରା (ମୁଖବନ୍ଧ ଆଇନ) ଜାରି କରିଥିଲେ । ସେ ସମ୍ପର୍କରେ ସେ ଗୋଟିଏ କୌତୁକପୂର୍ଣ୍ଣ ଅଥଚ ବୈପ୍ଳବିକ ଭାବବ୍ୟଞ୍ଜକ କବିତା 'ସମାଜ'ରେ ଏହିପରି ଭାବରେ ଲେଖିଥିଲେ—

'ପୁରୀ ଆଉ କଟକର ଜିଲା ମେଜେଷ୍ଟର
ଏକଶତ ଚଉରାଳିଶ ଦଫାରେ ଅର୍ଡର
ଜାରି କରି ମୋର ମୁଖ କରିଛନ୍ତି ବନ୍ଦ
ସେଥିଲାଗି ନୁହେଁ ମୁହିଁ ଟିକେ ନିରାନନ୍ଦ ;
ହୁକୁମ ନ ମାନି କାର୍ଯ୍ୟ କରିବାକୁ ଭାଇ
ମୋ ହୃଦେ ଶକତି ଦେଇଛନ୍ତି ବିଶ୍ୱସାଇଁ ।'

ଏହି କବିତାରେ ଅସହଯୋଗ ଆନ୍ଦୋଳନ ପ୍ରତି ଉଦାସୀନତା ପ୍ରକାଶ କରୁଥିବା ଗ୍ରାମସମାଜକୁ ଲକ୍ଷ୍ୟକରି ଲେଖିଥିଲେ—

'ହେ ଗ୍ରାମମଣ୍ଡଳି କର କେତେ ବାହାଦୁରୀ
ଦେଶର ଉଦ୍ଧାରପାଇଁ ପକାଅ ତ ଦୁରି
ହିସାବ-କିତାବବେଳେ ଗଲା ଏବେ ଜଣା
ତୁମ୍ଭ ଦେଶ-ଅନୁରାଗ ଜଘନ୍ୟ ଛଳନା ।'

ଯେଉଁମାନେ 'ସରକାର ହାଇ ମାରିବାର ଅନୁମାନ କରି ଫୁଟୁକି ମାରିବାକୁ ତିଆର' ସେମାନଙ୍କୁ ବ୍ୟଙ୍ଗକରି ସେ ଉଲ୍ଲେଖ କରିଥିଲେ—

'ଗର୍ଦ୍ଦଭାଣାଂ ବିବାହେ ତୁ ବାନରାଃ ସ୍ତୁତିପାଠକାଃ
ଅନ୍ୟୋନ୍ୟଂ ତେ ପ୍ରଶଂସନ୍ତେ ଅହୋରୂପ ମହୋଧ୍ୱନିଃ ।'

ଗୋପବନ୍ଧୁଙ୍କ ଗଦ୍ୟରଚନା ଉପର ଭାବୋଦ୍ଦୀପକ, ରସସଞ୍ଚାରପୂର୍ଣ୍ଣ, ଚିତ୍ତାକର୍ଷକ ଏବଂ କାବ୍ୟୋପମ ତାହାର ଗୋଟିଏ ମାତ୍ର ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରାଗଲା ।

୧୯୧୮ ମସିହା ଜାନୁଆରୀ ମାସ ୧୭ ତାରିଖଦିନ ଭାଗୀରଥୀନାମକ ଗୋଟିଏ ପିତୃମାତୃହୀନ ଦରିଦ୍ର ବାଳକର ସତ୍ୟବାଦୀବିଦ୍ୟାଳୟର ଛାତ୍ରାବାସରେ ପରଲୋକ ହୋଇଥିଲା । ଭାଗୀରଥୀର ଏହି ହୃଦୟ-ବିଦାରକ ଅକାଳମୃତ୍ୟୁରେ ବ୍ୟଥିତ ହୋଇ ଗୋପବନ୍ଧୁ ତାଙ୍କ ସମ୍ପାଦିତ 'ସତ୍ୟବାଦୀ' ମାସିକ ପତ୍ରିକାରେ 'ସତ୍ୟବାଦୀ କୁଳଗୃହରେ ବିୟୋଗଦୁଃଖ' ନାମ ଦେଇ ଗୋଟିଏ ମର୍ମସ୍ପର୍ଶୀ ଲେଖା ଲେଖିଥିଲେ । ସେ ଲେଖାର ଉପସଂହାରରେ ଉଲ୍ଲେଖ ଥିଲା, "ଆଜି ଶ୍ରୀପଞ୍ଚମୀ, ପିଲାଏ ଗୀତ ବୋଲୁଛନ୍ତି; କାହିଁ ତୋ ସ୍ୱର ଶୁଭୁ ନାହିଁ ? ସଙ୍ଗୀମାନଙ୍କର ସଙ୍ଗୀତରେ ଝଙ୍କାର ସେତେ ଉଠୁନାହିଁ । ଗଛ ଓହାଡ଼ରେ ରହି ଥରେ ହେଲେ ମିଶାଇ ଦଉନାଉଁ ?

× × × ×

ଆଶ୍ରମ ଅଗଣାରେ ହରିଣଛୁଆପରି କେତେ ଦଉଡ଼ୁଥାଉ, ଅଗମ୍ୟ ରାଜ୍ୟରେ ଯାଇ ପଶିଗଲୁ ଆଉ ଆସିପାରୁନାହୁଁ, ସହି ଯା ପଛେ ବାବା ତୁ ଅଛୁଟି କି ? ସରସ୍ୱତୀଙ୍କି ବିସର୍ଜନ କରି ନଈରେ ପକାଇବାପାଇଁ ପିଲାଏ ଏବେ କାନ୍ଧେଇ ନେଉଛନ୍ତି, ତତେ ଖୋଜୁଛନ୍ତି । ତୁ କ'ଣ ଆଉ ଆସିବୁ ? ତତେ ତ ଏଇ ସକାଳୁତଳେ ଚିତାରେ ସମସ୍ତେ ମିଳି ଦଗ୍ଧ କରିଦେଲେ । ଅବୋଧ ଶିଶୁ, ଏବେ ସରସ୍ୱତୀ ନେଲାବେଳେ ବାଟରେ ସେହି ଚିତାଭସ୍ମରେ ଗଡ଼ୁଛ ଯେ ଭାଗୀରଥୀକି ଆଉ କାହିଁ ପାଇବ ? ଚିତାମାଟିକି ଦେହରେ ବୋଳି ହେଉଛ, ହଁଅ, ଭାଗୀରଥୀ କ'ଣ ଆଉ ସେଠଉଁ ଉଠି ବାହାରିବ ? ବରଂ ବୁଝ କି ଭାଗୀରଥୀ ତ ସମସ୍ତଙ୍କୁ ଏତେ ସୁଖ ପାଉଥାଏ, ଏକାବେଳକେ ଛାଡ଼ି ଚାଲିଯିବ କେମନ୍ତେ ? କୁଳଗୃହରେ ତା'ର ସାଧନା ସରିଗଲା, ତା ପ୍ରାଣର ବିକାଶଲାଗି ବିଶାଳକ୍ଷେତ୍ର ଲୋଡ଼ାପଡ଼ିଲା, ତେଣୁ ଏବେ ସେ ମାଟି ପାଣି ପବନ ତରୁଲତା ଆକାଶ ସବୁଥିରେ ବ୍ୟାପି ଅଲକ୍ଷିତ-ଭାବରେ ସାରା ସୃଷ୍ଟିର ସେବାକରୁଛି ।"

———

## ପଞ୍ଚଦଶ ପରିଚ୍ଛେଦ

### ଓଡ଼ିଆ-ସାହିତ୍ୟରେ ଗୋପବନ୍ଧୁଙ୍କ ସ୍ଥାନ

ଓଡ଼ିଆସାହିତ୍ୟରେ ଗୋପବନ୍ଧୁଙ୍କ ସ୍ଥାନ ନିରୂପଣ କରିବା ଅବଶ୍ୟ ଗବେଷଣାସାପେକ୍ଷ; କିନ୍ତୁ ଏହା ବୋଲି ଏକ ଦୁରୂହ ବ୍ୟାପାର ନୁହେଁ । ଏହା ପୂର୍ବରୁ କୌଣସି କୌଣସି ଆଲୋଚକ ଗୋପବନ୍ଧୁଙ୍କ 'ବନ୍ଦୀର ଆତ୍ମକଥା'କୁ 'ସ୍ୱରାଜ୍ୟ-ଗୀତା', ଏବଂ ଗୋପବନ୍ଧୁଙ୍କର ସମଗ୍ର ସାହିତ୍ୟସୃଷ୍ଟିକୁ 'ଗୋପବନ୍ଧୁ ଉପନିଷଦ୍' ଆଖ୍ୟା ଦେଇଅଛନ୍ତି । କେହି କେହି ମତ ଦିଅନ୍ତି, ଓଡ଼ିଆ ସାହିତ୍ୟରେ ସତ୍ୟବାଦୀ-ସାହିତ୍ୟର ସ୍ୱାତନ୍ତ୍ର୍ୟ ସର୍ବଜନବିଦିତ, ତେଣୁ ଓଡ଼ିଆସାହିତ୍ୟର ସେହି ଯୁଗକୁ 'ସତ୍ୟବାଦୀଯୁଗ' ନାମ ଦିଆଯାଇପାରେ, ଏବଂ ଗୋପବନ୍ଧୁ ଏହି ସାହିତ୍ୟ-ଯୁଗର ପୁରୋଧା । ଆଉ ପୁଣି କେହି କେହି କହନ୍ତି, ଗୋପବନ୍ଧୁ ସତ୍ୟବାଦୀଯୁଗ କାହିଁକି, ଓଡ଼ିଆ-ସାହିତ୍ୟରେ ଏକ ନବଯୁଗର ପ୍ରବର୍ତ୍ତକ । ତାଙ୍କଦ୍ୱାରା ଓଡ଼ିଆ-ସାହିତ୍ୟର ଅଭିମୁଖ୍ୟ ସମ୍ପୂର୍ଣ୍ଣରୂପେ ପରିବର୍ତ୍ତିତ ହୋଇଅଛି । ତାଙ୍କ ସାହିତ୍ୟ ପ୍ରକୃଷ୍ଟ ଗଣ କିମ୍ବା ଜନ-ସାହିତ୍ୟ । ଜନ-ସେବାହିଁ ଏ ସାହିତ୍ୟର ପ୍ରଧାନ ଉଦ୍ଦେଶ୍ୟ, ତେଣୁ ଏହା ଅତି-ସହଜ-ସୁବୋଧ-ସରଳ-ତରଳ-ଭାଷାରେ ଜନ-ସାଧାରଣଙ୍କ ନିମନ୍ତେ ଅଭିପ୍ରେତ । ଗୋପବନ୍ଧୁ ଯେଉଁ ଭାଷାରେ ତାଙ୍କର ସାହିତ୍ୟ ସୃଷ୍ଟି କରିଯାଇଅଛନ୍ତି, ତାହା କେବଳ ତାଙ୍କର ପ୍ରାଣର ଭାଷା ନୁହେଁ, ଏହା ଲକ୍ଷ ଲକ୍ଷ ଓଡ଼ିଆଙ୍କ ପ୍ରାଣର ଭାଷା । କୌଣସି କୌଣସି ସମାଲୋଚକ ମଧ୍ୟ ଦୃଢ଼ ଓ ନିଃସଙ୍କୋଚଭାବରେ ବ୍ୟକ୍ତ କରିଅଛନ୍ତି, ଓଡ଼ିଆରେ ପ୍ରଗତିଶୀଳ ଓ ବାସ୍ତବବାଦୀ ସାହିତ୍ୟର ପ୍ରଥମ ସ୍ରଷ୍ଟା ଓ ପଥିକୃତ୍ ହେଉଛନ୍ତି ଗୋପବନ୍ଧୁ । କେବଳ ବ୍ୟକ୍ତିଗତ ଅନୁଭୂତି ନୁହେଁ, ଅର୍ଥନୈତିକ ସାମାଜିକ, ଅଗାଧ୍ୟାତ୍ମ, ରାଜନୈତିକ ଏବଂ ଗମ୍ଭୀର ଓ ବ୍ୟାପକ ଜାତୀୟ ଚେତନାର ପ୍ରତ୍ୟକ୍ଷ ଓ ନିବିଡ଼ତମ ଅଭିବ୍ୟକ୍ତି ଆମ୍ଭେମାନେ ଓଡ଼ିଆ-ସାହିତ୍ୟରେ ପ୍ରଥମତଃ ଗୋପବନ୍ଧୁଙ୍କ ସାହିତ୍ୟରେ ଦେଖିବାକୁ ପାଉ । ଏ ସାହିତ୍ୟରେ ଗୋଟିଏ ଜୀବନ ସହିତ ଯେପରି ଲକ୍ଷ ଲକ୍ଷ ଜୀବନର ଘନିଷ୍ଠ ସଂଯୋଗ, ସେହିପରି ସ୍ରଷ୍ଟାଙ୍କ ସହିତ ଅଗଣିତ ଶିକ୍ଷିତ, ଅଶିକ୍ଷିତ ସାକ୍ଷର ଓ ନିରକ୍ଷର ପାଠକମାନଙ୍କର ଅବିଚ୍ଛିନ୍ନ ସମ୍ପର୍କ । ଗୋପବନ୍ଧୁଙ୍କ ସାହିତ୍ୟ କେବଳ ଜନ-ସାହିତ୍ୟ ନୁହେଁ, ଏହା ଜନ-ସ୍ୱୀକୃତ

ସାହିତ୍ୟ । ଏ ଜନ କେବଳ ବଂଶ ଶତାବ୍ଦୀର ବିଜ୍ଞାନ-ବୁଦ୍ଧିସମ୍ପନ୍ନ ପାଠକ ନୁହନ୍ତି, ଏ ଜନ ସର୍ବଶ୍ରେଣୀର ଏବଂ ସର୍ବ କାଳର । ଗୋପବନ୍ଧୁଙ୍କ ସାହିତ୍ୟ ତ୍ୟାଗ, ପ୍ରେମ, ତିତିକ୍ଷା, ନିଃସ୍ୱାର୍ଥ ଜନସେବା ଏବଂ ଆତ୍ମୋତ୍ସର୍ଗର ଯେଉଁ ଦୀପଶିଖା ପ୍ରଜ୍ୱଳିତ କରିରଖିଛି, ତାହା କୌଣସି ଦେଶକାଳର ଗଣ୍ଡିରେ ସୀମାବଦ୍ଧ ହୋଇ ରହିବାର ନୁହେଁ, ତାହା ବିଶ୍ୱବ୍ୟାପୀ ଓ ଚିରନ୍ତନ । ଏହି ନୈତିକ ଅରାଜକତାଯୁଗରେ ତାହାହିଁ ଆତ୍ମପ୍ରବଞ୍ଚନା-ପୂର୍ଣ୍ଣ ମାନବ-ସମାଜର ଶୁଭ୍ର ସମୁଜ୍ଜ୍ୱଳ ଆଲୋକସ୍ତମ୍ଭ ।

ଗୋପବନ୍ଧୁ-ସାହିତ୍ୟର ଅଭିନବତ୍ୱ ହେଉଛି, ଏହାର ମୌଳିକତା-କେବଳ ଚିନ୍ତାରେ ନୁହେଁ, ଭାଷାବିନ୍ୟାସରେ । ଏ ସାହିତ୍ୟରେ ଅନୁସରଣ କିମ୍ବା ଅନୁକରଣର ଗ୍ରନ୍ଥି ନାହିଁ; କିନ୍ତୁ ବିଶ୍ୱସାହିତ୍ୟର ଅମୂଲ୍ୟ ଚିନ୍ତାରାଶିକୁ ଓଡ଼ିଆ-ସାହିତ୍ୟର ସମ୍ପଦୀଭୂତ କରିବାପାଇଁ ସେ ନିତାନ୍ତ ବ୍ୟାକୁଳ ଥିଲେ । ଓଡ଼ିଆ-ସାହିତ୍ୟକୁ ସେ ବିଶ୍ୱସାହିତ୍ୟର ପ୍ରବାହରୁ ବିଚ୍ଛିନ୍ନ କରିବାକୁ ଚାହିଁ ନ ଥିଲେ; କିନ୍ତୁ ଉତ୍କଳୀୟ ତଥା ଭାରତୀୟ ଆର୍ଯ୍ୟସଂସ୍କୃତିରେ ତାଙ୍କର ବିଶେଷ ଆସ୍ଥା ଥିଲା । ଏହି ସୁମହାନ ସଂସ୍କୃତିର ପୁନରୁଜ୍ଜୀବନ ତାଙ୍କ ଜୀବନ ଏବଂ ସାହିତ୍ୟର ଚରମ ଲକ୍ଷ୍ୟ ଥିଲା; ପ୍ରାଚୀନ ଭାରତୀୟ ସଂସ୍କୃତି ପ୍ରତି ତାଙ୍କର ଏ ଯେଉଁ ଗଭୀର ଶ୍ରଦ୍ଧା, ତାହାହିଁ ତାଙ୍କ ସାହିତ୍ୟରେ ସର୍ବତ୍ର ପ୍ରକଟିତ ହୋଇଅଛି; କିନ୍ତୁ ଏହା ବୋଲି ଗୋପବନ୍ଧୁ ରକ୍ଷଣଶୀଳ ନ ଥିଲେ, ଯୁଗୋପଯୋଗୀ ବୈଜ୍ଞାନିକଚିନ୍ତାର ଆଲୋକରେ ତାଙ୍କର ଚିତ୍ତ ସମୁଦ୍‌ଭାସିତ ଥିଲା, ଧନୀ ନିର୍ଦ୍ଧନର ବିଭେଦ ଲୋପ କରିବାପାଇଁ ସେ ସଚେଷ୍ଟ ଥିଲେ, ମହାତ୍ମାଗାନ୍ଧିଙ୍କ ହରିଜନ-ଆନ୍ଦୋଳନ ପୂର୍ବରୁ ସେ ଆମ ସମାଜରୁ ସ୍ପୃଶ୍ୟାସ୍ପୃଶ୍ୟ ଭେଦଭାବ ଦୂର କରିବା ନିମନ୍ତେ ଚେଷ୍ଟା କରିଥିଲେ । ଶୋଷଣକାରୀ ଓ ଲୁଣ୍ଠନପ୍ରିୟ ଶାସକଗୋଷ୍ଠୀ ରାଜା ଓ ଜମିଦାରଙ୍କ ଅତ୍ୟାଚାରର ଅବସାନ ଘଟାଇବା ନିମନ୍ତେ ସେ ସର୍ବଦା ବଦ୍ଧପରିକର ଥିଲେ । ତାଙ୍କର ସଂଗଠନ-ଶକ୍ତି ଥିଲା ଅଭୂତପୂର୍ବ, ଅଦମ୍ୟ ଓ ଅକ୍ଳାନ୍ତ । ତାଙ୍କ ସାହିତ୍ୟରେ ଆମେ ସର୍ବପ୍ରଥମେ ଦେଖିବାକୁ ପାଉ ଜୀବନ ସହିତ ସାହିତ୍ୟର ପୂର୍ଣ୍ଣ ସାମଞ୍ଜସ୍ୟ । ସେ ଜୀବନରେ ଯାହା କରିବାକୁ ଚାହିଁଥିଲେ, ଦେଶର ମଙ୍ଗଳମୟ ଭବିଷ୍ୟତ ନିମନ୍ତେ ଯାହା ଚିନ୍ତା କରୁଥିଲେ ଏବଂ ଦେଶବାସୀଙ୍କ ଉନ୍ନତି ନିମନ୍ତେ ଆତ୍ମୋତ୍ସର୍ଗ କରିବା ନିମନ୍ତେ ପ୍ରାଣରେ ନିରନ୍ତର ଯେଉଁ ଶ୍ରେୟବୋଧ ଓ ସଦିଚ୍ଛା ପୋଷଣ କରିଥିଲେ, ତାହାର ବାଙ୍ମୟ ପ୍ରକାଶ କେବଳ ଆମେ ତାଙ୍କ ସାହିତ୍ୟରେ ଦେଖିବାକୁ ପାଉଁ । ତାଙ୍କର ସାହିତ୍ୟ, ତାଙ୍କ ଜୀବନର ଅନ୍ୟାନ୍ୟ ଲୋକହିତକର କାର୍ଯ୍ୟରୁ ପୃଥକ୍ ନ ଥିଲା । ସାମାଜିକ, ରାଜନୈତିକ ଓ ସାମ୍ପ୍ରଦାୟିକ କ୍ଷେତ୍ରରେ ଯେଉଁ ଜନକଲ୍ୟାଣବ୍ରତରେ ଉଦ୍‌ବୁଦ୍ଧ ହୋଇ ସେ କର୍ମଭୂମିରେ ଅବତୀର୍ଣ୍ଣ ହେଉଥିଲେ, ତାଙ୍କର ଗଦ୍ୟ, ପଦ୍ୟ ଓ ବକ୍ତୃତା ଏ ସକଳ ସାହିତ୍ୟରେ ସେହି ଜନକଲ୍ୟାଣ-କାମନା ହିଁ ସରଳ ଓ ଜୀବନ୍ତ ଭାବରେ ଅଭିବ୍ୟକ୍ତି ଲାଭକରିଅଛି ।

ଗୋପବନ୍ଧୁଙ୍କ ସାହିତ୍ୟ 'ହିତଂ ମନୋହାରି ଚ ଦୁର୍ଲ୍ଲଭଂ ବଚଃ'—ମନୋହର ହୋଇଥିବ ଅଥଚ ଜନସାଧାରଣଙ୍କ ପ୍ରତି ହିତକାରକ ହୋଇଥିବ ଏପରି ବାକ୍ୟ ସୁଦୁର୍ଲ୍ଲଭ । କେବଳ ଆନନ୍ଦ କିମ୍ବା ରସ ସୃଷ୍ଟିକରିବା ଯେଉଁ କବିମାନଙ୍କର ଲକ୍ଷ୍ୟ ତାଙ୍କ କାବ୍ୟକବିତାରେ ଭାଷାର ସୌନ୍ଦର୍ଯ୍ୟ ଆଇପାରେ; କିନ୍ତୁ ଜନସାଧାରଣଙ୍କ ପ୍ରତି ଯାହା ବ୍ୟକ୍ତିଗତ ଓ ସାମାଜିକ ଜୀବନ-ଦୃଷ୍ଟିରୁ ମଙ୍ଗଳମୟ, ତାହାର ସ୍ପର୍ଶ ଆଭାସ ନ ଥାଇ ପାରେ । ଆଧୁନିକ ସାହିତ୍ୟରେ ଯୌନ ବିକୃତି କିମ୍ବା ବିଶ୍ଳେଷଣର ଯେଉଁ ଉଲଗ୍ନ ଓ ରୁଚିବିହୀନ ଚିତ୍ର ଦେଖିବାକୁ ମିଳେ, ସେଥିରେ ଆନନ୍ଦ ଥାଇପାରେ; କିନ୍ତୁ 'ମଙ୍ଗଳ' କାହିଁ ? ଜାତିର ସର୍ବାଙ୍ଗୀନ ଉନ୍ନତି-ସାଧନ ଗୋପବନ୍ଧୁଙ୍କ ଜୀବନର ପରମବ୍ରତ ଥିବାରୁ ସେ ତାଙ୍କ ସାହିତ୍ୟରେ ସର୍ବଦା ଏହି 'ହିତ'କୁ ହିଁ ପ୍ରଧାନ ଅବଲମ୍ବନରୂପେ ଗ୍ରହଣ କରିଅଛନ୍ତି । ଜାତିର ଏହି ହିତ-ସାଧନା ତାଙ୍କର ଭଗବତ୍ ପ୍ରୀତି ସହିତ ଜଡ଼ିତ ହୋଇଥିବାରୁ, ଅର୍ଥାତ୍, ମନୁଷ୍ୟସେବାରେ ସେ ଭଗବତ୍-ସେବା ଦେଖି ପାରୁଥିଲେ ବୋଲି, 'ସର୍ବ ପ୍ରାଣୀର ହୃଦସ୍ଥ' ତାଙ୍କ ହୃଦୟରେ ସହଜ ସ୍ୱାଭାବିକଭାବରେ ଅଙ୍କିତହୋଇ ସ୍ୱତଃସ୍ଫୂର୍ତ୍ତିଭାବରେ ଯେଉଁ ଶୁଭବୁଦ୍ଧି ପ୍ରଣୋଦିତ ଆବେଗ କିମ୍ବା ଉଚ୍ଛ୍ୱାସର ସ୍ରୋତ ତାଙ୍କ ସାହିତ୍ୟରେ ପ୍ରବାହିତ ହୋଇଅଛି, ତାହା ଗଙ୍ଗାଧାର ପରି ଯେପରି ସ୍ୱଚ୍ଛ ଓ ନିର୍ମଳ, ସେହିପରି ଛଳନା ଓ ଅହଂଭାବବିବର୍ଜିତ, ନିରାଭରଣ, ସାରଲ୍ୟ ଓ ସ୍ୱଚ୍ଛନ୍ଦତାର ସୁଷମାରେ ସୌଷ୍ଠବାନ୍ୱିତ ।

ଗୋପବନ୍ଧୁଙ୍କ ସାହିତ୍ୟରେ ଭାଷାର ସରଳତା ଉପରେ ଅତ୍ୟଧିକ ଗୁରୁତ୍ୱ ଦେଇ ଯେଉଁମାନେ ଏହି ତରଳ ସରଳ, କାନ୍ତ କୋମଳ ଭାଷାକୁ ହିଁ ଓଡ଼ିଆ-ସାହିତ୍ୟରେ ଗୋପବନ୍ଧୁଙ୍କର ପରମ ବୈଶିଷ୍ଟ୍ୟ ବୋଲି ପ୍ରତିପାଦନ କରିବାକୁ ଚେଷ୍ଟା-କରନ୍ତି, ସେମାନଙ୍କର ମତ ପୂର୍ଣ୍ଣଭାବରେ ନୁହେଁ, ଆଂଶିକ କିମ୍ବା ଗୌଣଭାବରେ ସତ୍ୟ । ଗୋପବନ୍ଧୁଙ୍କର ଏ ସରଳତାର ଉତ୍ସ ସନ୍ଧାନକରିବାକୁ ହେବ ଆମ୍ଭମାନଙ୍କୁ ତାଙ୍କ ଜୀବନର ଅତଳ ପ୍ରଦେଶରେ, ତାଙ୍କର ଜୀବନ-ଦର୍ଶନର ଏକ ନିଗୂଢ଼ ତତ୍ତ୍ୱରେ । ୧୩୧୮ ସାଲର 'ମୁକୁର' ଷଷ୍ଠ ଭାଗ ୩ୟ ସଂଖ୍ୟାରେ ତାଙ୍କର 'ସରଳତା' ଶୀର୍ଷକ ଗୋଟିଏ କ୍ଷୁଦ୍ର କବିତା ପ୍ରକାଶ ପାଇଥିଲା । ସେଥିରେ ଲେଖା ଥିଲା—

'ଆସ ସରଳତା କୋମଳଭାଷିଣୀ
ନଦୀ-ବନ ଗିରି-ନିଭୃତବାସିନୀ
ଉଦାର ଉଜ୍ଜ୍ୱଳ ଆଲୋକପିହିତା
ପ୍ରକୃତିର ଗୁରୁ ପ୍ରଥମ ଦୁହିତା ।'

× × ×

ନାହିଁ ତୋର ଭୟ, ନ ହୁଏ ସଂଶୟ
ସହଜେ ସକଳେ ଦେଉ ପରିଚୟ ।
ସରଳତା ତୋର ମଧୁର ମୂରତି
ଜନମାଏ ବିଶ୍ୱପରାଣେ ପୀରତି ।

× × × ×

ସେ ସ୍ୱର୍ଗୀୟ ଭାବ ଅପୂର୍ବ ମାଧୁରୀ
ଥାଉ ନିରନ୍ତର ମୋ ଅନ୍ତର ପୂରି
ଆସ ମଧୁମୟୀ ଶାନ୍ତ ସରଳତା
ପ୍ରଚାର ମୋ ହୃଦେ ଗଭୀର ବାରତା'—

ତେଣୁ ଯେଉଁମାନେ କହନ୍ତି କେବଳ ଗଣ-ସାହିତ୍ୟ ସୃଷ୍ଟି କରିବାନିମନ୍ତେ ଗୋପବନ୍ଧୁ ସରଳଭାଷାରେ ତାଙ୍କର କବିତା ସବୁ ଲେଖିଅଛନ୍ତି, ସେମାନେ ଭ୍ରାନ୍ତ । ଏହି ଶୁଚିପୂତ ନିସ୍ୱପଟ ପଲ୍ଲୀସମ ସରଳତା ହିଁ ଥିଲା ତାଙ୍କ ଜୀବନର ଦର୍ଶନ, ଏହି ସରଳତା ଓ ନୀରବ ସାଧନାଯୋଗୁ ସେ ଯେଉଁ ସାହିତ୍ୟ ସୃଷ୍ଟିକରି ଯାଇଅଛନ୍ତି, ତାହା ତାଙ୍କର ଅନ୍ତଃସତ୍ତା ଏବଂ ହୃଦୟର ଗଭୀରତାର ବାର୍ତ୍ତା ବହନ କରିଅଛି । ସେଥିପାଇଁ ଆଉ ଅନ୍ୟାନ୍ୟ ସୃଷ୍ଟିର କଥା ବାଦଦେଲେ, 'ବନ୍ଦୀର ଆତ୍ମକଥା'ର ପ୍ରତ୍ୟେକ ପଙ୍‌କ୍ତି ଆମ୍ଭମାନଙ୍କର ପରମ ଆଦରଣୀୟ ପଦାର୍ଥ ଏବଂ ଏହି କ୍ଷୁଦ୍ର ପୁସ୍ତକର ପଶ୍ଚାତ୍‌ପଟରେ ଅସହଯୋଗ ଆନ୍ଦୋଳନର ଇତିହାସ ଓ କର୍ମସୂଚୀ ପ୍ରକାଶ୍ୟଭାବରେ ଥିଲେ ସୁଦ୍ଧା, ଏଥିରେ ଗୋପବନ୍ଧୁଙ୍କ ଅନ୍ତରର ଯେଉଁ ବାଣୀ ପ୍ରତିଧ୍ୱନି ହୋଇ ଉଠିଛି, ତାହା ତାଙ୍କ ହୃଦୟର ଗଭୀରତାର ଜ୍ୱଳନ୍ତ ନିଦର୍ଶନ । ଏପରି ପ୍ରତ୍ୟକ୍ଷ ଅନୁଭୂତି ଓ ଅନ୍ତରର ଗଭୀରତାର ସ୍ୱତଃସ୍ଫୂର୍ତ୍ତି ପ୍ରକାଶ ଓଡ଼ିଆ-ସାହିତ୍ୟରେ ଆଉ କେଉଁଠାରେ ଦେଖିବାକୁ ମିଳେ ?

ଗୋପବନ୍ଧୁ ସାହିତ୍ୟର ଅନ୍ୟତମ ବୈଶିଷ୍ଟ୍ୟ ତାଙ୍କର ସତ୍ୟନିଷ୍ଠା ଓ ଉଗ୍ର ଜାତୀୟତାବାଦ । ଏ ଜାତୀୟତାର ଅଭିବ୍ୟକ୍ତି ଆମ୍ଭେମାନେ ହୁଏ ତ ପ୍ରାଚୀନ ଓଡ଼ିଆକାବ୍ୟ ଓ ପୁରାଣମାନଙ୍କରେ ଯେ ଆଦୌ ଦେଖିବାକୁ ନ ପାଉ ତାହା ନୁହେଁ । ସାରଳା ଦାସ ଓ ଉପେନ୍ଦ୍ରଭଞ୍ଜଙ୍କୁ ମଧ୍ୟ ଆମ୍ଭେମାନେ 'ଜାତୀୟବାଦୀ' କବି କହୁ । ରାଧାନାଥଙ୍କ ସ୍ୱଦେଶ-ପ୍ରୀତିରେ ପାଠକମାନେ ମୁଗ୍‌ଧ ହୁଅନ୍ତି । ଭକ୍ତକବି ମଧୁସୂଦନଙ୍କ 'ଉତ୍କଳଗାଥା'ରେ ଉତ୍କଳୀୟ ପ୍ରୀତି ଓ 'ଭାରତ ଭାବନାରେ ଭାରତୀୟ ପ୍ରୀତି ପ୍ରକଟିତ; କିନ୍ତୁ ଏ ଜାତୀୟ ପ୍ରୀତି କେବଳ ଭାବପ୍ରବଣତାର ମାନସସନ୍ତାନ, ଏଥିରେ ଦେଶକୁ ବଡ଼ କରିବାର ଇଚ୍ଛା ହୁଏତ ଅଛି; କିନ୍ତୁ ଏ ଜାତୀୟତାର ବାସ୍ତବ ଭିତ୍ତିଭୂମି କାହିଁ ? ପ୍ରତ୍ୟକ୍ଷ କର୍ମସହିତ ଏ ଜାତିପ୍ରୀତିର

ଯୋଗ-ସାଧନା କାହିଁ ? ଗୋପବନ୍ଧୁ ଭାରତବର୍ଷ ମଧ୍ୟରେ ଉତ୍କଳର ମହତ୍ତ୍ୱ ପ୍ରତିପାଦନ କରିବାନିମନ୍ତେ ଜାତୀୟ ଅଭିମାନରେ ସ୍ଫୀତ ହୋଇ କେବଳ ଲେଖି ନାହାନ୍ତି—

"ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ,
ଉତ୍କଳର ନେତା ନିଜେ ନାରାୟଣ ।"

ଜୀବନରେ ଉଚ୍ଚନହେଲେ ସେ ଅହମିକାଦୃପ୍ତ ହୋଇ ନିଜକୁ ଜନନେତା ବୋଲି ମନେ କରିନାହାନ୍ତି । ଏହି ଅହଂଭାବଶୂନ୍ୟ ଏବଂ ବିନମ୍ରତାପୂର୍ଣ୍ଣ ସୌଜନ୍ୟହିଁ ତାଙ୍କ ସାହିତ୍ୟର ପରମ ଐଶ୍ୱର୍ଯ୍ୟ । ନିଜର ମତବାଦକୁ ସେ ପାଠକମାନଙ୍କ ଉପରେ ଲଦିଦେବାକୁ କେଉଁଠାରେ ପ୍ରୟାସୀ ହୋଇନାହାନ୍ତି । ଉତ୍କଳ-ସମ୍ମିଳନୀର ସଭାପତିତ୍ୱ ଥିଲା ସେତେବେଳେ ଦେଶସେବକଙ୍କର ସର୍ବୋଚ୍ଚ ସମ୍ମାନ । ୧୯୧୯ ମସିହାରେ ଉତ୍କଳସମ୍ମିଳନୀର ସଭାପତି-ଅଭିଭାଷଣର ପ୍ରଥମ ପର୍ଯ୍ୟାୟରେ ଏହି ଅହଂ-ଭାବଶୂନ୍ୟ ନମ୍ରତା ପରିସ୍ଫୁଟ ହୋଇଅଛି । ପୂର୍ବରୁ କୁହାଯାଇଅଛି, ଏହି ସର୍ବୋଚ୍ଚ ସମ୍ମାନନିମନ୍ତେ ସେ ଉତ୍କଳସମ୍ମିଳନୀର କର୍ମକର୍ତ୍ତାମାନଙ୍କଠାରେ କୃତଜ୍ଞତା ଜ୍ଞାପନ କରିବା ପରେ ବା ଗଦ୍ ଗଦ୍ କଣ୍ଠରେ କହିଥିଲେ "ମା ଉତ୍କଳଜନନୀ, ଏ ଅଧମ ସନ୍ତାନଠାରେ ତୁମର ଯଦି ଏତେ ଦୟା, ଏହାର କର୍ତ୍ତବ୍ୟପଥରେ ତୁମେଇ ସହାୟ ହୁଅ । ମାଁ, ମୁଁ ଉପସ୍ଥିତ ଘଟନାରେ ଦେଶର ନାୟକ ନୁହେଁ । ତାହା ମୋର କେବେ ବାଞ୍ଛା ନୁହେଁ, ତୁମର ନିୟତ ସେବକ ହେବାହିଁ ମୋ ଜୀବନର ଚିର ଆକାଙ୍‌କ୍ଷା । ଆଜି ବିଶେଷ ଭାବରେ ସେ ସେବା କରିବାର ମୋତେ ସୁଯୋଗ ଦେଇଅଛ, ତହିଁରେ ମୁଁ ଧନ୍ୟ ଏବଂ ପୁଣ୍ୟ ହୋଇଅଛି ମା', ଏ ଅଧମ ଅଜ୍ଞାନ ସନ୍ତାନ ତୋର କି ସେବା କରିବ ?

"ତୋତେ ହିଁ ତୁହି ରକ୍ଷା କର
ମୁଁ ଛାର ମନୁଷ୍ୟ ମାତର ।"

ସତ୍ୟନିଷ୍ଠା ହିଁ ନିର୍ଭୀକତା ଗୋପବନ୍ଧୁଙ୍କ ସାହିତ୍ୟର ପ୍ରାଣପିଣ୍ଡ । ଏ ନିର୍ଭୀକ ସ୍ପଷ୍ଟବାଦିତା ଓଡ଼ିଆସାହିତ୍ୟକୁ ତାଙ୍କର ଏକ ଅନବଦ୍ୟ ଅବଦାନ । ସତ୍ୟ ପ୍ରକାଶ କରିବାକୁ ଯାଇ ସେ କାହା ପ୍ରତି ପକ୍ଷପାତିତ୍ୱ କିମ୍ବା ଅଯଥା ଅନୁରକ୍ତି ଦେଖାଇବାର ବ୍ୟକ୍ତି ନୁହନ୍ତି । ଅଥଚ ହୃଦୟଟି ତାଙ୍କର ଏତେ ସମ୍ବେଦନଶୀଳ ଓ କରୁଣାର୍ଦ୍ର ! ଅସହଯୋଗ ଆନ୍ଦୋଳନସମୟରେ ଇଂରେଜସରକାରଙ୍କ ନିର୍ଦ୍ଦେଶରେ ସମଗ୍ର ଭାରତରେ ଯେଉଁ ଉତ୍କଟ ଦମନର ପୈଶାଚିକ ତାଣ୍ଡବ ଦେଖାଯାଇଥିଲା; ମୃତ୍ୟୁଭୟ-ଶୂନ୍ୟ ଗୋପବନ୍ଧୁ ବ୍ୟତୀତ ସେ ପାଶବିକ ଲୀଳାକୁ ଏପରି ତେଜୋମୟୀ ଭାଷାରେ ଆଉ ବର୍ଣ୍ଣନା କରିଛି କିଏ ?

"କନକାର ରାଜଧାନୀ ଚଉପାଶେ
ପ୍ରେତ-ଆତ୍ମା କେତେ ଉଡ଼ଇ ଆକାଶେ ।
ବିନ୍ଦୁ ବିନ୍ଦୁ ରକ୍ତ ପଡ଼େ ତହୁଁ ତଳେ
ସେହି ରକ୍ତେ ଭୀଷଣ ଅଗ୍ନିଶିଖା ଜଳେ ।"

କରୁଣରସ ସହିତ ପୌରୁଷୋଦ୍ଦୀପକ ବୀରରସର ଏ ମଧୁର ସମନ୍ୱୟ, କେତେଜଣଙ୍କ ଲେଖାରେ ସମ୍ଭବ ?

ସ୍ୱଳ୍ପ ସୃଷ୍ଟି ମଧ୍ୟରେ ଗୋପବନ୍ଧୁଙ୍କ ବାଣୀପରମ୍ପରା ଅମୃତମୟ । ଗୋପବନ୍ଧୁ ତାଙ୍କ ସାହିତ୍ୟରେ ଆମ୍ଭମାନଙ୍କ ପରି ଅଳଙ୍କୃତକର ବ୍ୟକ୍ତିମାନଙ୍କ ପାଇଁ ଅମୃତର ସୋପାନ ରଚନା କରିଯାଇଅଛନ୍ତି । ଜୀବନର ଦୈନନ୍ଦିନ ତୁଚ୍ଛତାରୁ ସେ ଆମ୍ଭ-ମାନଙ୍କୁ ମାନବିକତାର ଊର୍ଦ୍ଧ୍ୱଦେଶକୁ ଉତ୍ତୋଳନ କରି ନେଇଛନ୍ତି; ଯେଉଁଠାରେ କ୍ଷୁଦ୍ର ସ୍ୱାର୍ଥପରବଶତାର କୁତ୍ସିତ ସ୍ପର୍ଶ ନାହିଁ, ପରଶ୍ରୀକାତରତାର ପୂତିଗନ୍ଧ ନାହିଁ, ଉଚ୍ଚନୀଚର ଭେଦାଭେଦ ଜ୍ଞାନ ନାହିଁ, ଅର୍ଥର ଉତ୍କଟ କୁଳାମର୍ଷୀ ଲାଳସା ନାହିଁ, ସତ୍ୟର ଅପଳାପ ନାହିଁ କିମ୍ବା ଘୋର ନାସ୍ତିକତାର ଶୂନ୍ୟ ଦାମ୍ଭିକତା ନାହିଁ । ୧୩୨୧ 'ମୁକୁର' ଅଷ୍ଟମଭାଗ ୧୦।୧୧ଶ ସଂଖ୍ୟାରେ ସେ 'ଜାଗରଣ' କବିତାର ଉପସଂହାରରେ ଲେଖିଥିଲେ—

'ଜାଗିଛୁ ଜଗତ ଏବେ ନବ ଆଶା ନବବଳେ,
ଉଇଁ ଆସୁଅଛୁ ଭାନୁ ପୂରୁବ ଗଗନତଳେ ।
ଏ ଯେ ସ୍ୱରଗ ଆହ୍ୱାନ,
ଦେବକାର୍ଯ୍ୟ ପିତୃକାର୍ଯ୍ୟ କରିବାକୁ ସମାପନ ।'

ଏହି ନବ ଜାଗ୍ରତ ଓ କର୍ମୋଦ୍ଦୀପନାର ବୀଜମନ୍ତ୍ର ମଧ୍ୟ ଅନ୍ତର୍ନିହିତ ଅଛି, 'ଅବକାଶ ଚିନ୍ତା'ର 'ଶିବରାତ୍ରି' କବିତାରେ ଯେଉଁଠାରେ ସେ ଆମ୍ଭମାନଙ୍କୁ ଉଦ୍‌ବୋଧନ ଦେଇ ଲେଖିଅଛନ୍ତି :—

"ଶୁଣମନ୍ତ୍ର ହୋଇ ନଡ଼ ଜ୍ଞାନ ଦୀପଜାଳି
ଶୁଦ୍ଧଭକ୍ତି ରସ ଦିଅ ସେ ଶ୍ରୀପଦେ ଢାଳି ।
× × ×
ସମସ୍ତ ଜୀବନ କର ଏକ ଶିବରାତ୍ରି
ଅନ୍ଧାରେ ନ ବୁଡ଼ ପଥ ହେ ସ୍ୱରଗଯାତ୍ରୀ ।"

ଗୋପବନ୍ଧୁଙ୍କ ସାହିତ୍ୟ ହେଉଛି ସେହି ଜ୍ଞାନପ୍ରଦୀପ, ଶୁଚିମନ୍ତ୍ର ଓ ଶୁଦ୍ଧ ଭକ୍ତିରସ-ପରିପୂରିତ ସାହିତ୍ୟ, ଯାହାର ପରିମାଣ ସ୍ୱଳ୍ପ ହେଲେହେଁ ଉତ୍କର୍ଷ ସର୍ବଜନସ୍ୱୀକୃତ । ଗୋପବନ୍ଧୁ ତାଙ୍କ ସାହିତ୍ୟରେ ଯେଉଁ ରସ ସୃଷ୍ଟି କରି ଯାଇଅଛନ୍ତି, ସେ ରସ କେବଳ ମାଧୁର୍ଯ୍ୟପୂର୍ଣ୍ଣ ନୁହେଁ, ଜଣେ ପ୍ରାଚୀନ ଆଳଙ୍କାରିକଙ୍କ ମତରେ ତାହା 'ରସେ ସାରଃ ଚମତ୍କାରଃ' ଏବଂ ଏଠାରେ 'ଚମତ୍କାର' ଶବ୍ଦର ଅର୍ଥ ହେଉଛି—ଚିତ୍ତ-ପ୍ରସାର, ଆତ୍ମାର ସମୁନ୍ନତି । ଗୋପବନ୍ଧୁଙ୍କ ସାହିତ୍ୟ ତାଙ୍କ ବ୍ୟକ୍ତିଗତ କର୍ମମୟ ଜୀବନର ପ୍ରାଚୁର୍ଯ୍ୟ, ଗାମ୍ଭୀର୍ଯ୍ୟ, ଔଦାର୍ଯ୍ୟ ଓ ପ୍ରସାରଣଶୀଳତାର ମନୋମୟ ପ୍ରକାଶ ମାତ୍ର, ଯହିଁରେ ଅନ୍ୟ କବିମାନଙ୍କ ସନ୍ଦେହ କଲାପରି ଏଠାରେ ଗୋପବନ୍ଧୁଙ୍କୁ ସନ୍ଦେହ କରିବାର କୌଣସି ଅବକାଶ ନାହିଁ । ଆଜି ମନୁଷ୍ୟର ଜୀବନ ଯେପରି ସଙ୍କଟାପନ୍ନ, ତା'ର ସାହିତ୍ୟ ଓ ସଂସ୍କୃତି ସେପରି ବିପର୍ଯ୍ୟସ୍ତ । ସାହିତ୍ୟିକ ଆଜି ରାଜନୈତିକ ପ୍ରଭାବରୁ ମୁକ୍ତ ନୁହେଁ । କାହିଁକି ଲେଖିବ ଓ କ'ଣ ଲେଖିବ ଏ ବିଷୟରେ ମଧ୍ୟ ସେ ସଂଶୟାଚ୍ଛନ୍ନ । ଧରଣୀ ଆଜି ଅଶାନ୍ତ । ମନୁଷ୍ୟ ଆଜି ରସପିପାସୁ ଓ ତୃଷାର୍ତ୍ତ । ବର୍ତ୍ତମାନ ଗୋପବନ୍ଧୁଙ୍କ ପରି କବି ଓ ମନୀଷୀଙ୍କର ଆବଶ୍ୟକତା ଅନିବାର୍ଯ୍ୟ । ଯେଉଁମାନେ କେବଳ ଶୁଚିମନ୍ତ୍ର ହୋଇ ଜ୍ଞାନଦୀପ ଜାଳିବେ ନାହିଁ, ସେମାନଙ୍କ ସାହିତ୍ୟ ସୃଷ୍ଟିରେ ଏପରି ପବିତ୍ର ରସ-ସାମଗ୍ରୀ ପରିବେଷଣ କରିବେ, ଯାହା ଜଣେ ସୃଷ୍ଟିଧର୍ମୀ ସାହିତ୍ୟିକ ଓ ସମାଲୋଚକଙ୍କ ମତରେ 'ଅନଳ ସ୍ରୋତ ପରି ଜ୍ୱାଳାମୟ ଅଥଚ ତୃଷ୍ଣାର ଜଳ ପରି ଶୀତଳ ହୋଇଥିବ । ଏ ରସ ଯଦି କାହାର ଅନ୍ତରରେ ଥାଏ, ତେବେ ସେ ତାହା ଅକୁଣ୍ଠିତ ଚିତ୍ତରେ ପରିବେଷଣ କରିଯାଉ, ଧରଣୀ ତୃଷାର୍ତ୍ତ ।'

---

ମୁଦ୍ରାକର : ଆଲୋକପ୍ରଭା ପ୍ରିଣ୍ଟର୍ସ, ଖଟବିନ୍ ସାହି, କଟକ ୮